୧୯୩୨

“ ଉତ୍କଳ-ସାହିତ୍ୟ-ସମାଜ”ର

“ଜଗନ୍ନାଥ ପୁରସ୍କାର” ପ୍ରାପ୍ତ ପ୍ରବନ୍ଧ

---

# ଉତ୍କଳର କୁଟୀର ଶିଳ୍ପ

---


ପ୍ରଣେତା ଓ ପ୍ରକାଶକ

ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା ଏଲ୍. ଏମ୍. ପି.



ପ୍ରଥମ ସଂସ୍କରଣ—୧୯୩୪ ମୂଲ୍ୟ—ଆଠ ଅଣା

## —ଆଶା—

ଉତ୍କଳର ଯେଉଁ ହଜାର ହଜାର
ଶିକ୍ଷିତ, ଅଶିକ୍ଷିତ, ଧନୀ ଓ ନିର୍ଦ୍ଧନ ଯୁବକ ଯୁବତୀ

"କଣ କରିବି"

ଏହି "ଦାରିଦ୍ର୍ୟ ପଞ୍ଚାକ୍ଷର" ଜପ କରି, କେବଳ ଅକର୍ମା ହୋଇ
ନିଜର ଜୀବନ କାଟନ୍ତି, ସେମାନେ ଏହି ପୁସ୍ତକ-ବର୍ଣ୍ଣିତ
ଯେ କୌଣସି ଶିଳ୍ପ କାର୍ଯ୍ୟ ଦ୍ୱାରା ନିଜ ସମୟର
ସଦ୍ବ୍ୟବହାର କରିବା ସଙ୍ଗେ ସଙ୍ଗେ
ସ୍ୱଚ୍ଛନ୍ଦରେ ନିଜର ପେଟ ପୋଷିପାରନ୍ତି—
ଏହି ଆଶାରେ ଏ ପୁସ୍ତକ
ପ୍ରକାଶିତ ହେଲା ।



| ବିଷୟ | ପୃଷ୍ଠା |
| --- | --- |




# ଉତ୍କଳର କୁଟୀର ଶିଳ୍ପ

## "କୁଟୀର ଶିଳ୍ପ" କାହାକୁ କୁହାଯାଏ ?

ଉତ୍କଳ ଦେଶର ଶତକଡ଼ା ପ୍ରାୟ ୯୦ ଲୋକ "କୃଷିଜୀବୀ" ଅଟନ୍ତି । "କୃଷି" ବ୍ୟତୀତ ଅନ୍ୟ କୌଣସି ବ୍ୟବସାୟ ନାହିଁ, ଯଦ୍ଦ୍ୱାରା କି ( କୃଷି ଅଭାବରେ ) ସେମାନେ ସୁବିଧାରେ ଜୀବିକାର୍ଜନ କରନ୍ତେ । ଯେଉଁମାନେ ବା କୃଷି କରନ୍ତି, ସେମାନଙ୍କର କୃଷିଲବ୍ଧ ଜିନିଷଗୁଡ଼ିକ ଏତେ କମ୍ ହୁଏ ଯେ, ନିଜର ଖାଦ୍ୟପେୟ, ଲୁଗାପଟା, ପିଲାମାଇପଙ୍କ ଦେହପା ହେଲେ ଔଷଧ ପତ୍ର ଏବଂ ସରକାରୀ ରାଜସ୍ୱ ଓ ଅନ୍ୟାନ୍ୟ କରଜପତ୍ର ପରିଶୋଧ କରିବା ପାଇଁ ତା ସମ୍ପୂର୍ଣ୍ଣ ନିଅଣ୍ଟ ହୁଏ । ଅତଏବ କୃଷିଦ୍ୱାରା ଏ ଦେଶର ଲୋକମାନେ ଆଦୌ ଲାଭବାନ୍ ହୁଅନ୍ତି ନାହିଁ ।

ଉତ୍କଳ ଗୋଟିଏ "ବନ୍ୟା ଓ ଦୁର୍ଭିକ୍ଷ"ଗ୍ରସ୍ତ ପ୍ରଦେଶ । ବନ୍ୟା ଓ ଦୁର୍ଭିକ୍ଷ ଏ ଦେଶରେ ଘର କରି ରହିଛି । ପ୍ରତି ୨ । ୩ ବର୍ଷରେ ଓଡ଼ିଶାର ବାର୍ଷିକ ଫସଲ ବନ୍ୟା କିମ୍ବା ମରୁଡ଼ିରେ ନଷ୍ଟ ହୁଏ । ବାର୍ଷିକ ଫସଲ ନଷ୍ଟ ହେଲେ ଏ ଦେଶରେ ଦୁର୍ଭିକ୍ଷ ହୁଏ । ଅସଂଖ୍ୟ ଲୋକ ପିଲାମାଇପଙ୍କୁ ଛାଡ଼ି ସୁଦୂର କଲିକତା, ଆସାମ ବା ବ୍ରହ୍ମଦେଶ ଯାଇ ସେଠାରେ "କୁଲି" କାମ କରନ୍ତି । ତଦ୍ଦ୍ୱାରା ସେମାନଙ୍କର ସାମାନ୍ୟ ଧନୋପାର୍ଜନ ହୁଏ ସତ୍ୟ; କିନ୍ତୁ ସେହି ଧନରେ ନିଜର ଖିଆପିଆ, ଲୁଗାପଟା ଓ ଅନ୍ୟାନ୍ୟ 'ବିଳାସ' ସାମଗ୍ରୀ ଯୋଗାଇବା ସଙ୍ଗେ ସଙ୍ଗେ ନିଜ ଦେଶରେ ଥିବା ପିଲା-ମାଇପଙ୍କ ପାଇଁ ପ୍ରଚୁର ଧନ ଯୋଗାଇ ପାରନ୍ତି ନାହିଁ । ଯେଉଁମାନେ ସ୍ୱଦେଶରେ କିମ୍ବା ଏଠାରେ କୌଣସି କାର୍ଯ୍ୟ ପାଅନ୍ତି ନାହିଁ, ସେମାନେ ଅକର୍ମା ହୋଇ ବସି ରହନ୍ତି

କମ୍ବା ଲୋକ ଶୋଷରେ ଜୀବନ କଟାନ୍ତି । ବାର୍ଷିକ ଫସଲ ଅଦାୟ କରିବା ପାଇଁ ଏ ଦେଶର କୃଷକମାନେ ବର୍ଷର କେବଳ ୬ । ୭ ମାସ ମାତ୍ର କାର୍ଯ୍ୟ କରନ୍ତି । ଅବଶିଷ୍ଟ ସମୟରେ ସେମାନଙ୍କର କୌଣସି କାର୍ଯ୍ୟ ନ ଥାଏ । ଅତଏବ ସେମାନେ ଅଧା ଅକର୍ମା ହୋଇ ସମୟ କାଟନ୍ତି ।

ସାଧାରଣ କୃଷିଜୀବୀଙ୍କ ବ୍ୟତୀତ ଆମ ଦେଶର ହଜାର ହଜାର ଶିକ୍ଷିତ, ଅର୍ଦ୍ଧ-ଶିକ୍ଷିତ ଓ ଅଶିକ୍ଷିତ ଯୁବକ ଯୁବତୀ ଅନନ୍ୟୋପାୟ ହୋଇ ବର୍ଷ ତମାମ୍ ବସି ରହନ୍ତି । ଅଜକାଲ ସେମାନଙ୍କ ପାଇଁ ସେପରି କୌଣସି ସୁବିଧାଜନକ କାର୍ଯ୍ୟ ନାହିଁ, ଯଦ୍ଦ୍ୱାରା କି ସେମାନେ ନିଜ ନିଜର ଜୀବିକାର୍ଜନ କରିବା ସଙ୍ଗେ ସଙ୍ଗେ ସମୟର ସଦ୍‌ବ୍ୟବହାର କରନ୍ତେ ।

ବର୍ତ୍ତମାନ ଏହି ଅକର୍ମା ( unemployed ) ଓ ନିଜ ଫୁରସତ୍ ସମୟରେ କୃଷିଜୀବୀମାନେ ଏବଂ ଦେଶର ସାଧାରଣ ଲୋକମାନେ ଅଳ୍ପ ପରିଶ୍ରମ କରି ଯେଉଁ "କାର୍ଯ୍ୟ" ବା "ବ୍ୟବସାୟ" ଦ୍ୱାରା ମାସିକ ୮ । ୧୦ ଟଙ୍କାଠାରୁ ୩୦ । ୪୦ ଟଙ୍କା ବା ତତୋଽଧିକ ଉପାର୍ଜନ କରିପାରନ୍ତି ସେହି କାର୍ଯ୍ୟ ବା ବ୍ୟବସାୟକୁ "କୁଟୀର ଶିଳ୍ପ" * କୁହାଯିବ ।

ଅଳ୍ପ କେତୋଟି ନିର୍ଦ୍ଦିଷ୍ଟ କୁଟୀର ଶିଳ୍ପ ଦ୍ୱାରା ଗୃହୀମାନେ ସେମାନଙ୍କର ଫୁରସତ୍ ସମୟରେ ମାସିକ ୧୦।୧୫ ଟଙ୍କା ବା ତତୋଽଧିକ ରୋଜଗାର କରି ପାରନ୍ତି; କିନ୍ତୁ ପ୍ରବନ୍ଧର ଅନ୍ୟତ୍ର ଦିଆଯାଇଥିବା ବିଭିନ୍ନ ପ୍ରକାର "ଶିଳ୍ପ" କାର୍ଯ୍ୟ ଆମ ଦେଶର ଅକର୍ମାମାନେ ବର୍ଷର ସବୁ ସମୟରେ କରିପାରନ୍ତେ ।

---

* **"କୁଟୀର ଶିଳ୍ପ"** — ଇଂରେଜମାନେ ଯାହାକୁ "Cottage Industry" କହନ୍ତି, ତାହାର ପ୍ରକୃତ ଓଡ଼ିଆ ଅର୍ଥ "କୁଟୀର ଶିଳ୍ପ" ନୁହେ; କାରଣ ଇଂରେଜମାନଙ୍କର "cottage" ଆମ ଦେଶରେ ନାହିଁ । ଆମ ଦେଶର ଶିଳ୍ପୀ ବା କାରିଗରମାନେ ନିଜର ସବୁ ବ୍ୟବସାୟ ନିଜ ଘରେ କରନ୍ତି—ସେଥିପାଇଁ ପୃଥକ୍ କୁଟୀର ବା 'cottage' ନ ଥାଏ । ଅତଏବ ଏଠାର ଶିଳ୍ପ କାର୍ଯ୍ୟଗୁଡ଼ିକୁ "କୁଟୀର ଶିଳ୍ପ" ନ କହି "ଗୃହଶିଳ୍ପ" କହିବା ଉଚିତ ମନେ କରୁ; କିନ୍ତୁ ଏହି ପ୍ରବନ୍ଧର ଶିରୋନାମା 'ଉତ୍କଳ-ସାହିତ୍ୟ-ସମାଜ' ଦ୍ୱାରା ଦିଆ-ଯାଇଥିବାରୁ ତାହାର ଅନ୍ୟ କୌଣସି ପରିବର୍ତ୍ତନ କରାଯାଇ ନାହିଁ ।

କେବଳ "କୁଟୀର ଶିଳ୍ପ" ଦ୍ୱାରା କୌଣସି ଲୋକ କୋଠାବାଡ଼ି କରି ନ ପାରନ୍ତି—କୋଠାବାଡ଼ି କରିବା ତ ମନୁଷ୍ୟ ଜୀବନର ପ୍ରଧାନ ଲକ୍ଷ୍ୟ ନୁହେଁ। "ପେଟକୁ ଗଣ୍ଡାଏ ଖାଇବା ଓ ଦେହକୁ ଖଣ୍ଡିଏ ପିନ୍ଧିବା" ଯେଉଁମାନଙ୍କର ପ୍ରଧାନ ଲକ୍ଷ୍ୟ, ସେମାନେ ଯେ କୌଣସି କୁଟୀର ଶିଳ୍ପ ଦ୍ୱାରା ଯଥେଷ୍ଟ ଧନ ରୋଜଗାର କରି ସୁଖରେ ବଞ୍ଚି ପାରନ୍ତି। ପୁଣି ଏହି ଶିଳ୍ପ ଦ୍ୱାରା ଆମ ଦେଶର ଅକର୍ମୀମାନେ ନିଜ ନିଜର ଆର୍ଥିକ ଅଭାବ ଦୂର କରିବା ସଙ୍ଗେ ସଙ୍ଗେ ଦେଶବାସୀଙ୍କ ପାଇଁ ପ୍ରଚୁର ପରିମାଣରେ "ସ୍ୱଦେଶୀ" ଜିନିଷ ଯୋଗାଇ ପାରନ୍ତି। ବର୍ତ୍ତମାନ ଦେଶରେ ଯେପରି "ସ୍ୱଦେଶୀ" ଜିନିଷର ପ୍ରଚୁର ଚାଲିଛି, ଏହି ସୁବିଧା ନେଇ ଓଡ଼ିଶାର ବିଭିନ୍ନ ସ୍ଥାନରେ କି କି ପ୍ରକାର କୁଟୀର ଶିଳ୍ପ କରାଯାଇପାରେ, ସେ କଥା ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ବର୍ଣ୍ଣିତ ହେବ।



## ଆଧୁନିକ ଯୁଗରେ "କୁଟୀର ଶିଳ୍ପ"ର ଦୁରବସ୍ଥା

"ଉତ୍କଳର କୁଟୀର ଶିଳ୍ପ" କଥା ବିସ୍ତୃତରୂପେ ଆଲୋଚନା କରିବା ପୂର୍ବରୁ କେତେକ ପାରିପାର୍ଶ୍ୱିକ ଘଟଣା କଥା ଏଠାରେ ଉଲ୍ଲେଖ କରିବା ଦରକାର।

**(୧) କଳ କାରଖାନାର କ୍ରମୋନ୍ନତି**—ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଅର୍ଥାତ୍ ଭାରତବର୍ଷ ଇଂଲଣ୍ଡ-ରାଣୀ ଭିକ୍ଟୋରିଆଙ୍କ ଅଧିକାରଭୁକ୍ତ ହେବା ସମୟରେ ୟୁରୋପରେ ପ୍ରଥମେ "କଳ କାରଖାନା"ଗୁଡ଼ିକ ଆବିଷ୍କୃତ ହେଲା। ପୂର୍ବେ ଯେଉଁ କାର୍ଯ୍ୟ କରିବା ପାଇଁ ଲକ୍ଷ ଲକ୍ଷ ଲୋକଙ୍କ ସାହାଯ୍ୟ ଲୋଡ଼ା ହେଉଥିଲା, ଏଣିକି ଗୋଟିଏ ଘଣ୍ଟା କଳରେ ସେହି କାର୍ଯ୍ୟ କରିହେଲା। "ଲୋକବଳ" (Man-power) ଅପେକ୍ଷା 'ଯନ୍ତ୍ରବଳ' (Machine-power) ସାହାଯ୍ୟରେ ଅତ୍ୟଳ୍ପ ସମୟରେ ବିଶେଷ କାର୍ଯ୍ୟ କରି ହେଲା। ସମ୍ପୂର୍ଣ୍ଣ ନୂତନ ଥିବାରୁ ଏହି "ଯନ୍ତ୍ରବଳ"ର ସେଠାରେ ସମସ୍ତେ ଭୂରି ଭୂରି ପ୍ରଶଂସା କଲେ ଓ ତାହାର କ୍ରମୋନ୍ନତି ଦିଗରେ ବିଶେଷ ଚେଷ୍ଟା କରାଯାଇଥିଲା। ଏପରିକି ସ୍ୱୟଂ ମହାରାଣୀ ଭିକ୍ଟୋରିଆ କୋଟି କୋଟି ଟଙ୍କା ଖର୍ଚ୍ଚ କରି ନୂତନ ନୂତନ ଯନ୍ତ୍ରଗୁଡ଼ିକ ଆବିଷ୍କାର କରିବା ପାଇଁ ସେଠା ଲୋକମାନଙ୍କୁ ଉତ୍ସାହ

ଦେଇଥିଲେ । ଇଂଲଣ୍ଡର ଏହି ସମୟକୁ "ଶିଳ୍ପଯୁଗ" (Age of Industries) କୁହାଯାଏ । *

**(୨) ଭାରତର ତତ୍‌କାଳୀନ ଅବସ୍ଥା**—୧୮୫୭ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ "ସିପାହୀ ବିଦ୍ରୋହ" ପରେ ଭାରତବର୍ଷ ଇଂଲଣ୍ଡ ରାଣୀଙ୍କ ଅଧିକାରଭୁକ୍ତ ହେଲା ସତ୍ୟ; କିନ୍ତୁ ସେହି ସମୟରେ ଶିଳ୍ପ ଓ ବାଣିଜ୍ୟ ଦିଗରେ ଭାରତ ତାର ସ୍ୱାତନ୍ତ୍ର୍ୟ ହରାଇ ନ ଥିଲା । କଳକାରଖାନା ଯୋଗୁଁ ୟୁରୋପଦେଶବାସୀ "ଲୋକବଳ"କୁ ଦୂର କରି 'ଯନ୍ତ୍ରବଳ'ର ସାହାଯ୍ୟରେ ଦିନକୁ ଦିନ ବହୁତ ଉନ୍ନତି କଲା ସମୟରେ ଭାରତବାସୀ ସେମାନଙ୍କର ସେହି ପୂର୍ବ ପୁରୁଷର 'କୁଟୀର ଶିଳ୍ପ' ଦ୍ୱାରା ବେଶ୍ ଉନ୍ନତି ଲାଭ କରୁଥିଲେ । ଏପରିକି କେବଳ କୁଟୀର ଶିଳ୍ପ ଦ୍ୱାରା ଭାରତରେ ପ୍ରସ୍ତୁତ "ଢାକା ଶାଢ଼ି", 'ରଥୀଯାମା' ଓ 'ମାଣିଆବନ୍ଧ ଯଥା' ପ୍ରଭୃତି ତତ୍କାଳୀନ ୟୁରୋପ ବଣିକମାନେ ଦେଖି ମୁଗ୍ଧ ହେଉଥିଲେ ଓ ସେଗୁଡ଼ିକୁ ନେଇ ୟୁରୋପର ସମ୍ରାଟ୍ ଓ ସମ୍ରାଜ୍ଞୀମାନଙ୍କୁ ଉପହାର ଦେଉଥିଲେ । ଶିଳ୍ପ, ସାହିତ୍ୟ, ବିଜ୍ଞାନ ଚର୍ଚ୍ଚା ଓ ଉତ୍କୃଷ୍ଟ କାରୁକାର୍ଯ୍ୟ

---

* ପାଶ୍ଚାତ୍ୟ ଐତିହାସିକମାନେ ଏହି ସମୟକୁ "ଶିଳ୍ପଯୁଗ" ନ କହି "ଶିଳ୍ପ ବିପ୍ଳବ" (Industrial Revolution) ବୋଲି ନାମ ଦେଇଥିଲେ । ୟୁରୋପ ଓ ଆମେରିକା ଦେଶରେ ୧୬ଶ, ୧୭ଶ, ୧୮ଶ ଓ ୧୯ଶ ଶତାବ୍ଦୀ ମଧ୍ୟରେ ଯେଉଁ କେତୋଟି 'ମହା ବିପ୍ଳବ' (The Great Revolutions) ଘଟିଥିଲା, ସେହି ସବୁ ବିପ୍ଳବ ଅପେକ୍ଷା 'ଶିଳ୍ପ ବିପ୍ଳବ'ର ପରିଣାମ ୟୁରୋପ ଓ ଆମେରିକା ତଥା ସମଗ୍ର ପୃଥିବୀର ଅଧିବାସୀଙ୍କ ସାମାଜିକ, ଆର୍ଥିକ ଓ ରାଜନୈତିକ ଅବସ୍ଥାରେ ପ୍ରକୃତ "ବିପ୍ଳବ" ଘଟାଇଥିଲା । ଏହି 'ବିପ୍ଳବ' ଯୋଗୁଁ ବଂଶାଧିକ ନୂତନ ନୂତନ ଯନ୍ତ୍ର ପ୍ରଭୃତି ଆବିଷ୍କୃତ ହୋଇଥିଲା ।

"It (The Industrial Revolution) changed the every day life of the common people, first in England, then in all civilized countries. Chiefly to it we owe our railways, steamships, factories, machines, mines, big cities, furnaces, sky-scrapers, apartment houses, steel war-ships, trade unions, cheap newspapers, rapid postal service, multimillionaries, agricultural machinery etc. etc.".

*"Modern History." P. 250—By Hays and Moon, 1930 Edition, America.*

ଦିଗରେ ମଧ୍ୟ ଭାରତ ତଥା ଉତ୍କଳବାସୀ ପଛରେ ପଡ଼ି ନ ଥିଲେ । ସେ କାଳର ଏକ କେତୋଟି ବିଭାଗ ସମ୍ପୂର୍ଣ୍ଣରୂପେ ଉଦ୍‌ଘାଟିତ ହୋଇ ନ ଥିଲେହେଁ ଯାହା କିଛି ଆମ ଆଖିକି ଦେଖାଯାଉଛି, ତାକୁ ଦେଖି ଆଜି ଜଗଦ୍‌ବାସୀ ମୁଗ୍‌ଧ ଓ ଅବାକ୍ ହୁଅନ୍ତି । ଭାରତର ତତ୍କାଳୀନ ଶିଳ୍ପକୃତିତ୍ୱ ଓ କାରୁକାର୍ଯ୍ୟ ଦେଖିବା ପାଇଁ ଏବେ ମୁଦ୍ଧା ଗଣ୍ଡା ଗଣ୍ଡା ୟୁରୋପ ଓ ଆମେରିକାର ପଣ୍ଡିତମାନେ ଭାରତକୁ ପ୍ରତିବର୍ଷ ଆସନ୍ତି ।

**(୩) ପରିବର୍ତ୍ତନ**—ତଥାପି ଆଜି ଭାରତର ଏ ହୀନ ଅବସ୍ଥା ଦେଖି କେହି ବିଶ୍ୱାସ କରୁ ନାହାନ୍ତି ଯେ, ଦିନେ କେବଳ ଶିଳ୍ପ ସ୍ଥାପତ୍ୟ ନେଇ ଭାରତବାସୀ ପୃଥିବୀର ଅନ୍ୟାନ୍ୟ ଜାତିଠାରୁ ଅଧିକ ଉନ୍ନତି ଲାଭ କରିଥିଲେ । ଏହାର କାରଣ କଣ ? ଯେଉଁ ଜାତି ଏକ ସମୟରେ ଏତେ ଉନ୍ନତି ଲାଭ କରିଥିଲା, ଆଜି ତାହିଁକି ଏତେ ଅଧଃପତିତ ? ଏହାର କାରଣ ଖୋଜିବାକୁ ଗଲେ ସ୍ପଷ୍ଟ ଜଣାଯାଏ, ଭାରତବାସୀଙ୍କ ମତିଗତିରେ ଘୋର ପରିବର୍ତ୍ତନ ଘଟିଯାଇଛି । ଏହି ପରିବର୍ତ୍ତନର ଦୁଇଟି କାରଣ ମଧ୍ୟରୁ—

ପ୍ରଥମ—ଭାରତବର୍ଷ କାଳଚକ୍ରରେ ପଡ଼ି ଇଂଲଣ୍ଡର ଅଧୀନ ହୋଇଛି, ଅର୍ଥାତ୍ ନିଜର ସ୍ୱାତନ୍ତ୍ର୍ୟ ହରାଇଛି ।

ଦ୍ୱିତୀୟ—ଭାରତବାସୀ ନିଜର ପୂର୍ବ ବିଭବ, ପୂର୍ବ ଗୌରବ ଓ ପୂର୍ବ ଶିଳ୍ପ ସ୍ଥାପତ୍ୟ ପାସୋରି ଦେଇ କେବଳ ପାଶ୍ଚାତ୍ୟ ଦେଶର ନୂତନ କଳକାରଖାନାରେ ପ୍ରସ୍ତୁତ ଚକଚକ୍ ଜିନିଷ ପ୍ରତି ଆକୃଷ୍ଟ ହୋଇଛନ୍ତି ।

**(୪) ପରିଣାମ**—ଭାରତବାସୀଙ୍କ ଏହି "ସ୍ୱକୃତ ଅପରାଧ"ର ପରିଣାମ କଣ ?-ପରିଣାମ ଏତିକି ଯେ, ଭାରତବାସୀ ନିଜ ନିଜର ଜାତୀୟ ଶିଳ୍ପ ସ୍ଥାପତ୍ୟକୁ ହରାଇ ପରର ( ୟୁରୋପବାସୀଙ୍କ ) ଶିଳ୍ପ ସ୍ଥାପତ୍ୟ ଉପରେ ନିର୍ଭର କରୁଛନ୍ତି । ଠିକ୍ ଏତିକିବେଳେ ୟୁରୋପବାସୀ ନବାବିଷ୍କୃତ 'ବିଜ୍ଞାନ' ବଳରେ ନିଜର କଳକାରଖାନାଗୁଡ଼ିକ ଅଧିକ ବଢ଼ାଇ ଦେଇ ଅଧିକସଂଖ୍ୟକ ଜିନିଷ ତିଆରି କରି ଭାରତବଜାରରେ ବିକ୍ରି କରୁଛନ୍ତି । ଏହି ଜିନିଷ ତିଆରି କରିବା ପାଇଁ କେବଳ ଭାରତରୁ କଞ୍ଚାମାଲ୍-( Raw Products ) ଗୁଡ଼ିକୁ ସଂଗ୍ରହ କରନ୍ତି । ପ୍ରଚୁର ପରିମାଣ କଞ୍ଚାମାଲ୍ ପାଇବା ସୁବିଧା ହେବାଫଳେ ୟୁରୋପବାସୀ ଆହୁରି ଅଧିକ କଳକାରଖାନାମାନ ବସାଇ ଅଧିକସଂଖ୍ୟକ ଜିନିଷ ତିଆରି କରିବାର ସୁବିଧା ପାଇଛନ୍ତି । ଏହି କଳ-

ଗୁଡ଼ିକରେ ତିଆରି ହେବା ଜିନିଷ ଅତି ଶସ୍ତା ଓ ଅତି ସୁନ୍ଦର ( ଚକ୍‌ଚକ୍ ) ମଧ୍ୟ ଦେଖାଯାଏ । ବିଦେଶରେ ପ୍ରସ୍ତୁତ ଶସ୍ତା ଜିନିଷଗୁଡ଼ିକ ପାଇବା ମାତ୍ରେ ଭାରତବାସୀ ନିଜର ପ୍ରାଚୀନ ଶିଳ୍ପଗୁଡ଼ିକୁ ଏକାବେଳକେ ପାସୋରି ଦେଇ ଏଠାରେ ମିଳିବା କଞ୍ଚା-ମାଲଗୁଡ଼ିକୁ ବିଦେଶକୁ ରପ୍ତାନୀ କଲେ । ତଦ୍ଦ୍ୱାରା ଅଳ୍ପ କେତେକ ମହାଜନ ପ୍ରଚୁର ଧନୋପାର୍ଜ୍ଜନ କଲେ ସତ; କିନ୍ତୁ ସେଇ କଞ୍ଚାମାଲଗୁଡ଼ିକୁ ଯେଉଁମାନେ କୁଟୀର ଶିଳ୍ପ ପାଇଁ ବ୍ୟବହାର କରୁଥିଲେ ସେପରି ଲକ୍ଷ ଲକ୍ଷ ଲୋକ ଏ ଦେଶରେ ଅକର୍ମୀ ହୋଇ ବସି ରହିଲେ । ସେମାନଙ୍କର ମୁଣ୍ଡରେ ଅକାଳ ଚଢ଼ିକି ପଡ଼ିଲା । ଫଳରେ ଏ ଦେଶବାସୀ ଦାଣ୍ଡର ଭିକାରୀ ହୋଇଛନ୍ତି । *

**(୪) ଅକର୍ମା କିଏ ?**—ଗତ ୧୫୦ ବର୍ଷ ହେଲା ଭାରତବର୍ଷ ଇଂରେଜୀ ସରକାରଙ୍କ ଶାସନାଧୀନରେ ରହିଛି । ଇତିମଧ୍ୟରେ ଶାସନଚକ୍ରର ଅନେକାନେକ ପରିବର୍ତ୍ତନ ଓ ପରିବର୍ଦ୍ଧନ ହୋଇଛି--ତଥାପି ଏ ଦେଶର କୃଷକ ଓ ଗାଁଉଁକୁଳର ଅବସ୍ଥା ଲେଶ ମାତ୍ର ପରିବର୍ତ୍ତନ ହୋଇ ନାହିଁ । ଏ ଦେଶର କୃଷକ ନିତାନ୍ତ ଅଶିକ୍ଷିତ । ତାର ଆର୍ଥିକ ଅବସ୍ଥା ଏତେ ଶୋଚନୀୟ ଯେ, ଯଦି କୌଣସି ଗୋଟିଏ ବର୍ଷ ସେ ତାର ଜମିରୁ ଫସଲ ଅଦାୟ ନ କରେ, ତେବେ ସେ ଅନନ୍ୟୋପାୟ ହୋଇ ମୁଷ୍ଟିଭିକ୍ଷାହିଁ କରିବାକୁ ବାଧ୍ୟ ହୁଏ । ସମୟ ସମୟରେ ଏଇ କାରଣରୁ ସେ ଏଇ ସଂସାରରେ ବଞ୍ଚିବା ଅପେକ୍ଷା ମରିବାହିଁ ଭଲ ମନେ କରେ । ф

---

* କେବଳ ଆମ ଦେଶବାସୀ ଯେ ଦାଣ୍ଡର ଭିକାରୀ ହେଲେ ସେତିକି ନୁହେଁ, ୟୁରୋପ ଓ ଆମେରିକାର ଶ୍ରମଜୀବୀମାନେ ମଧ୍ୟ ସେଇ ଦଶା ଭୋଗିଲେ । 'ଯନ୍ତ୍ରବଳ' ଦ୍ୱାରା ଅଳ୍ପ ସମୟରେ ପ୍ରଚୁର ଜିନିଷ ତିଆରି ହେଉଥିବାରୁ ଆଉ ପୂର୍ବପରି ଅଧିକସଂଖ୍ୟକ ମଜୁରିଆ ଦରକାର ହେଲେ ନାହିଁ । ପୁଣି ସେଇ କଳ କାରଖାନାରେ ଅଧିକ ସମୟ ଯାଏ କାର୍ଯ୍ୟ କରି ଅଳ୍ପ ମଜୁରି ପାଇବାକୁ ହେଉଥିଲା । ଫଳରେ ସେଠା ମଜୁରିଆମାନଙ୍କ ମଧ୍ୟରେ ଅକର୍ମୀଙ୍କ ସଂଖ୍ୟା-ବୃଦ୍ଧି ହେଲା । ସଙ୍ଗେ ସଙ୍ଗେ ରୋଗ, ଦୁଃଖ, ବ୍ୟଭିଚାର ପ୍ରଭୃତି ମଧ୍ୟ ବୃଦ୍ଧି ପାଇଥିଲା । Vide "Modern History" by Hays and Moon (America ) P. P. 391-92.

ф "As it is, his is the most down troden existence and many a villager prefers death to his existing conditions."
( Indian Economics—By V. G. Khale. )

ଆମ ଦେଶରେ ଶତକଡ଼ା ୮୦।୯୦ ଜଣ କୃଷକ ଘୋରଋଣୀ ଅଟନ୍ତି । ଋଣ ଶୁଝିବା ସେମାନଙ୍କ ପକ୍ଷରେ ଏତେ କଷ୍ଟ ହୁଏ ଯେ, ନିଜର ଜମିବାଡ଼ି, ଗହଣା ଗାଣ୍ଠି ଏପରିକି ନିଜର କୁଟୀର ମଧ୍ୟ ସାହୁକାରକୁ ଅଗତ୍ୟା ବନ୍ଧକ ଦେଇ ସର୍ବସ୍ୱାନ୍ତ ହୁଅନ୍ତି । ଲଗେ ଲଗେ ୨।୩ ବର୍ଷ ବନ୍ୟା ବା ମରୁଡ଼ି ହେଲେ ଏମାନେ ଯେ ଅକର୍ମା ହୋଇ ବସି ରହନ୍ତି, ସନ୍ଦେହ କଣ ?

ଚୃତୀ ପର୍ଯ୍ୟକୁ "ପାଟକ କୁଳ" । ଭାରତର ପାଟକକୁଳ ମଧ୍ୟ ଚଷାଙ୍କ ପରି ଅଶିକ୍ଷିତ ଓ ଅନୁନ୍ନତ ଦେଖାଯାନ୍ତି । ଭାରତର ଶତକଡ଼ା ୪୦।୫୦ ଅକର୍ମା ଏହି ପାଟକ ଶ୍ରେଣୀର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ ଦେଶର ଶିକ୍ଷିତ ବାବୁମାନେ ପାଶ୍ଚାତ୍ୟ ଦେଶର ଆଧୁନିକ ସଭ୍ୟତାଲୋକ ପାଇ ସେହି ପାଶ୍ଚାତ୍ୟ ଦେଶରେ ତିଆରି ହେବା ଲୁଗାପଟା, କଳକବଜା ଓ ଅନ୍ୟାନ୍ୟ ସମସ୍ତ ପ୍ରକାର ଆବଶ୍ୟକ ଜିନିଷଗୁଡ଼ିକ ବ୍ୟବହାର କରୁଥିବାରୁ କେବଳ ସେହି ବୃତ୍ତିଦ୍ୱାରା ଜୀବିକାର୍ଜନ କରୁଥିବା (ଭାରତର) ତନ୍ତୀ, କମାର, କଂସାରି, ବଣିଆ ଓ ତେଲି ପ୍ରଭୃତି ଜାତିର ଲୋକମାନେ ନିଜ ନିଜ ବୃତ୍ତି ଛାଡ଼ି ବର୍ତ୍ତମାନ ଅକର୍ମା ହୋଇଛନ୍ତି କିମ୍ବା ରେଙ୍ଗୁନ, କଲିକତା ପ୍ରଭୃତି ସ୍ଥାନକୁ ଯାଇ କୁଲି କାମ କରନ୍ତି । ଏହି ପାଟକକୁଳ ମଧ୍ୟରେ ଅକର୍ମାଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ହେବାରୁ ଅମ୍ଭେମାନେ ଆମ ଦେଶରେ ତିଆରି ହେବା 'ଦେଶୀ ଜିନିଷ'ଗୁଡ଼ିକ ଆଦୌ ପାଉ ନାହୁଁ । ଦେଶୀ ଜିନିଷ ଅଭାବରେ ସେହି ବିଦେଶୀ ଜିନିଷଗୁଡ଼ିକ କିଣିବାକୁ ବାଧ୍ୟ ହେଉଛୁଁ ।

ବର୍ତ୍ତମାନ ସମଗ୍ର ଭାରତରେ କେତେ ଜଣ ଅକର୍ମା ଅଛନ୍ତି, ତା ସ୍ଥିର କରିବାର କୌଣସି ସୁବିଧା ନାହିଁ । ୟୁରୋପ, ଆମେରିକା, ଜାପାନ ଓ ଚୀନ ପ୍ରଭୃତି ଦେଶରେ ସେଠା ସରକାର ଦେଶବାସୀଙ୍କ ଠାରେ ସମ୍ପୂର୍ଣ୍ଣ ଦାୟୀ ଥିବାରୁ ଦେଶରେ ଥିବା ଅକର୍ମାମାନଙ୍କ ତାଲିକା ପ୍ରସ୍ତୁତ କରି ସେମାନଙ୍କୁ ଉଚିତ କାର୍ଯ୍ୟ ଦିଆଇବା କିମ୍ବା କାର୍ଯ୍ୟ ଅଭାବରେ ଉପଯୁକ୍ତ ଭତ୍ତା ( Allowance ) ଦେବା ସ୍ଥିର କରିଛନ୍ତି । ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ଏହି ଅକର୍ମାଙ୍କ ପାଇଁ ସେହି ସେହି ଦେଶର ସରକାର ଖର୍ଚ୍ଚ କରୁଥିବାର ଅମ୍ଭେମାନେ ପତ୍ରପତ୍ରିକାରୁ ଜାଣୁ ; କିନ୍ତୁ ଆମ ଦେଶରେ ସେପରି କୌଣସି ସୁବିଧା ନ ଥିବାରୁ ଆମ ଦେଶର ଚଷା ଓ ପାଟକକୁଳ ନିଜ ନିଜ ବ୍ୟବସାୟ ଛାଡ଼ି ବିଦେଶ ଯାଇ ସେଠାରେ କୁଲି କାମ କରି ଜୀବିକାର୍ଜନ କରନ୍ତି ।

**(୬) ଜାତୀୟ ସମ୍ପଦର କ୍ଷତି**—ଦେଶରେ ଅକର୍ମୀଙ୍କ ସଂଖ୍ୟା ବୃଦ୍ଧି ହେବା ଦ୍ୱାରା ଦୁଇଟି ଅନିଷ୍ଟ ଘଟିଛି ।

ପ୍ରଥମ—ଜାତୀୟ ଜିନିଷ ବା ସ୍ୱଦେଶୀ ଜିନିଷର ଏକାନ୍ତ ଅଭାବ ।

ଦ୍ୱିତୀୟ—ଜାତୀୟ ସମ୍ପଦର କ୍ଷତି ।

ମନେ କରନ୍ତୁ, ଆମର ଖଣ୍ଡିଏ ପାଟ ଶୁଦ୍ଧର କିମ୍ବା କଂସାଥାଳ ଦରକାର ଅଛି । ପୂର୍ବେ ଆମ ଦେଶରେ କୋଟି କୋଟି ଟଙ୍କାର ପାଟ ତିଆରି ହେଉଥିଲା । ଏହି ପାଟ କିଣିବା ପାଇଁ କେତେ ୟୁରୋପ ବଣିକ ଭାରତକୁ ଆସୁଥିଲେ । କିନ୍ତୁ ଆଜି ଆମ ଦେଶର ପାଟରମାନେ ସ୍ୱ ସ୍ୱ ବୃତ୍ତି ଛାଡି ବିଦେଶରେ କୁଲି ଖଟୁଛନ୍ତି । ଏପରି ଅବସ୍ଥାରେ ଆମ ବଜାରରେ ଦେଶୀ ପାଟ ବଦଳରେ ସେହି ବିଦେଶୀ (ଚୀନ ବା ଜାପାନ ଦେଶର) ପାଟ ବିକ୍ରି ହେବାପାଇଁ ଗଚ୍ଛିତ ଅଛି । ଏହି ବିଦେଶୀ ପାଟ-ଗୁଡିକ ଅତି ଚିକ୍କଣ ଓ ଅତି ଶସ୍ତା ହୋଇପାରେ ; କିନ୍ତୁ ସେଗୁଡିକ କିଣିଲେ ଆମର ଟଙ୍କା କୁଆଡେ ଯିବ ? ସେହି ଚୀନ ଜାପାନକୁ ଯିବନା ? ଠିକ୍ ସେହିପରି, ଆମ ବଜାରରେ ଖଣ୍ଡିଏ ଭଲ ରକମ କଂସା ଥାଳି ନ ପାଇବାରୁ ଆମ୍ଭେମାନେ "ଜର୍ମାନ ଦେଶରେ ପ୍ରସ୍ତୁତ ଜର୍ମାନ ସିଲ୍‌ଭର୍" ଥାଳି ଖଣ୍ଡିଏ କିଣିବାକୁ ବାଧ୍ୟ ହେଉଁ । ତଦ୍ଦ୍ୱାରା ଆମର ଜାତୀୟ ସମ୍ପଦ ଯେ ବିଦେଶକୁ ଯାଏ, ଏଥିରେ ସନ୍ଦେହ କଣ ?

**(୭) ଦାୟୀ କିଏ ?**—ଆଚ୍ଛା, ଭାରତର ଏପରି ଦୁର୍ଗତି କାହା ଯୋଗୁଁ ଘଟିଛି ? ଏହି ପ୍ରଶ୍ନର କୌଣସି ଉତ୍ତର ଦେବା ପୂର୍ବରୁ ଦେଶର ପ୍ରତ୍ୟେକ ନବ୍ୟ ଶିକ୍ଷିତ 'ବାବୁ' ନିଜକୁ ନିଜେ ଏହି ପ୍ରଶ୍ନ ପଚାରିବାକୁ ହେବ । ତା ହେଲେ ଏହି ଦୁଃସ୍ଥିତିର ପ୍ରଧାନ କର୍ତ୍ତା "ନିଜେ" ବୋଲି ସ୍ପଷ୍ଟ ଜାଣିହେବ । ଦେଶର ଶାସକମାନେ ଅମ୍ଭମାନଙ୍କୁ ପାଶ୍ଚାତ୍ୟ ଚାକଚକ୍ୟ ପ୍ରତି ଆକୃଷ୍ଟ କରିବାପାଇଁ ଯେତେ ଚେଷ୍ଟା କରନ୍ତୁ ନା କାହିଁକି, ନିଜେ ନିଜର ଜାତୀୟତା ଓ ଜାତୀୟ ଜିନିଷ ପ୍ରତି ଆକୃଷ୍ଟ ହୋଇଥିଲେ ଭାରତର ଅବସ୍ଥା ଏପରି ଶୋଚନୀୟ ହୁଅନ୍ତା ନାହିଁ । ସୁଖର ବିଷୟ, ଏହି କେତେ ବର୍ଷ ହେଲା ଭାରତର ଶିକ୍ଷିତ ସମାଜ ମଧ୍ୟରେ ଜାତୀୟ ଭାବର ଗୋଟିଏ ଅତି କ୍ଷୀଣ ରେଖାପାତ ହୋଇଛି । ଠିକ୍ ଏହି ସମୟରେ ଓଡିଶାବାସୀ ନିଜର ପୂର୍ବ ଗୌରବ, ପୂର୍ବ ବିଭବ ଓ ପୂର୍ବ ଶିଳ୍ପ ସ୍ଥାପତ୍ୟଗୁଡ଼ିକୁ ସ୍ମରଣ କରି ପୁଣି ସେହିଗୁଡ଼ିକର କ୍ରମ-ବିକାଶ ନିମନ୍ତେ ସଚେଷ୍ଟ ହେଲେ, ଏ ଦେଶର ଆର୍ଥିକ ଦୁରବସ୍ଥା ଯେ ଅଶରେ

ବଦଳିଯିବ ଏବଂ ଏ ଦେଶର ପାଠକକୁଳ ଓ କୃଷକମାନେ ନିଜ ନିଜର ଦୁରବସ୍ଥା-ଗୁଡ଼ିକରୁ ଉଦ୍ଧାର ପାଇବେ, ସନ୍ଦେହ ନାହିଁ ।



## ପ୍ରାଚୀନ ଉତ୍କଳର ଶିଳ୍ପ ବୈଭବ

ପ୍ରାଚୀନ ଉତ୍କଳକୁ "କଳିଙ୍ଗ" କୁହାଯାଉଥିଲା । କଳିଙ୍ଗ ଦେଶ ଉତ୍ତରରେ ଗଙ୍ଗା ନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀଯାଏ ବିସ୍ତୃତ ଥିଲା । ଏହାର ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ଆଧୁନିକ ମଧ୍ୟ ପ୍ରଦେଶ । ଏକଦା ଏହି ପ୍ରଦେଶର ଅଧିବାସୀମାନେ ଅତି ପରାକ୍ରମୀ ଓ ବଳଶାଳୀ ଥିଲେ । କେବଳ ସେତିକି ନୁହେଁ, ଗଭୀର ସମୁଦ୍ରରେ ନୌବାଣିଜ୍ୟ କରିବା ମଧ୍ୟ ଶିକ୍ଷା କରିଥିଲେ । ଏମାନଙ୍କର ତତ୍-କାଳୀନ ସାହସ ଯୋଗୁଁ ସଂସ୍କୃତ ଲେଖକମାନେ "କଳିଙ୍ଗଃ ସାହସିକଃ" ବୋଲି ଗୋଟିଏ ଉକ୍ତି ଲେଖିଯାଇଛନ୍ତି । ଦେଶର ଶିଳ୍ପ କଳାଦି ସାମଗ୍ରୀକୁ ନେଇ ଦେଶ-ଦେଶାନ୍ତରରେ ବିକ୍ରି କରି ପ୍ରାଚୀନ କଳିଙ୍ଗ ଅଧିବାସୀ ବିଶେଷ ଖ୍ୟାତି ଲାଭ କରିଥିଲେ । ସୁଦୂର ଜାଭା, ବୋର୍ଣ୍ଣିଓ ଓ ବାଲି ଦ୍ୱୀପଗୁଡ଼ିକୁ କଳିଙ୍ଗ ବଣିକମାନେ ସୂକ୍ଷ୍ମ ଲୁଗା, ହାତୀଦାନ୍ତର କାମ ଓ କଂସା ବାସନ ପ୍ରଭୃତି ନେଇ ସେଠା ଅଧିବାସୀ-ମାନଙ୍କ ମଧ୍ୟରେ ବିକ୍ରି କରୁଥିଲେ ଏବଂ ସେଠାରୁ ସୁନା, ମୁକ୍ତା, ପୋହଳା ଓ ନଡ଼ିଆ ପ୍ରଭୃତି ଏ ଦେଶକୁ ଆଣୁଥିଲେ ।

ଏହି ବଣିକମାନଙ୍କୁ ଆମ ଦେଶବାସୀ "ସାଧବ ପୁଅ" ବୋଲି କହୁଥିଲେ । ଆଜିକାଲି ପ୍ରାଚୀନ କଳିଙ୍ଗର ସେ "ବୋଇତ ବାଣିଜ୍ୟ" ନାହିଁ; କିନ୍ତୁ 'ସାଧବ-ପୁଅ' ଙ୍କ କଥାଗୁଡ଼ିକ ଆମ ଦେଶର ବୁଢ଼ୀ ଆଈ ବା ବୁଢ଼ୀମାମାନେ ପିଲା ଦିନରୁ ଆମ୍ଭମାନଙ୍କୁ କହି ଆସୁଛନ୍ତି । ଆମର ଆଈ ବା ବୁଢ଼ୀମାମାନେ ଯେତେ ଅଶିକ୍ଷିତା ହୋଇଥାନ୍ତୁ ନା କାହିଁକି, ସେମାନେ ଯେଉଁ ସାଧବ ଘର ସାତ ପୁଅ ଓ ସାତ ବୋହୂ କଥା କହନ୍ତି, ସେହି କଥାଗୁଡ଼ିକ ଯେ ପ୍ରାଚୀନ କଳିଙ୍ଗର ସେହି ବଣିକମାନଙ୍କ କଥାର ପୁନରାବୃତ୍ତି ବା ଇତିବୃତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୌଦ୍ଧ ବାଣିଜ୍ୟ କର କେତେକ ସମସ୍ତ କଟାଇବା ପରେ ପ୍ରାଚୀନ କଳିଙ୍ଗ ଅଧିବାସୀ ଜାଭା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପରେ ବାଣିଜ୍ୟ କୋଠି ଏବଂ ନିଜ ବାସପାଇଁ ଘର ଦ୍ୱାର କରି ମଧ୍ୟ ରହିଥିଲେ । ଅଳ୍ପ ଶତାଧିକ କଳିଙ୍ଗ ମହାଜନଙ୍କ ବଂଶଧରମାନେ ଏହି ଦ୍ୱୀପଗୁଡ଼ିକରେ ଦେଖାଯାନ୍ତି । ଏମାନଙ୍କୁ ସ୍ଥାନୀୟ ଲୋକମାନେ "କ୍ଲିଂଗ" ବା 'କଳିଙ୍ଗ ଅଧିବାସୀ' ବୋଲି କହନ୍ତି । ସାଧବମାନଙ୍କର ବୌଦ୍ଧ ବାଣିଜ୍ୟ ଓ ଜାଭା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପରେ ସେମାନଙ୍କର ବଂଶଧରମାନେ ଥିବା—ଏ ଦଉଟି ଘଟଣାରୁ ପ୍ରାଚୀନ ଓଡ଼ିଶା ( କଳିଙ୍ଗ ) ଶିଳ୍ପ କଳାଦରେ ବିଶେଷ ଉନ୍ନତି ଲାଭ କରିଥିବା ସ୍ପଷ୍ଟ ଜାଣି ହୁଏ ।

କେତେ କାଳ ପରେ ଏ ଦେଶର ନାମ "କଳିଙ୍ଗ" ବଦଳରେ "ଉତ୍କଳ" ହୋଇଥିଲା । ଐତିହାସିକମାନେ କହନ୍ତି, ମନୁଙ୍କ ନାତି ସୁଦ୍ୟୁମ୍ନଙ୍କ ଜ୍ୟେଷ୍ଠ ପୁତ୍ର "ଉତ୍କଳ" ଏ ଦେଶର ପ୍ରଥମ ରାଜା ଥିବାରୁ ସେହି ରାଜାଙ୍କ ନାମାନୁସାରେ ଦେଶର ନାମ "ଉତ୍କଳ" ହେଲା । ଅନ୍ୟ କେତେକ ଜଣ ପଣ୍ଡିତ କହନ୍ତି, "ଉଡ୍ର" ବା "ଉତ୍ତରକଳିଙ୍ଗ" କାଳକ୍ରମେ "ଉତ୍କଳିଙ୍ଗ" ବା "ଉତ୍କଳ" ହେଲା । କିନ୍ତୁ ପ୍ରକୃତରେ ଦେଶର ତତ୍-କାଳୀନ ଅଧିବାସୀମାନେ ଉତ୍କୃଷ୍ଟ ଶିଳ୍ପ କଳାଦିରେ ବିଶେଷ ଦକ୍ଷତା ଲାଭ କରିଥିବାରୁ ଏ ଦେଶର ନାମ "ଉତ୍କଳ" ( ଉତ୍+କଳା+ଅ; ଉତ୍=ଶ୍ରେଷ୍ଠ+କଳା=ଶିଳ୍ପ କଳା ) ହୋଇଥିବାର ଜଣାଯାଏ ।

"ପ୍ରାଚୀନ ଶିଳ୍ପ ବିଭବ କିପରି ଥିଲା ?" ଏହି ପ୍ରଶ୍ନର ଉତ୍ତର ଦେବା ଏହିକ୍ଷଣି ସହଜ ନୁହେଁ । ତତ୍‌କାଳୀନ ଓଡ଼ିଶାବାସୀ ଆଜିକାଲି ପରି ଛାପା ପୁସ୍ତକ ବା କାଗଜ ପୋଥି ଲେଖିରଖିବା ସୁବିଧା ପାଇ ନ ଥିଲେ । ଯେଉଁମାନେ ବା ତାଳପତ୍ର ପୋଥିରେ ଲେଖି ରଖିଥିଲେ, ସେପରି କୌଣସି ପୋଥି ଏପର୍ଯ୍ୟନ୍ତ ଓଡ଼ିଶାରେ ଆବିଷ୍କୃତ ହୋଇ ନାହିଁ । ତଥାପି ପ୍ରାଚୀନ ଓଡ଼ିଶାରେ ଶିଳ୍ପ କଳା ବିଷୟ ଯେ କୌଣସିଠାରେ ଲିପିବଦ୍ଧ ହୋଇ ନାହିଁ, ଏ କଥା କେହି ସାହସ କରି କହି ନ ପାରନ୍ତି ! ଖ୍ରୀଷ୍ଟ ପୂର୍ବ ୪।୫ ଶତ ବର୍ଷ ପୂର୍ବରୁ ଆଜିସୁଦ୍ଧା ଯେଉଁ କେତୋଟି ଶିଳାଲିପି, ଗୁମ୍ଫା, ପ୍ରାଚୀନ ମନ୍ଦିର ପ୍ରଭୃତି ଆବିଷ୍କୃତ ହୋଇଛି, ସେହି ସେହି ସ୍ଥାନରେ ଯେଉଁ ସ୍ତ୍ରୀ, ପୁରୁଷ ଓ ଦେବ-ଦେବୀଙ୍କ ବିଗ୍ରହଗୁଡ଼ିକ ଦେଖାଯାଏ, ସେହି ଛବିଗୁଡ଼ିକରୁ ପ୍ରାଚୀନ ଶିଳ୍ପକଳାର ବେଶ ପ୍ରମାଣ ଦେଖିବାକୁ ପାଉଁ । କୌଣସି ତାଳପତ୍ର ବା କାଗଜ ପୋଥିର ଲେଖା-

ଗୁଡ଼ିକୁ ଅବିଶ୍ୱାସ କରା ଯାଇପାରେ, କୌଣସି ଦେଶୀ ବା ବୈଦେଶିକ ଲେଖକଙ୍କର ଲେଖା-ଗୁଡ଼ିକୁ ମଧ୍ୟ ଅବିଶ୍ୱାସଯୋଗ୍ୟ ବୋଲି କୁହା ଯାଇପାରେ; କିନ୍ତୁ ଏଇ ଯେ ପ୍ରସ୍ତର ମୂର୍ତ୍ତି-ଗୁଡ଼ିକରେ ତତ୍‌କାଳୀନ ଶିଳ୍ପ କଳାର ପରାକାଷ୍ଠା ଦେଖା ଯାଉଛି, ଏଗୁଡ଼ିକୁ ଦେଖିଲେ ପ୍ରାଚୀନ ଓଡ଼ିଶାବାସୀ ଶିଳ୍ପ ସାହିତ୍ୟରେ ବିଶେଷ ପ୍ରବୀଣ ଥିଲେ ବୋଲି କହିବାକୁ କିଏ କୁଣ୍ଠିତ ହେବ ? ବର୍ତ୍ତମାନ ପ୍ରାଚୀନ ଓଡ଼ିଶାର କେତୋଟି ଶିଳ୍ପବିଭବ ଓ ବାଣିଜ୍ୟର ନମୁନା ନିମ୍ନରେ ବର୍ଣ୍ଣିତ ହେଲା ।

(୧) "କୃଷି ଓ ବାଣିଜ୍ୟ" ଶିଳ୍ପ କଳାର ଗୋଟିଏ ଗୋଟିଏ ସାଥି ବା ଅଂଶ । ଦେଶରେ ପ୍ରଚୁର ପରିମାଣ କୃଷି ଓ ଶିଳ୍ପଜାତ ଦ୍ରବ୍ୟ ଥିଲେ ସେଇ ଜିନିଷଗୁଡ଼ିକୁ ବିକ୍ରୟ କରି ଧନୋପାର୍ଜନ କରିବା ପାଇଁ "ବାଣିଜ୍ୟ" ସୃଷ୍ଟି ହୁଏ । ଯେଉଁ ଦେଶରେ ଯେତେ କୃଷି ଓ ଶିଳ୍ପଜାତ ଦ୍ରବ୍ୟ ଥାଏ, ସେହି ଦେଶ ବାଣିଜ୍ୟରେ ସେତେ ଉନ୍ନତ ଲାଭ କରିଥାଏ । ପ୍ରାଚୀନ ଓଡ଼ିଶାରେ ପ୍ରଚୁର ପରିମାଣରେ ହାତୀଦାନ୍ତ ଓ ଅତି ସୂକ୍ଷ୍ମ ଲୁଗା ମିଳୁଥିଲା ।* ଏଇ ପଦାର୍ଥଗୁଡ଼ିକୁ ନେଇ ବିଦେଶରେ ବିକ୍ରି କରିବା ପାଇଁ କଳିଙ୍ଗର ସାଧବ-ପୁଅମାନେ "ବୋଇତ ବାଣିଜ୍ୟ" କରୁଥିଲେ । କଳିଙ୍ଗର "ବୋଇତ ବାଣିଜ୍ୟ" କଥା ଇତିହାସପ୍ରସିଦ୍ଧ । ଏ ବିଷୟରେ ବିଶେଷ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

(୨) କଥିତ ଅଛି ଯେ 'ତପୁସା' ଓ 'ବଲ୍ଲିକ' ନାମକ ଦୁଇ ଜଣ ବଣିକ କଳିଙ୍ଗ ଦେଶରୁ ପ୍ରାୟ ୫୦୦ ଶଗଡ ବାଣିଜ୍ୟ ଜିନିଷ ନେଇ ବିକ୍ରୟ କରିବା ପାଇଁ "ମଗଧ" ବା ଆଧୁନିକ ବିହାର ଦେଶକୁ ଯାଉଥିଲେ । ମାର୍ଗରେ ବୋଧଗୟାଠାରେ ବୁଦ୍ଧଦେବଙ୍କୁ ଦେଖି ତାଙ୍କ ଦ୍ୱାରା ପ୍ରବର୍ତ୍ତିତ "ବୌଦ୍ଧ ଧର୍ମ"ରେ ଦୀକ୍ଷିତ ହେଲେ ଓ ସେଇ ନୂତନ ଧର୍ମର ସନ୍ଦେଶ ଓଡ଼ିଶାକୁ ଆଣିଥିଲେ । ଏଇ ଘଟଣା ଖ୍ରୀଷ୍ଟ ପୂର୍ବ ପ୍ରାୟ ୫୦୦ ଅବ୍ଦରେ ଘଟିଥିଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଆଜକୁ ପ୍ରାୟ ୨୪୦୦ ବର୍ଷ ପୂର୍ବେ ଏ ଦେଶରେ ଶିଳ୍ପ ଓ ବାଣିଜ୍ୟର ପ୍ରସାର ବଢ଼ିଥିଲା ।

(୩) ଆଜିକାଲି ମଧ୍ୟ ଓଡ଼ିଶା ଗଡଜାତରେ ଅନେକ ହାତୀ ଓ ହାତୀଦାନ୍ତ ମିଳେ । ହାତୀଦାନ୍ତରେ ଅତି ସୂକ୍ଷ୍ମ ଶିଳ୍ପକାର୍ଯ୍ୟମାନ କରାଯାଏ । ଏହି କାର୍ଯ୍ୟ କରିବା ପାଇଁ ବିଶେଷ

* "Both ivory and fine musline were had in Utkal in vast quantities and beautiful musline was the chief article of trade in the Tamralipti port,"

("Prachi" Vol I. Pt. II, P. 8.)

ଶିଳ୍ପସ୍ପୃହା ଓ ବୁଦ୍ଧିକୌଶଳ ଦରକାର । ତଥାପି ମହାଭାରତ ଯୁଗରେ କଳିଙ୍ଗର ଶିଳ୍ପୀମାନେ ଏହି କାର୍ଯ୍ୟରେ ବିଶେଷ ଦକ୍ଷତା ଲାଭ କରିଥିବାର ଜଣାଯାଏ । ଜଣେ ଓଡ଼ିଆ ରାଜା ପାଣ୍ଡବମାନଙ୍କୁ ହାତୀଦାନ୍ତରେ ତିଆରି ହୋଇଥିବା ଜିନିଷମାନ ଉପହାର ଦେଇଥିବା ମହାଭାରତରୁ ଜଣାଯାଏ । *

(୪) ମଗଧ ରାଜା ଅଶୋକ ଖ୍ରୀଷ୍ଟ ପୂର୍ବ ୨୭୪ ଠାରୁ ୨୩୬ ଅବ୍ଦ ଯାଏ ରାଜତ୍ୱ କରିଥିଲେ । ସେ ଭାରତର ଅର୍ଦ୍ଧାଧିକ ରାଜ୍ୟ ଅଧିକାର କରିଥିଲେ । କିନ୍ତୁ କଳିଙ୍ଗ ଅନେକ ଦିନଯାଏ ତାଙ୍କର ଅଧିକାରଭୁକ୍ତ ହୋଇ ନ ଥିଲା । ପରେ ୨୬୨ ରେ ସେ କଳିଙ୍ଗ ପ୍ରତି ଯୁଦ୍ଧ ଘୋଷଣା କରି ଏହାକୁ ନିଜ ରାଜ୍ୟଭୁକ୍ତ କଲେ । କଳିଙ୍ଗ ଅଧିକାର କଲା ପରେ ଅଶୋକ ଏହି ଦେଶର ଆଧୁନିକ "ଧଉଳି" ଓ "ଜଉଗଡ଼" ଠାରେ ଦୁଇଟି ଶିଳାଲିପି ଖୋଳାଇଥିଲେ । ଏହିଗୁଡିକୁ ପାଠ କଲେ ସ୍ପଷ୍ଟ ଜାଣି ହୁଏ ଯେ, ତତ୍କାଳୀନ ଓଡ଼ିଶାବାସୀ ଶିଳ୍ପ କଳାଦିରେ ବିଶେଷ ଦକ୍ଷତା ଲାଭ କରିଥିଲେ । ସେ କାଳର ପ୍ରଧାନ ଶିଳ୍ପ ମଧ୍ୟରୁ ସୁନ୍ଦର ଲୁଗା ବୁଣା, ହାତୀଦାନ୍ତ ଓ ହୀରା କାମମାନ ପ୍ରଧାନ ଥିଲା । କଳିଙ୍ଗର ସୂକ୍ଷ୍ମ ଲୁଗାଗୁଡ଼ିକ ଭାରତ ତଥା ଦେଶ ବିଦେଶରେ ମଧ୍ୟ ବିଶେଷ ଆଦୃତ ଥିଲା । ଏପରି କି ଏହି ଦେଶର ନାମାନୁସାରେ ମାନ୍ଦ୍ରାଜ ଅନ୍ତର୍ଗତ "ତାମିଲ" ଲୋକମାନେ ଲୁଗାକୁ "କଳିଙ୍ଗ" ନାମ ଦେଇଥିଲେ ଏବଂ ଏହି ଲୁଗା ନେଇ ସାମୁଦ୍ରିକ ବାଣିଜ୍ୟ କରି ମଳୟ ଦ୍ୱୀପରେ ବାସ କରୁଥିବା କଳିଙ୍ଗ ଅଧିବାସୀଙ୍କୁ "କ୍ଳିଂଗ" ବୋଲି କହୁଥିଲେ । ⊕

---

* "ମହାଭାରତ—ସଭା ପର୍ବ" ଦେଖନ୍ତୁ ।

⊕ "The evidence of the high standard of civilization and prosperity attained in Kalinga is equally striking. Elephants were specially bred for the royal forces × ×, diamonds of an unique kind were quarried and exported × × cloth was manufactured and exported in such quantities that "Kalinga" became the word for cloth in Tamil, and frequent Sea Voyages were made to countries outside India, on account of which the people were called "Klings" in the Malay Peninsula.

[ Puri Dt. Gazetteer, P, 23, ]

(୫) ଅଶୋକଙ୍କ ପରେ "ଖାରବେଳ" ପ୍ରାଚୀନ ଉତ୍କଳର ଏକଚ୍ଛତ୍ରାଧିପତି ହେଲେ । ସେ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଅବ୍ଦର ମଧ୍ୟଭାଗରେ ଜୀବିତ ଥିଲେ । ତାଙ୍କ ସମୟରେ ସମସ୍ତ ପ୍ରକାର ସାଧାରଣ ଶିଳ୍ପକଳାର ଉନ୍ନତି ସଙ୍ଗେ ସଙ୍ଗେ ଉତ୍କୃଷ୍ଟ ପ୍ରସ୍ତର ଶିଳ୍ପରେ ମଧ୍ୟ ତତ୍କାଳୀନ ଉତ୍କଳବାସୀ ବିଶେଷ ଉନ୍ନତି ଲାଭ କରିଥିବାର ଜଣାଯାଏ । ଏହି ପ୍ରସ୍ତର ଶିଳ୍ପର ପ୍ରଧାନ ନିଦର୍ଶନ ଭୁବନେଶ୍ୱର ନିକଟବର୍ତ୍ତୀ "ଉଦୟଗିରି"ର "ରାଣୀହଂସପୁର" ବା ରାଣୀ ନଅର, ରାଜନଅର ଓ ଅନ୍ୟାନ୍ୟ ଗୁମ୍ଫାମାନ ! ଏହି ଗୁମ୍ଫାଗୁଡ଼ିକରେ ଯେଉଁ ସୁନ୍ଦର ସୁନ୍ଦର ସ୍ତ୍ରୀ ପୁରୁଷ, ଗୁରୁ ଶିଷ୍ୟ, ସୈନ୍ୟ ସୈନ୍ୟାଧ୍ୟକ୍ଷ ଓ ଅନ୍ୟାନ୍ୟ ପ୍ରସ୍ତର ମୂର୍ତ୍ତିମାନ ଖୋଳା ଯାଇଛି, ସେହି ମୂର୍ତ୍ତିଗୁଡ଼ିକର ଗଠନ, ଠାଣି, ବେଶଭୂଷା ପ୍ରଭୃତି ଦେଖିଲେ ସେ କାଳର ଶିଳ୍ପୀମାନେ ପ୍ରସ୍ତର ଶିଳ୍ପରେ କିପରି ସୁନିପୁଣ ଥିଲେ ସ୍ପଷ୍ଟ ଜାଣି ହୁଏ ।

ଅବଶ୍ୟ କେତେକ ସ୍ୱାର୍ଥାନ୍ଧ ଦେଶୀ ବା ବିଦେଶୀ ଲେଖକମାନେ କହନ୍ତି ଯେ, ଏହି ପ୍ରସ୍ତର ମୂର୍ତ୍ତିଗୁଡ଼ିକ କେବଳ ପାଶ୍ଚାତ୍ୟ ଦେଶବାସୀଙ୍କ ଅନୁକରଣରେ ତିଆରି ହୋଇଥିଲା ଓ ଏଗୁଡ଼ିକରେ କୌଣସି ପ୍ରକାର ନିଜତ୍ୱ ( Originality ) ନାହିଁ । ଅର୍ଥାତ୍ ପ୍ରାଚୀନ ଓଡ଼ିଆ ଶିଳ୍ପୀମାନେ କେବଳ ଅନ୍ୟ ଦେଶର ଶିଳ୍ପୀକୁ ନକଲ କରି ଏଗୁଡ଼ିକୁ ତିଆରି କରିଥିଲେ । ମାତ୍ର ଯେଉଁମାନେ ଏପରି ଅପୌକ୍ତିକ ପ୍ରଳାପ କରନ୍ତି, ସେମାନେ ସମ୍ପୂର୍ଣ୍ଣରୂପେ ପାସୋରି ଦିଅନ୍ତି ଯେ, ଯେଉଁ ସମୟରେ ଓଡ଼ିଶାର ଏହି ପ୍ରସ୍ତର ମୂର୍ତ୍ତିଗୁଡ଼ିକ ତିଆରି ହୋଇଥିଲା, ଠିକ୍ ସେତିକିବେଳେ ଅନେକ ପାଶ୍ଚାତ୍ୟ ଦେଶବାସୀ ଘୋର ଅନ୍ଧକାରରେ ବୁଡ଼ି ରହିଥିଲେ । ଶିଳ୍ପ ସାହିତ୍ୟାଦିରେ ବିଶେଷ ଦକ୍ଷତା ଦେଖାଇବା ତେଣେ ଥାଉ, ସାଧାରଣ ଶିକ୍ଷା ବା ସଭ୍ୟତାର ନାମ ଗନ୍ଧ ସୁଦ୍ଧା ସେମାନେ ପାଇ ନ ଥିଲେ । ଏପରି ସ୍ଥଳେ ସେହି ସେହି ଦେଶର ଶିଳ୍ପକଳାଗୁଡ଼ିକୁ ପ୍ରାଚୀନ ଓଡ଼ିଶାର ଶିଳ୍ପୀମାନେ ନକଲ କରିଥିଲେ ବୋଲି ଯେଉଁମାନେ କହନ୍ତି, ସେମାନଙ୍କର ଯୁକ୍ତି ଭିତ୍ତିଶୂନ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୬) "ସ୍କଫ୍" ସାହେବଙ୍କ ଲିଖିତ ଗୋଟିଏ ପୁସ୍ତକରୁ ସ୍ପଷ୍ଟ ଜଣାଯାଏ ଯେ, ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରେ ଓଡ଼ିଶାର "ତାମ୍ରଲିପ୍ତ" ବନ୍ଦର ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା ଓ ଏହି ବନ୍ଦର ଦେଇ ଓଡ଼ିଶାର 'ସାଧବପୁଅ'ମାନେ ଅତି ସୁନ୍ଦର ଓ ସୂକ୍ଷ୍ମ ବସ୍ତ୍ର ଏବଂ ହାତିଦାନ୍ତର ଶିଳ୍ପ କାର୍ଯ୍ୟମାନ ଦେଶ ବିଦେଶକୁ ରପ୍ତାନି କରୁଥିଲେ । *

* "The Periplus of the Erythrean Sea" by Scoff.

( ୭ ) ପ୍ରାଚୀନ ଓଡ଼ିଶାରେ କପଡ଼ର ସୁନ୍ଦର ଓ ସୂକ୍ଷ୍ମ ବସ୍ତ୍ରମାନ ତିଆରି ହେଉଥିଲା, ସେ ବିଷୟରେ ନିମ୍ନଲିଖିତ ଐତିହାସିକ ଘଟଣା ବର୍ଣ୍ଣନା କରିବା ଉଚିତ ମନେ କରୁଁ ।

"କଥିତ ଅଛି, କଳିଙ୍ଗ ବା ଉତ୍କଳର ରାଜା ଅଯୋଧ୍ୟାର ରାଜାଙ୍କୁ ଖଣ୍ଡିଏ ସୂକ୍ଷ୍ମ ବସ୍ତ୍ର ଉପହାର ଦେଇଥିଲେ । ସେଇ ବସ୍ତ୍ରଖଣ୍ଡି ଜଣେ ବୌଦ୍ଧ ସନ୍ନ୍ୟାସିନୀ ପରିଧାନ କରିଥିଲେ । କିନ୍ତୁ ବସ୍ତ୍ର ଖଣ୍ଡି ଏତେ ସୂକ୍ଷ୍ମ ଥିଲା ଯେ, ଲୋକେ ଏହାକୁ ହଠାତ୍ ଦେଖି ନ ପାରି ତପସ୍ୱିନୀଙ୍କୁ ଉଲଗ୍ନ ମନେ କରି ତିରସ୍କାର କଲେ ।" *

ଏହି ଘଟଣାରୁ ପ୍ରାଚୀନ ଓଡ଼ିଶାର ଶିଳ୍ପୀମାନେ କପଡ଼ର ସୂକ୍ଷ୍ମ ବସ୍ତ୍ର ତିଆରି କରି ପାରୁଥିଲେ ସ୍ପଷ୍ଟ ଜଣା ହୁଏ । ସେ କାଳରେ ସୂକ୍ଷ୍ମ ବସ୍ତ୍ରର ଗୋଟିଏ ପରୀକ୍ଷା ଥିଲା । "ରାତିରେ ସୂକ୍ଷ୍ମ ବସ୍ତ୍ରକୁ ଘାସ ଉପରେ ବିଛାଇ ଦିଆଯାଏ । ସକାଳେ ଶିଶିର ହେତୁ ଯଦି ସେଇ ବସ୍ତ୍ରଖଣ୍ଡି ଅଳ୍ପ ଦୂରରୁ ଘାସଠାରୁ ବାରି ହୋଇ ନପାରେ, ତା ହେଲେ ସେଇ ବସ୍ତ୍ରଟି ସୂକ୍ଷ୍ମ ବସ୍ତ୍ର ମଧ୍ୟରେ ଗଣ୍ୟ ହୁଏ । ଏହା ଉତ୍କଳରେ ସୂକ୍ଷ୍ମ ବସ୍ତ୍ରର ପରୀକ୍ଷା । ଏପ୍ରକାର ସୂକ୍ଷ୍ମ ବସ୍ତ୍ର-ମାନଙ୍କୁ ବଂଶନଳୀ ମଧ୍ୟରେ ରଖା ଯାଉଥିଲା ।" *

ଖ୍ରୀଷ୍ଟ ୫୦୦ ବର୍ଷ ପୂର୍ବଠାରୁ ୪ର୍ଥ ଓ ୫ମ ଖ୍ରୀଷ୍ଟାବ୍ଦ ଯାଏ ପ୍ରାଚୀନ ଓଡ଼ିଶାର ଶିଳ୍ପ-ବିଭବ ଓ ସାମୁଦ୍ରିକ ବାଣିଜ୍ୟ ପ୍ରଭୃତି କପଡ଼ର ବିସ୍ତୃତି ଲାଭ କରିଥିଲା, ସେ କଥା ପୂର୍ବେ କୁହା-ଗଲା । ବର୍ତ୍ତମାନ ୭ମ ଖ୍ରୀଷ୍ଟାବ୍ଦଠାରୁ ଅଜସୁଦ୍ଧା ଏହି ବିଭବ କପଡ଼ର ଉନ୍ନତି କରିଥିଲା ଓ କପଡ଼ର ତାର ଅବନତି ଘଟିଛି, ସେ କଥା ଏଠାରେ ବର୍ଣ୍ଣିତ ହେବ :—

( ୮ ) **୭ମ ଠାରୁ ୧୧ଶ ଖ୍ରୀଷ୍ଟାବ୍ଦ** ପର୍ଯ୍ୟନ୍ତ, ଅର୍ଥାତ୍ ଓଡ଼ିଶାର 'କେଶରୀ' ବା ପ୍ରଥମ ସ୍ୱାଧୀନ ରାଜବଂଶ ସମୟରେ ଓଡ଼ିଶାର ଶିଳ୍ପବିଭବ କପଡ଼ର ଉନ୍ନତି ଲାଭ କରି-ଥିଲା, ତା ନିମ୍ନ ଲେଖାରୁ ସ୍ପଷ୍ଟ ଜଣା ହୁଏ—

ସେ ସମୟରେ "ଛୁଟଲୁଗା ନାମରେ ଉତ୍କଳ ଚିରପ୍ରସିଦ୍ଧ ଥିଲା । କେଶରୀ ରାଜତ୍ୱ ପୂର୍ବରୁ ଛୁଟ ଲୁଗାର କାରିଗରି ଏ ଦେଶରେ ବହୁକାଳ ଧରି ପ୍ରଶଂସା ପାଇ ଆସିଛି । ପୋଷାକ ପରିଚ୍ଛଦ ପରି ଗହଣାଗଣ୍ଠି କାମ ଅତି ସୂକ୍ଷ୍ମ ଏବଂ ଉତ୍କୃଷ୍ଟ ଥିଲା । ସ୍ତ୍ରୀ ଓ ପୁରୁଷ-ମାନଙ୍କ ପାଇଁ ସୁନା ଓ ରୁପାରେ ବିଭିନ୍ନ ପ୍ରକାର ଅତି ସୂକ୍ଷ୍ମ ଅଳଙ୍କାରମାନ ତିଆରି ହେଉଥିଲା । × × ବର୍ତ୍ତମାନ ପରି କାଠ ଜିନିଷର ବ୍ୟବହାର ମଧ୍ୟ ଥିଲା । ସୁନ୍ଦର ଓ ସୂକ୍ଷ୍ମ

* "ପ୍ରାଚୀନ ଉତ୍କଳରେ ଜଳଯାତ୍ରା" ୩୦ ପୃଷ୍ଠା ଦେଖନ୍ତୁ

କାରୁଖଚିତ ଖଟ, ପଲଙ୍କ, ଚୌକି ଲୋକେ ଅବସ୍ଥା ଅନୁସାରେ ବ୍ୟବହାର କରୁଥିଲେ । କଠୋକ ଓ ଏକପ୍ରକାର ଯୋଡା ସମାଜରେ ଚଳୁଥିଲା । ପାଲିଙ୍କି, ସବାରି, ଚୌଦୋଳର ବ୍ୟବହାର ଥିଲା । କଂସା ପିତ୍ତଳର ନାନା ପ୍ରକାର ବାସନ ଚଳୁଥିଲା । ଗଗ୍ରା ଡାଲି ଥାଳି ବାସନ ପିକଦାଣି ଫୁଲଦାଣି ପ୍ରଭୃତି ବହୁ ପ୍ରକାର ଜିନିଷର ବ୍ୟବହାର ଦେଖାଯାଏ । ଦର୍ପଣ, ଚିରଣା, ଅଲଟ ପ୍ରଭୃତି ମଧ୍ୟ ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀ ଥିଲା । ସୂକ୍ଷ୍ମ ବିଦ୍ୟା ମଧ୍ୟରେ କାଠ ଓ ପଥରର, ସୁନା ରୁପା ପିତ୍ତଳ କଂସାର ସୂଚୀ କାମ ବାଦ୍ ସଙ୍ଗୀତ ବିଦ୍ୟାର ଆଦର କିଛି ଅଳ୍ପ ନ ଥିଲା । × × × କେଶରୀ ରାଜତ୍ୱ କାଳରେ ଉତ୍କଳୀୟମାନେ ଶିଳ୍ପ କାର୍ଯ୍ୟରେ ଆଶ୍ଚର୍ଯ୍ୟଜନକ ଉନ୍ନତି କରିଥିଲେ । **ଉତ୍କୃଷ୍ଟ କଳାଯୋଗେ କେହି କେହି ଦେଶର ନାମ "ଉତ୍କଳ" ହୋଇଥିବାର କହନ୍ତି ।** ଶିଳ୍ପମଧ୍ୟରେ ପଥରର ଭାସ୍କର କାର୍ଯ୍ୟ, ଲୁହା ପିତ୍ତଳର କାମ ଓ ଜୀବନର ଆବଶ୍ୟକ ଅନ୍ୟାନ୍ୟ କାର୍ଯ୍ୟମାନ ପ୍ରଧାନ ଥିଲା ।" × × କାଷ୍ଠ ଶିଳ୍ପ ମଧ୍ୟରୁ ସାଧାରଣ ଗୃହୋପଯୋଗୀ ଜିନିଷପତ୍ର ସଙ୍ଗେ ସଙ୍ଗେ "ନୌକା ଓ ଜାହାଜ ନିର୍ମାଣ ଉତ୍କଳରେ ବଢେଇଙ୍କର ଚିରନ୍ତନ କାମ ଥିଲା । ବାଣିଜ୍ୟପାଇଁ ବଡ଼ ବଡ଼ ଜାହାଜମାନ, ଏପରି କି ହାତୀ ବୋଇତମାନ ତିଆରି କରୁଥିଲେ ।" + + ଏହି ସମୟରେ "ଲୁହାର କାରିଗରି ମଧ୍ୟ ବିଶେଷ ଉତ୍କର୍ଷ ପାଇଥିଲା । ବର୍ତ୍ତମାନ ଯୁଗରେ ଲୁହାର କାମ ନିମନ୍ତେ ଯେତେ କଳକାରଖାନାର ସୃଷ୍ଟି ହୋଇଛି, ସେତେବେଳେ ସେ ସବୁ ଜଣା ନ ଥିଲା । କମାରମାନେ କେବଳ ନିଜ ହାତ ହାତୁଡିରେ ଯାହା କିଛି କରୁଥିଲେ । ସେ କାଳର ଲୁହା ଜିନିଷ ମଧ୍ୟରେ ଭୁବନେଶ୍ୱରର ମନ୍ଦିରରେ ଯେଉଁ କଡ଼ିମାନଙ୍କର ବ୍ୟବହାର କରାଯାଇଛି, ବର୍ତ୍ତମାନ କଳକାରଖାନା ଯୁଗରେ ଦର୍ଶକମାନେ ତା ଦେଖି ବିସ୍ମିତ ହୁଅନ୍ତି । × × ଫଳତଃ, ସକଳ ଶ୍ରେଣୀର ଶିଳ୍ପରେ କଂସା ପିତ୍ତଳ ଲୁହା ପଥର କାଠକାମଠାରୁ ସୂତା ଓ ପାଟ କାମ ପର୍ଯ୍ୟନ୍ତ ସବୁଥିରେ ଉତ୍କଳୀୟ ଶିଳ୍ପୀମାନଙ୍କର ହସ୍ତପାଟବର ଯଥେଷ୍ଟ ପ୍ରମାଣ ମିଳେ ।" *

ସେ କାଳରେ ଆଜିକାଲି ପରି ରେଳ ବା ମୋଟର ପ୍ରଭୃତି ଯାନର ସୃଷ୍ଟି ହୋଇ ନ ଥିଲା କିମ୍ବା ତତ୍କାଳୀନ ଉତ୍କଳୀୟମାନେ ନିଜ ଦେଶରେ ତିଆରି ହେବା ଜିନିଷପତ୍ରକୁ ଅବଜ୍ଞା କରି କୌଣସି ପ୍ରକାର ବିଦେଶୀ ଜିନିଷ ପ୍ରତି ଆକୃଷ୍ଟ ହୋଇ ନ ଥିଲେ । ଏପରି କି ନିଜ ଦେଶରେ ଯେଉଁ ଯେଉଁ ଜିନିଷମାନ ପ୍ରସ୍ତୁତ ହେଉଥିଲା, ସେଗୁଡ଼ିକୁ ନିଜେ ବ୍ୟବହାର

* 'ଉତ୍କଳ-ଇତିହାସ' ୭୯—୮୫ ପୃଷ୍ଠା ଦେଖନ୍ତୁ

ହେବା ସଙ୍ଗେ ସଙ୍ଗେ ଉଦ୍‌ବୃତ୍ତ ଜିନିଷଗୁଡ଼ିକୁ ନେଇ ଦେଶ ବିଦେଶରେ ବିକ୍ରି କରିବା ପାଇଁ ସାମୁଦ୍ରିକ ବାଣିଜ୍ୟର ସୃଷ୍ଟି କରିଥିଲେ । "ଶିଳ୍ପ ଓ ବାଣିଜ୍ୟ ଉତ୍କର୍ଷ ଓ ବିସ୍ତାର ନିମନ୍ତେ ପରସ୍ପର ଉପରେ ନିର୍ଭର କରେ । ଶିଳ୍ପ ଉତ୍କୃଷ୍ଟ ଓ ପ୍ରଚୁର ନ ହେଲେ ବାଣିଜ୍ୟ ଅସମ୍ଭବ ଏବଂ ବାଣିଜ୍ୟର ବହୁଳ ବିସ୍ତୃତି ନ ହେଲେ ଶିଳ୍ପୀ ମନରେ ସେଭଳି ତୀବ୍ର ପ୍ରତି-ଯୋଗିତାର ଜ୍ଞାନ ଜନ୍ମେ ନାହିଁ । ଉତ୍କଳରେ ଶିଳ୍ପର ବହୁଳତା ଓ ଉତ୍କର୍ଷ ଯୋଗୁଁ ଉତ୍କଳ ବାଣିଜ୍ୟର ବିସ୍ତୃତି ଅନୁମାନ କରିବାର କଥା । ଉତ୍କଳ ଶିଳ୍ପୀ କେବଳ ଉତ୍କଳ ମଧ୍ୟରେ ଆବଦ୍ଧ ରହି ନ ଥିଲି—ଦେଶ ବିଦେଶର ବାଣିଜ୍ୟ ବିପଣୀରେ ଏହାର ସମଧିକ ଆଦର ଥିଲି ।" *

ପ୍ରାଚୀନ ଉତ୍କଳରେ ପ୍ରଚୁର ପରିମାଣ ଶିଳ୍ପଜାତ ଦ୍ରବ୍ୟ ଥିବାରୁ ଏବଂ ପ୍ରାଚୀନ ଉତ୍କଳୀମାନେ ସାମୁଦ୍ରିକ ବାଣିଜ୍ୟରେ ବିଶେଷ ଦକ୍ଷତା ଲାଭ କରିଥିବାରୁ ଓଡ଼ିଶାର ସମୁଦ୍ର ଉପକୂଳରେ ଏକାଧିକ ଅତି ବଡ଼ ଓ ଅତି ପ୍ରସିଦ୍ଧ ବନ୍ଦର ବା ପୋତାଶ୍ରୟ ଥିଲି । ଗ୍ରୀକ୍ ଲେଖକ "ଟଲମୀ" ଓ ଚୀନପରିବ୍ରାଜକ ହୁଏନସାଂଙ୍କ ଭ୍ରମଣବୃତ୍ତାନ୍ତରୁ ସ୍ପଷ୍ଟ ଜାଣିହୁଏ ଯେ, ଖ୍ରୀଷ୍ଟ ବହୁଶତାବ୍ଦୀ ପୂର୍ବରୁ ଆରମ୍ଭ କରି କେଶରୀ ଓ ଓଡ଼ିଶାର ପରବର୍ତ୍ତୀ ସ୍ୱାଧୀନ ରାଜାମାନଙ୍କ ସମୟରେ ଓଡ଼ିଶାର ସମୁଦ୍ର ଉପକୂଳରେ "ତାମ୍ରଲିପ୍ତ", ଚରିତ୍ରପୁର ବା "ଗୁରିବ" ଓ "ଚିଲିକା" ବନ୍ଦରମାନ ଅତି ପ୍ରସିଦ୍ଧ ଓ ପ୍ରଧାନ ବନ୍ଦର ହୋଇଥିଲି । ଏହି ବନ୍ଦର ଦେଇ ଓଡ଼ିଶାର ସାଧବମାନେ ବୋଇତ ବାଣିଜ୍ୟ କରି ଦେଶ ବିଦେଶକୁ ଯାଉଥିଲେ ।

(୯) **ଖ୍ରୀଷ୍ଟ ୧୦୪୨—୧୫୬୮ ଅବ୍ଦ** –କେଶରୀ ବଂଶ ପରେ ଓଡ଼ିଶାରେ "ଗଙ୍ଗ" ଓ "ସୂର୍ଯ୍ୟ"ବଂଶ ରାଜାମାନେ ପ୍ରାୟ ୭ଶହ ବର୍ଷ ରାଜତ୍ୱ କରିଥିଲେ । ଏହି ଦୀର୍ଘ ସମୟରେ ମଧ୍ୟ ଓଡ଼ିଶାବାସୀ କେବଳ ଦେଶୀୟ ଶିଳ୍ପ ଦ୍ୱାରା ପ୍ରସ୍ତୁତ ଜିନିଷଗୁଡ଼ିକୁ ବ୍ୟବହାର କରୁଥିଲେ ଓ ଏହି ଶିଳ୍ପର ଉତ୍ତରୋତ୍ତର ବୃଦ୍ଧି କରିଥିଲେ । "ବାସ୍ତବିକ ଏହି ସମୟରେ ଶିଳ୍ପ ଓ ବାଣିଜ୍ୟ ଉତ୍କଳରେ ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚିଥିଲି । ଲୁହା ଓ ପଥରର କାରଖାନାମାନ ଦେଶର ନାନା ସ୍ଥାନରେ ଥିଲି ଏବଂ ସେଥିରୁ ଉତ୍ପନ୍ନ ପଦାର୍ଥମାନ ଦେଶ ବିଦେଶର ବିପଣୀରେ ବିକ୍ରୀ ହେଉଥିଲି । କେଶରୀ ରାଜତ୍ୱରେ ଭୁବନେଶ୍ୱରର ଯେଉଁ ଲୁହା କଡ଼ିମାନ ନିର୍ମିତ ହେଉଥିଲି, ଗଙ୍ଗବଂଶ ରାଜତ୍ୱରେ ତା ଅପେକ୍ଷା ଆହୁରି ଆଶ୍ଚର୍ଯ୍ୟଜନକ କଡ଼ିମାନ ଉତ୍କଳର ଭୂତମାନଙ୍କରୁ ବାହାରୁଥିଲି ।" ଏହି ସମୟରେ ଯେଉଁ ଲୁହା କଡ଼ିମାନ

* "ଉତ୍କଳ ଇତିହାସ" ୮୫—୮୬ ପୃଷ୍ଠା

ତିଆରି ହୋଇଥିଲା, ତନ୍ମଧ୍ୟରୁ ନମୁନାଗୁଡ଼ିକ ଆଜି କୋଣାର୍କର "ସେଇ" ଭଗ୍ନ ମନ୍ଦିରରେ ଦେଖାଯାଏ ଓ ଏଗୁଡ଼ିକୁ ଦେଖି ୟୁରୋପ ଓ ଆମେରିକାର ପ୍ରସିଦ୍ଧ ଇଞ୍ଜିନିୟରମାନେ [illegible] ହୁଅନ୍ତି । × × "ଲୁଗା ପୂର୍ବପରି ଉତ୍କଳର ପ୍ରଧାନ ଶିଳ୍ପଜାତ ପଣ୍ୟ ଥିଲା ଏବଂ ବୈଦେଶିକ ବିପଣୀମାନଙ୍କୁ ପ୍ରଚୁର ପରିମାଣରେ ରପ୍ତାନୀ ହେଉଥିଲା ।" ଏହି ଲୁଗା କିଣିବା ପାଇଁ ୟୁରୋପରୁ ଡଚ, ଦିନାମାର, ଫରାସୀ ଓ ଇଂରେଜ ବଣିକମାନେ ସମୁଦ୍ରରେ ଅସହ୍ୟ କଷ୍ଟ ସହ୍ୟ କରି ଓଡ଼ିଶା ଉପକୂଳକୁ ଆସି ଏଠାରେ ବାଣିଜ୍ୟ କୋଠିମାନ ତିଆରି କରିଥିଲେ । ଗଙ୍ଗ ବଂଶର ପ୍ରସିଦ୍ଧ ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ( ୧୪୯୫-୧୫୩୨ ) ପର୍ତ୍ତୁଗିଜ ବଣିକମାନେ ବାଲେଶ୍ୱରର "ପେପିଲି" ବନ୍ଦରରେ ପ୍ରଥମେ ପ୍ରବେଶ କରି ବୈଦେଶିକ ବାଣିଜ୍ୟ ଚଳାଇଥିଲେ । "ଏହା ବାଦ ସୁନା, ରୁପା, କାଠ, ପଥର, ତମ୍ବା, ପିତଳ, କଂସା ପ୍ରଭୃତି କାମ ବେଶି ହେଉଥିଲା । କଟକର ତାରକସୀ କାମ, କଣ୍ଟିଲୋ, ବାଲକାଟି ଓ ବାଲେଶ୍ୱରର କଂସା ପିତଳ କାମ, ନୀଳଗିରିର ପଥର ବାସନ ପ୍ରଭୃତି ବିବିଧ ପଣ୍ୟ ସାମଗ୍ରୀ ସ୍ଥାନାନ୍ତରକୁ ରପ୍ତାନୀ ହେଉଥିଲା । ଉତ୍କଳର ବନ୍ଦରମାନ ବହିର୍ବାଣିଜ୍ୟରେ ପରିପୂର୍ଣ୍ଣ ଥିଲା । ୧୨୭୧ ଖ୍ରୀଷ୍ଟାବ୍ଦରେ ଇଟାଲୀ ଦେଶର ଜଣେ ପର୍ଯ୍ୟଟକ—ମାର୍କୋପୋଲୋ ( Marco Polo )—ଚୀନ ଓ ମଳୟଦ୍ୱୀପପୁଞ୍ଜ ପ୍ରଭୃତି ଦେଖି ସିଂହଳ ଫେରୁଥିବା ସମୟରେ ଉତ୍କଳର ବନ୍ଦରମାନଙ୍କରେ ବାଣିଜ୍ୟ ତତ୍ପର ଥିବାର ଦେଖିଥିଲେ ।" ✤

ଅନ୍ୟାନ୍ୟ ସାଧାରଣ ଶିଳ୍ପ ବ୍ୟତୀତ ପ୍ରସ୍ତର ଶିଳ୍ପରେ ଏହି ସମୟର ଓଡ଼ିଆ ଶିଳ୍ପୀମାନେ ବିଶେଷ ଦକ୍ଷତା ଦେଖାଇଥିବାର ସ୍ପଷ୍ଟ ଜଣାଯାଏ । ଏହାର ନିଦର୍ଶନ ଏହି ସମୟରେ ତିଆରି ହୋଇଥିବା "କୋଣାର୍କ" ମନ୍ଦିର । ପ୍ରସ୍ତର ଶିଳ୍ପର ପ୍ରଧାନ ଆଦର୍ଶ "କୋଣାର୍କ" ମନ୍ଦିର ଆଜି ଏକା ଭାରତ କାହିଁକି ଜଗଦ୍‌ବାସୀଙ୍କୁ ମୁଗ୍ଧ କରିଅଛି ! ଏହି ମନ୍ଦିରର ଗଠନ ପ୍ରଣାଳୀ ଓ ଶିଳ୍ପଚାତୁରୀ ସମ୍ବନ୍ଧରେ ଏକାଧିକ ଐତିହାସିକ ପଣ୍ଡିତ ଭୂରି ଭୂରି ପ୍ରଶଂସା କରି ଅତି ଉପାଦେୟ ପୁସ୍ତକମାନ ଲେଖି ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ଆକବରଙ୍କ ମନ୍ତ୍ରୀ ଅବୁଲଫଜଲ ( ତାଙ୍କ ଲିଖିତ "ଆଇନୀ ଆକ୍‌ବରୀ"ରେ ) ଏବଂ ହଣ୍ଟର ସାହେବ ଓ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ପ୍ରଭୃତି ପ୍ରଧାନ । *

---

✤ "ଉତ୍କଳ ଇତିହାସ" ୧୭୨-୧୭୫ ପୃଷ୍ଠା

* ଭାରତ ସରକାରଙ୍କ ପ୍ରଧାନ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ Sir John Marshall, Director General of Archaeology ଲେଖିଅଛନ୍ତି:—

( ୧୦ ) **ଖ୍ରୀଷ୍ଟ ୧୫୬୮—୧୭୫୧ ଅବ୍ଦ**—୧୫୬୮ ଖ୍ରୀଷ୍ଟାବ୍ଦରେ **ଓଡ଼ିଶାର** ସ୍ୱାଧୀନ ରାଜା ମୁକୁନ୍ଦ ଦେବ କଳାପାହାଡ଼ ଦ୍ୱାରା ନିହତ ହେଲେ । ସଙ୍ଗେ ସଙ୍ଗେ ଓଡ଼ିଶାର ସ୍ୱାଧୀନତା ଲୋପ ହେଲା । ସେଇ ବର୍ଷ 'ମୋଗଲ୍'ମାନେ ଓଡ଼ିଶା ଅଧିକାର କଲେ । କଥାରେ ଅଛି "ଯଥା ରାଜା ତଥା ପ୍ରଜା—" ରାଜ୍ୟର ରାଜା ଭଲ ଥିଲେ ପ୍ରଜା ସୁଖରେ ରହିବେ ଓ ସଙ୍ଗେ ସଙ୍ଗେ ଦେଶର ଶିଳ୍ପ ସାହିତ୍ୟ ଏବଂ ବ୍ୟବସାୟ ବାଣିଜ୍ୟର ଉନ୍ନତି ହେବ । ମୋଗଲ୍ ରାଜତ୍ୱରେ ଓଡ଼ିଶାରେ ଜଣେ ଦୁଇ ଜଣଙ୍କୁ ବାଦ୍ ଦେଲେ, କୌଣସି ରାଜକର୍ମଗୁରୀ "ସୁଶାସକ" ହୋଇ ନ ଥିଲେ । ଶାସକମାନଙ୍କର ଦୁର୍ବଳତା ଦେଖି ତାଙ୍କ ଅନୁଚରମାନେ ଦେଶରେ ଲୁଣ୍ଠନ ଓ ପ୍ରଜାପୀଡ଼ନ ପ୍ରଭୃତି ଗର୍ହିତ କାର୍ଯ୍ୟମାନ କରୁଥିଲେ । ଫଳରେ କେଶରୀ ଓ ଗଙ୍ଗବଂଶ ରାଜାମାନଙ୍କ ପରି ମୋଗଲ୍ ରାଜତ୍ୱରେ ଶିଳ୍ପ ବାଣିଜ୍ୟର ବିଶେଷ ଉନ୍ନତି ହୋଇ ନ ଥିଲା । ତଥାପି ଲୁଗା, ପାଟ, ଟସର, ସୁନା ରୁପାର କାମ, ହୀରା, ପଥର, ପିତଳ, କଂସା ଓ ଲୁହାର କାମ, ଶିଙ୍ଘ ଓ ହାତୀଦାନ୍ତ କାମ ଏବଂ ମସିଣା ପ୍ରଭୃତି ମୋଗଲ୍ ଓଡ଼ିଶାର ପ୍ରଧାନ ଶିଳ୍ପ ମଧ୍ୟରେ ଗଣ୍ୟ ଥିଲା । ଏଇ ସବୁ ବାଣିଜ୍ୟ ଉପରେ ବହୁତ ଶୁଳ୍କ ଧାର୍ଯ୍ୟ ହେଉଥିଲା । * ତଥାପି ବଣିଜ ପଦାର୍ଥର ଆଦର ଓ ବିଦେଶକୁ ରପ୍ତାନୀ ଏତେ ହେଉଥିଲା ଯେ ବାଣିଜ୍ୟ ଲାଭଜନକ ବ୍ୟବସାୟ ଥିଲା । ଓଡ଼ିଶା ବାଣିଜ୍ୟର ଲାଭ ଦୃଷ୍ଟିରେ ଇଂରେଜ, ଫରାସି, ପର୍ତ୍ତୁଗିଜ, ଡଚ, ଦିନାମାର ପ୍ରଭୃତି ୟୁରୋପୀୟ ବଣିକମାନେ ଓଡ଼ିଶାରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ । *

---

"There is no monument of Hinduism, I think, that is at once so stupendous and so perfectly proportioned as the Black Pagoda (Konarak), and none which leaves so deep an impression on the memory."

[ Vide "Archaeological Survey Report of India" of 1902—3 1903—4 ]

* "ଏପରି କଥିତ ଅଛି, ମୁସଲମାନମାନେ (ମୋଗଲ) କେତେ କେତେବେଳେ ଆଠଅଣା ମୂଲ୍ୟର ଦ୍ରବ୍ୟ ଉପରେ ଦଶଟଙ୍କା ଗୁରିଅଣା ହିସାବରେ କର ଧାର୍ଯ୍ୟ କରିଥିଲେ ।" ( ଓଡ଼ିଶାର ଇତିହାସ, ୧୨୧ ପୃଷ୍ଠା )

* "ଉତ୍କଳ ଇତିହାସ" – ୨୭୦-୭୧ ପୃଷ୍ଠା

ଉପର୍ଯ୍ୟୁକ୍ତ ସମସ୍ତ ପ୍ରକାର ସାଧାରଣ ଶିଳ୍ପଜାତ ଦ୍ରବ୍ୟ ବ୍ୟତୀତ ଏହି ସମୟରେ ଓଡ଼ିଶାର ଉପକୂଳରେ ଆଉ ଦୁଇଟି ନୂତନ ବ୍ୟବସାୟ ଚଳୁଥିଲା । ପ୍ରଥମ—ଲୁଣମରା, ଦ୍ୱିତୀୟ – ମାଛ ଓ ଶୁଖୁଆ । ଚିଲିକା ଓ ସମୁଦ୍ର ଉପକୂଳରେ ଭାରତର ଉତ୍କୃଷ୍ଟ ଲୁଣ ମିଳୁଥିଲା । ଏହି ଲୁଣ ଓ ମାଛ ମାରିବାପାଇଁ ପୂର୍ବେ କିଛି ଶୁଳ୍କ ଦିଆଯାଉ ନ ଥିଲା; କିନ୍ତୁ ମୋଗଲ ରାଜତ୍ୱରେ ସାମାନ୍ୟ କର ଧାର୍ଯ୍ୟ ହୋଇଥିଲା । ତଥାପି ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଲୁଣ, ମାଛ ଓ ଶୁଖୁଆ ଆଦାୟ କରି ପ୍ରାଚୀନ ଓଡ଼ିଶାବାସୀ ଦେଶ ବିଦେଶକୁ ପଠାଇ ଧନୋପାର୍ଜନ କରୁଥିଲେ ।

ମୋଗଲ ରାଜତ୍ୱରେ ବିଭିନ୍ନ ପ୍ରକାର ଶିଳ୍ପଜାତ ଦ୍ରବ୍ୟ ଉପରେ ସାମାନ୍ୟ ଟିକସ ଆଦାୟ କରିବା ସଙ୍ଗେ ସଙ୍ଗେ ଶାସକମାନେ ଲୁଣ୍ଠନ ଓ ଅତ୍ୟାଚାରୀମାନଙ୍କୁ ପ୍ରଶ୍ରୟ ଦେଇ ଦେଶର ବାଣିଜ୍ୟରେ ବିଶେଷ ବାଧା ଦିଆଉଥିଲେ । ଏଥି ସଙ୍ଗେ ସଙ୍ଗେ ଓଡ଼ିଆ ସାଧବମାନଙ୍କର ନୌବାଣିଜ୍ୟରେ ବିଶେଷ ବାଧା ଦେଖା ଯାଇଥିଲା । ଓଡ଼ିଶାର ସୂକ୍ଷ୍ମ ଲୁଗା, ଲୁଣ, ମାଛ, ଶୁଖୁଆ ଓ ଅନ୍ୟାନ୍ୟ ଶିଳ୍ପଜାତ ଦ୍ରବ୍ୟମାନଙ୍କୁ କିଣିନେବା ପାଇଁ ୟୁରୋପର ପ୍ରାୟ ୫।୭ଟି ଦେଶର ବଣିକମାନେ ଓଡ଼ିଶାକୁ ଆସି ଓଡ଼ିଶା ଉପକୂଳରେ ବାଣିଜ୍ୟ କୋଠିମାନ ସ୍ଥାପନ କଲେ । ସେମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱ କରି ସାମୁଦ୍ରିକ ବାଣିଜ୍ୟ ଚଳାଇବା ତତ୍କାଳୀନ ଓଡ଼ିଶା ସାଧବମାନଙ୍କର ଶକ୍ତି ନ ଥିଲା । ପୁଣି ଏହି ସମୟରେ ଅନେକ ଜଳଦସ୍ୟୁ ( Sea Pirates ) ବଣିକମାନଙ୍କର ବୋଇତଗୁଡ଼ିକୁ ଆକ୍ରମଣ କରି ସେଥିରେ ଥିବା ଜିନଷଗୁଡ଼ିକୁ ଲୁଣ୍ଠନ କରୁଥିଲେ । ଏହି କାରଣରୁ ମୋଗଲ ରାଜତ୍ୱଠାରୁ ପ୍ରାଚୀନ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟ କ୍ରମଶଃ ବନ୍ଦ ହୋଇଥିଲା ।

**(୧୧) ଖ୍ରୀଷ୍ଟ ୧୭୫୧—୧୮୦୩ ଅବ୍ଦ**—ମୋଗଲମାନଙ୍କ ପରେ ଓଡ଼ିଶା ମରହଟ୍ଟାମାନଙ୍କର ଅଧିକାରଭୁକ୍ତ ହେଲା । ମରହଟ୍ଟାମାନେ ଜାତିରେ ହିନ୍ଦୁ ଓ ଧର୍ମ-ପରାୟଣ ଥିଲେ ସତ; କିନ୍ତୁ ସେମାନଙ୍କ ସମୟରେ ଦେଶରେ ନ୍ୟାୟ ବିଗ୍ରହ, ଦୁର୍ବଳକୁ ରକ୍ଷା କରିବା ଓ ବ୍ୟବସାୟ ବାଣିଜ୍ୟର ଉନ୍ନତି କରିବା ପ୍ରଭୃତି କାର୍ଯ୍ୟ ପ୍ରତି ଆଦୌ ଦୃଷ୍ଟି ଦିଆ ଯାଇ ନ ଥିଲା । ପୁଣି ଏହି ଶାସନରେ ନିମ୍ନ କର୍ମଚାରୀମାନେ ( ଯାହାଙ୍କୁ "ମରାଠି" ବା "ବର୍ଗୀ" କୁହା ଯାଉଥିଲା ) ଗ୍ରାମେ ଗ୍ରାମେ ବୁଲି ଦେଶବାସୀଙ୍କର ସର୍ବସ୍ୱ ଲୁଣ୍ଠନ କରିବାକୁ ଛାଡ଼ୁ ନ ଥିଲେ । ଏହି କେତେକ କାରଣରୁ ମରହଟ୍ଟାମାନଙ୍କ ସମୟରେ ଓଡ଼ିଶାର ଶିଳ୍ପ ସ୍ଥାପତ୍ୟ ଏକାବେଳେ ଲୋପ ହେବା ସଙ୍ଗେ ସଙ୍ଗେ ସାମୁଦ୍ରିକ ବାଣିଜ୍ୟ ମଧ୍ୟ ବନ୍ଦ ହୋଇଥିଲା ।

(୧୨) **ଖ୍ରୀଷ୍ଟ ୧୮୦୩ ଅବ୍ଦଠାରୁ ଆଜସୁଦ୍ଧା**।—ଅର୍ଥାତ୍ ଇଂରାଜମାନେ ଓଡ଼ିଶାକୁ ଅଧିକାର କରିବା ଦିନଠାରୁ ଆଜସୁଦ୍ଧା ଓଡ଼ିଶାର ଶିଳ୍ପ, କୃଷି ଓ ବାଣିଜ୍ୟ ପ୍ରଭୃତିରେ କି କି ପରିବର୍ତ୍ତନ ଘଟିଛି ତା ପ୍ରତ୍ୟେକ ଭୁକ୍ତଭୋଗୀ ଜାଣନ୍ତି । ସେ ବିଷୟରେ ବିସ୍ତୃତଭାବେ ଲେଖିବା ଅନାବଶ୍ୟକ । ଏହି ସମୟର "ବାଣିଜ୍ୟ ବ୍ୟବସାୟ" ସମ୍ବନ୍ଧରେ ଓଡ଼ିଶା ଇତିହାସ-ଲେଖକ ଲେଖିଛନ୍ତି—

"ଇଂରେଜ ଶାସନ ବେଳକୁ ଓଡ଼ିଶା ବନ୍ଦରମାନ ପ୍ରାୟ ବନ୍ଦ ହୋଇଥିଲା ଏବଂ ବାଣିଜ୍ୟ କ୍ରମେ ଲୋପ ପାଇଲା । ବର୍ତ୍ତମାନ ଅବଶ୍ୟ ଓଡ଼ିଶା ବନ୍ଦରମାନଙ୍କରେ ଆମଦାନି ଓ ରପ୍ତାନୀ ବଢ଼ୁଛି; ମାତ୍ର **ତାହାସବୁ ବିଦେଶୀଙ୍କ ମୂଳଧନ ଏବଂ ଜଳ ଓ ସ୍ଥଳ-ଯାନରେ ପରିଚାଳିତ । ଓଡ଼ିଶାବାସୀ ତହିଁରୁ ଲାଭ ପ୍ରାୟ ପାଆନ୍ତି ନାହିଁ।**" × × "ଓଡ଼ିଶା ବସ୍ତ୍ର ଲୋଭରେ ଇଂରେଜ ବଣିକମାନେ ଓଡ଼ିଶାରେ ବାଣିଜ୍ୟ ଆରମ୍ଭ କରିଥିଲେ; ମାତ୍ର କ୍ରମେ ବିଦେଶୀ କଳ ବସ୍ତ୍ର ପ୍ରତିଯୋଗିତାରେ ଓଡ଼ିଶାର ବସ୍ତ୍ର ବ୍ୟବସାୟ ଲୋପ ପାଇଲା । ତେବେ ପ୍ରାଚୀନ ସ୍ମୃତି ଓଡ଼ିଶାର ବସ୍ତ୍ର ବ୍ୟବସାୟ କେନ୍ଦ୍ର-ମାନଙ୍କରେ ଅଦ୍ୟାପି ଜୀବିତ ଅଛି ।"*

"ଇଂରାଜ ରାଜତ୍ୱରେ ଭାରତର ଉନ୍ନତି" (Progress of India under British Government)—ଏହି ଶିରୋନାମା ତଳେ ଆମେରିକାର ପ୍ରସିଦ୍ଧ ଐତିହାସିକଗଣ ଲେଖିଛନ୍ତି "Under British rule, the inhabitants of India made considerable progress in European civilization." ପରେ ଭାରତରେ ରେଳ, ଡାକ, ସ୍କୁଲ କଲେଜ, କୋର୍ଟ କଚେରୀ ପ୍ରଭୃତି କିପରି ସ୍ଥାପିତ ହେଲା ଓ ତଦ୍ଦ୍ୱାରା ଦେଶବାସୀ କି କି ସୁବିଧା ପାଇଲେ, ସେ କଥାସବୁ ବର୍ଣ୍ଣନା କରି ପରିଶେଷରେ ସେମାନେ ଲେଖିଛନ୍ତି :—

"Of course, Great Britain's primary reason for ruling **India was to promote British business, not Indian education.** ‡ ( italics mine ).

---

* "ଉତ୍କଳ ଇତିହାସ"—୩୩୩-୩୩୪ ପୃଷ୍ଠା

‡ "Modern History" by Hayes & Moon (America) P. 670.

ଏପରି ଅବସ୍ଥାରେ ଭାରତ ତଥା ଓଡ଼ିଶାରେ ଇଂରାଜୀ ରାଜତ୍ୱ ସମୟରେ ଶିଳ୍ପ-କଳାର କୌଣସି ବିଶେଷ ଉନ୍ନତି ହୋଇଅଛି ବୋଲି କିଏ ବିଶ୍ୱାସ କରିବ ? ଅବଶ୍ୟ ଆମ ବଜାରରେ ଆଜିକାଲି ସହସ୍ରାଧିକ ପଣ୍ୟ ଦୋକାନ ଖୋଲିଛି; କିନ୍ତୁ ଯେ କୌଣସି ଦୋକାନ ଦେଖିଲେ ସ୍ପଷ୍ଟ ଜଣାପିବ ଯେ, ଏହି ଦୋକାନଗୁଡ଼ିକରେ ଥିବା ଲୁଗା, ବସନ, ବସ୍ତ୍ର,ପେଣ୍ଡ,ସୁନା ରୁପାର ଅଳଙ୍କାର,ଏପରିକି ଯୋତା,ଛତା, କଲମ, ଦୁଆତ ପ୍ରଭୃତି କେବଳ ୟୁରୋପ, ଆମେରିକା, ଜାପାନ କିମ୍ବା ଚୀନ ଦେଶରେ ପ୍ରସ୍ତୁତ ହୋଇଅଛି ! ଆମ ଦେଶର ସହରୀ ବାବୁମାନେ ମଧ୍ୟ ଏହି ସୁନ୍ଦର ଓ ସୌଖିନ ବିଦେଶୀ ଜିନିଷଗୁଡ଼ିକୁ ଅତି ଶସ୍ତା ଓ ସୁବିଧାରେ ପାଆନ୍ତି । ସେମାନଙ୍କର ଏ "ବିଦେଶୀ ଆଦର" ଯୋଗୁଁ ଆମ ଦେଶର 'କୁଟୀର ଶିଳ୍ପ'ଜାତ ସବୁ ପ୍ରକାର ଜିନିଷ ଆଜି ଦେଖିବାକୁ ସ୍ୱପ୍ନପରି ଲାଗୁଛି ଏବଂ ଆମ ଦେଶର ପାଠକକୁଳ ଆଜି ଦେଶ ବିଦେଶ ଯାଇ କୁଲି କାମ କରନ୍ତି !



## ଉତ୍କଳରେ କୁଟୀର ଶିଳ୍ପର ଆବଶ୍ୟକତା

"Cottage industries are necessary, not ouly as a balancing factor to agriculture, but also to ensure against the uncertainties of agriculture. It is a skittish occupation and always requives to be balanced if the cultirator is to lead a certain life."

*Wolffe—*

"Without cottage industry the Indian peasant is doomed. He cannot maintain himself from the produce of the land. He needs supplemuetary industry."

*Gandhi—*

୧ । ଉତ୍କଳ ଗୋଟିଏ କୃଷିପ୍ରଧାନ ପ୍ରଦେଶ ବୋଲି ପୂର୍ବେ କୁହାଯାଇଛି । "ଧାନ" ଏଠା କୃଷକମାନଙ୍କର ଗୋଟିଏ ପ୍ରଧାନ ବାର୍ଷିକ ଫସଲ । ଧାନ ବ୍ୟତୀତ ଆଜିକାଲି ଆମ ଦେଶର କୃଷକମାନେ ଆଖୁ, ମୁଗ, ବିରି ଓ ମାଣ୍ଡିଆ ପ୍ରଭୃତି ରବି ଫସଲ ମଧ୍ୟ କରନ୍ତି; କିନ୍ତୁ ସେମାନଙ୍କର ସଂଖ୍ୟା ଅତି କମ୍ ଦେଖାଯାଏ । ଅଧିକାଂଶ କୃଷକ କେବଳ

ଧାନକୁ ଗଣିଧନ କରି ସନ୍ତୁଷ୍ଟ ରହନ୍ତି । ଯଦି ସମୟରେ ଅତି ବା ଅଳ୍ପବୃଷ୍ଟି ହେଲେ ଧାନ ଫସଲ ନଷ୍ଟ ହୁଏ, ତେବେ ଉତ୍କଳର କୃଷକମାନେ ମୁଣ୍ଡରେ ହାତ ଦେଇ ବସନ୍ତି । ସେମାନଙ୍କୁ ଜଗତ ଅନ୍ଧାର ଦିଶେ । ଧାନ ଫସଲ ନଷ୍ଟ ହେଲେ ସେମାନେ ବର୍ଷକାଳ ଯେ କେବଳ ଉପାସେ ଦିନ କାଟନ୍ତି ସେତିକି ନୁହେଁ, ତା ସାଙ୍ଗକୁ "ସାହୁକାର"ର ଋଣ, "ଜମିଦାର"ର ଖଜଣା, ପିଲାଛୁଆଙ୍କର ଦେହ ପା ହେଲେ ଔଷଧପୌଷଧ, ନିଜର ଲୁଗାପଟା, ପାନମସଲା ପ୍ରଭୃତି ଓ ପିଲାଙ୍କ ପାଠଶାଠ ଏବଂ ସର୍ବୋପରି ଗାଁଭେଦା, ବିବାହ ବ୍ରତ ଓ ଅନ୍ୟାନ୍ୟ ଅନେକ ପ୍ରକାର ପର୍ବପର୍ବାଣି ପାଇଁ ଯଥେଷ୍ଟ ଅର୍ଥ ଖର୍ଚ୍ଚ କରିବାକୁ ହୁଏ । ଏହା ବାଦ ଆରବର୍ଷର ବିହନ-ପାତି, ଗୃହବେଢ଼ସା ଖର୍ଚ୍ଚ, ହଳ ମୂଲିଅଙ୍କ ଖର୍ଚ୍ଚ ପ୍ରଭୃତି ମଧ୍ୟ ଯୋଗାଇବାକୁ ହୁଏ । ଯେଉଁ ଲୋକ ତା ନିଜ ନିବୁଦ୍ଧିତା ଦୋଷରୁ କିମ୍ବା ପ୍ରାକୃତିକ ଦୁର୍ଘଟଣା ଯୋଗୁ ଗୋଟିଏ ବର୍ଷର ଧାନ ଫସଲ ନଷ୍ଟ କରେ, ସେ ଯେ ଆର ବର୍ଷକୁ କେବଳ କାଙ୍ଗାଳ ହୁଏ, ଏହାର ଜୀବନ୍ତ ଉଦାହରଣ ଓଡ଼ିଶାର ଯେ କୌଣସି ପଲ୍ଲୀରେ ଦେଖିବାକୁ ପାଇଁ । ଆମ ଦେଶ ଚାଷୀଙ୍କର ଏଇ ଦୁର୍ଦ୍ଦଶା କେବଳ "ଏଠାର ଏକଫସଲିଆ" ଧାନ ଫସଲ ଯୋଗୁଁ ଯେ ଘଟୁଛି, କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତ ତଥା ପୃଥିବୀର ଅନ୍ୟାନ୍ୟ ଦେଶପରି ଏଠାରେ ମଧ୍ୟ ଏକାଧିକ ଫସଲ ହେଉଥିଲେ ଆମ ଦେଶ କୃଷକଙ୍କ ଅବସ୍ଥା ଏତେ ଶୋଚନୀୟ ହୁଅନ୍ତା ନାହିଁ— ଏହା ନିଃସନ୍ଦେହ ।

ଜମି ଚାଷ କରି ମଞ୍ଜି ବୁଣିବା ଠାରୁ ଧାନ ଫସଲ ଅଦାୟ କରିବା ପାଇଁ ଆମ ଦେଶ ଚାଷୀମାନେ ବର୍ଷର ୬ । ୭ ମାସ ମାତ୍ର କାର୍ଯ୍ୟ କରନ୍ତି । ଅନ୍ୟ ୫ । ୬ ମାସ ସେମାନଙ୍କର ଆଦୌ କୌଣସି କାର୍ଯ୍ୟ ନ ଥାଏ । ସେ ସମୟରେ ସେମାନେ ସମ୍ପୂର୍ଣ୍ଣ ଅକର୍ମା (unemployed) ହୋଇ ବସିରହନ୍ତି । ଏପରି ବସିରହିବା ସମୟରେ ଆମ ଦେଶର କୃଷକମାନେ ଯେ କୌଣସି "କୁଟୀର ଶିଳ୍ପ" କରି ତଦ୍ଦ୍ୱାରା ମାସିକ ୮ । ୧୦ ଠାରୁ ୨୦ । ୨୫ ଟଙ୍କା ଯାଏ ରୋଜଗାର କରିପାରନ୍ତେ । ଏଇ କାରଣରୁ ଏ ଦେଶରେ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ସ୍ଥାପନ କରିବା ନିତାନ୍ତ ଦରକାର ।

୨ । ପୂର୍ବେ କୁହାଯାଇଛି ଯେ ଓଡ଼ିଶା ଗୋଟିଏ ବନ୍ୟା-ପ୍ରପୀଡ଼ିତ ପ୍ରଦେଶ । ଅତି ପ୍ରାଚୀନ କାଳରୁ ଓଡ଼ିଶାରେ ବନ୍ୟା ହେଉଥିବାର ସ୍ପଷ୍ଟ ଜଣାଯାଏ । 'ରାଜନୈତିକ ଓଡ଼ିଶା' ବା ମୋଗଲବନ୍ଦିର ତିନୋଟି ଜିଲ୍ଲାରେ (ପୁରୀ, କଟକ ଓ ବାଲେଶ୍ୱର) ଓଡ଼ିଶାର ସବୁ ନଦୀ ମୁହାଣଗୁଡ଼ିକ ଅଛି । ଆଜିକାଲି ଏଇ ନଦୀମୁହାଣ ଓ ନଦୀଗର୍ଭଗୁଡ଼ିକ ପୋତି ହୋଇ ପଡ଼ିଛି । ପୁଣି ବର୍ଷା ଦିନରେ ଏଇ ନଦୀଗୁଡ଼ିକରେ

ପ୍ରବଳ ସ୍ରୋତସହ ପାଣି ବହିଯାଏ । କୂଳର ବନ୍ଧଗୁଡ଼ିକ ତେତେ ସୁଦୃଢ଼ ନ ଥିବାରୁ ଏବଂ ମୁହାଣ ଦେଇ ପ୍ରଚୁର ପାଣି ଯାଇ ନ ଥିବାରୁ ନଦୀର ଉଦ୍‌ବୃତ୍ତ ପାଣି ବନ୍ଧ ଦେଇ କୂଳସ୍ଥ କୃଷି ଜମିରେ ମାଡ଼େ । ଫଳରେ ବନ୍ୟା ହୁଏ । ଏହି ବନ୍ୟାର ବିଶେଷ ପ୍ରତିକାର କରିବା ପାଇଁ ସରକାର ୧୯୨୭ ଖ୍ରୀଷ୍ଟାବ୍ଦରେ ଯେଉଁ ବନ୍ୟା ବିଶାରଦ କମିଟି (Expert Committee on Floods ) ବସାଇଥିଲେ, ସେହି କମିଟି ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରିଥିଲେ ଓ ଓଡ଼ିଶାର ପ୍ରତ୍ୟେକ ବନ୍ୟା ଅଞ୍ଚଳ ବୁଲି ଦେଖିଥିଲେ । କିନ୍ତୁ "ବନ୍ୟା" ଗୋଟିଏ ପ୍ରାକୃତିକ ଘଟଣା ଥିବାରୁ ତାର ଗତିରୋଧ କରିବା କୌଣସିମତେ ସହଜ ନୁହେଁ ବୋଲି ଏହି କମିଟି ମତ ଦେଇଥିଲେ । *

ଏପରି ସ୍ଥଳେ ଓଡ଼ିଶାରେ ବନ୍ୟା ଯେ କାଳ କାଳକୁ ଥିବ, ସନ୍ଦେହ ନାହିଁ । ଏହି ବନ୍ୟା ଯୋଗୁ ଓଡ଼ିଶାର ଫସଲ ବାରମ୍ବାର ନଷ୍ଟ ହେଉଥିବ ଓ ଓଡ଼ିଶା ପ୍ରଜା ବାରମ୍ବାର ଦୁର୍ଭିକ୍ଷଗ୍ରସ୍ତ ହେଉଥିବେ । ଏହି କାରଣରୁ ଓଡ଼ିଶାର କୃଷକମାନେ କେବଳ କୃଷି ଉପରେ ବିଶେଷ ନିର୍ଭର ନ ରଖି କୃଷି ସଙ୍ଗେ ସଙ୍ଗେ 'କୁଟୀର ଶିଳ୍ପ' ଦ୍ୱାରା ଧନୋପାର୍ଜନ କରିବା-ପାଇଁ ବିଶେଷ ଚେଷ୍ଟା କରିବା ଉଚିତ । ତା ନ ହେଲେ ଏ ଦେଶର ଏହି ଦୀନ ଅବସ୍ଥା ଆଦୌ ଦୂର ହେବା ସମ୍ଭବପର ନୁହେଁ ।

୩ । କୃଷକ ପରିକୁ ଆମ ଦେଶର ଶିକ୍ଷିତ ଓ ଅଶିକ୍ଷିତ ଅକର୍ମୀମାନେ ଅଛନ୍ତି । ଆଜିକାଲି ପୃଥିବୀର ସବୁ ଆଡ଼େ ଆର୍ଥିକ ଦୁଃସ୍ଥିତି ଦେଖା ଯାଉଛି । ଏହି ଦୁଃସ୍ଥିତି ଯୋଗୁ କୌଣସି ସରକାର ନୂତନ ନୂତନ କାର୍ଯ୍ୟମାନ ଖୋଲି ତହିଁରେ ଦେଶର ଏହି ଅକର୍ମୀମାନଙ୍କୁ ନିଯୁକ୍ତ କରାଇ ପାରୁ ନାହାନ୍ତି । ଏହି ଅବସ୍ଥା ଯେ ଆଉରି କେତେ ବର୍ଷ ଯାଏ ରହିବ, କହିବା ସହଜ ନୁହେ । କାଳେ ଆର୍ଥିକ ଦୁଃସ୍ଥିତି ଭଲ ହେଲେ ସରକାର କୌଣସି କାର୍ଯ୍ୟ ଖୋଲି ଚାକିରି ଖଣ୍ଡିଏ ଦେଇପାରନ୍ତି, ଏପରି ଭାବି ଭାବି ସମୟ ନଷ୍ଟ କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ସରକାରୀ ଚାକିରୀ ଖଣ୍ଡିଏ ପାଇଲେ ସୁଦ୍ଧା

* It is pointed out that Orissa is a deltaic country. But floods are nature's method of building new land by the deposit of silt, and that it is useless to attempt to thwart this process.

Extracts form the findings of the "Expert Committee on Floods" 1927.

ତାଙ୍କର ଅବାସ୍ତୁ ହେବା ଧନ ନିଜର ଖର୍ଚ୍ଚକୁ ନିଅଣ୍ଟ ହେବ । ପୁଣି ଏ ଦୁଃସ୍ଥିତି ଦେଖି ସରକାର ଯେପରି ବ୍ୟୟସଂକୋଚ ( Retrenchment ) କରନ୍ତି, ଏପରି ଅବସ୍ଥାରେ କୌଣସି ସରକାରୀ ଚାକିରୀ କରି ନିଜର ସମସ୍ତ ଅଭାବ ଦୂର କରିବାପାଇଁ ଆଶା କରିବା ସମ୍ପୂର୍ଣ୍ଣ ଅସମ୍ଭବ । ନିକଟ ଭବିଷ୍ୟତରେ ସେପରି ଖଣ୍ଡିଏ ଚାକିରୀ ପାଇବାପାଇଁ ଯେଉଁମାନେ ଆଶା କରି ରହନ୍ତି, ଯଦି କୌଣସି ଅସୁବିଧାବଶତଃ ସେଇ ଚାକିରୀ ଖଣ୍ଡିକ ନ ମିଳେ, ତେବେ ସମସ୍ତ ନଷ୍ଟ ହେବା ସଙ୍ଗେ ସଙ୍ଗେ ହତାଶ ହେବାକୁ ମଧ୍ୟ ହେବ । ଏପରି କି କେତେ ଜଣ ଉଚ୍ଚ ଶିକ୍ଷିତ ଯୁବକ ଏଇ ଚାକିରୀ ମୋହରେ ପଡ଼ି ହତାଶ ହୋଇ ଆତ୍ମହତ୍ୟା କରିଥିବାର ଆମ୍ଭେମାନେ ଜାଣୁ ।

ଏପରି ଏକାଧିକ ଅବସ୍ଥାକୁ ଦେଖିଲେ ଆଜିକାଲି ଦେଶର ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ଗାରମାନ ସ୍ଥାପନ କରି ତହିଁରେ ଦେଶର ସମସ୍ତ ଅକର୍ମୀଙ୍କୁ କାର୍ଯ୍ୟ ଯୋଗାଇବା ପ୍ରତ୍ୟେକ ଦେଶହିତୈଷୀଙ୍କର ପ୍ରଧାନ କର୍ତ୍ତବ୍ୟ ମନେ କରୁ । ତଦ୍ଦ୍ୱାରା ଆର୍ଥିକ ଚିନ୍ତା ଦୂର ହେବା ସଙ୍ଗେ ସଙ୍ଗେ ଦେଶର ଅକର୍ମାଙ୍କ ସଂଖ୍ୟା କମ୍ ହେବ; ପୁଣି ଦେଶରେ ପ୍ରଚୁର ପରିମାଣ ଦେଶୀ ବା "ସ୍ୱଦେଶୀ" ଜିନିଷର ବ୍ୟବହାର ବଢ଼ିବ । ଆଜି-କାଲି ଭାରତର ଅନ୍ୟାନ୍ୟ ପ୍ରଦେଶରେ ସ୍ୱଦେଶୀ ଜିନିଷର ଆଦର ଯେପରି ଦିନୁଦିନ ବଢ଼ୁଛି, ଏଇ ଅବସ୍ଥାରେ ଆମର କୁଟୀର ଶିଳ୍ପାଗାରରେ ପ୍ରସ୍ତୁତ ଜିନିଷଗୁଡ଼ିକର ମଧ୍ୟ ଆଦର ବେଶ୍ ବଢ଼ିବ, ସନ୍ଦେହ ନାହିଁ ।

୪ । ବର୍ତ୍ତମାନ ଦେଶର ଲୋକସଂଖ୍ୟା ଅତି ଦ୍ରୁତ ଗତିରେ ବଢ଼ୁଅଛି । ଏପରି କି, କୌଣସି କୌଣସି ଠାରେ ଶତକରା ୧୦ ହିସାବରେ ଏଇ ସଂଖ୍ୟା ବଢ଼ୁଥିବାର ସରକାରୀ ରିପୋର୍ଟରୁ ଜଣାପାଏ । ଆମ ଓଡ଼ିଶାରେ ମଧ୍ୟ ଏଇ ସଂଖ୍ୟାବୃଦ୍ଧିର କୌଣସି ଅଭାବ ନାହିଁ । ଗତ ୧୯୨୧ ଖ୍ରୀଷ୍ଟାବ୍ଦ ଜନଗଣନାରୁ ଦେଖାଯାଇଥିଲା ଯେ, କେବଳ ରାଜନୈତିକ ଓଡ଼ିଶାର ଲୋକସଂଖ୍ୟା ଥିଲା ୪୯୬୮୮୭୩; ମାତ୍ର ୧୯୩୧ ଖ୍ରୀଷ୍ଟାବ୍ଦର ଗଣନା ବେଳକୁ ଏଇ ସଂଖ୍ୟା ହୋଇଥିଲା ୫୩୦୬୧୪୨ ଅର୍ଥାତ୍ ଦଶବର୍ଷ ମଧ୍ୟରେ ଓଡ଼ିଶାରେ ୩୩୭୨୬୯ ଜଣ ଅଧିକ ଜାତ ହୋଇଥିଲେ । ଯେଉଁ ପ୍ରଦେଶରେ ବନ୍ୟା, ମଡ଼କ ଓ ଦୁର୍ଭିକ୍ଷ ଘର କରି ରହିଛି, ସେଠାରେ ଯଦି ବର୍ଷକୁ ବର୍ଷ ଲୋକସଂଖ୍ୟା ବୃଦ୍ଧି ହୁଏ, ତେବେ ସେଇ ଅଧିକା ଲୋକଙ୍କ ପାଇଁ ପ୍ରଚୁର ଖାଦ୍ୟପେୟ ନ ଥିଲେ କେବଳ ଖାଦ୍ୟପେୟ ସଂଗ୍ରହପାଇଁ ସେଠାର ବିପନ୍ନ ଲୋକମାନେ ଦେଶ ବିଦେଶକୁ ଯାଇ କୁଲି କାମ ଖଟିବା ଅସ୍ୱାଭାବିକ ନୁହେଁ । ଓଡ଼ିଶାରେ

ତାହାହିଁ ଘଟୁଛି । ପ୍ରତିବର୍ଷ ଲକ୍ଷ ଲକ୍ଷ ଲୋକ କଲିକତା, ଆସାମ୍ ଓ ରେଙ୍ଗୁନ ପ୍ରଭୃତି ଦେଶକୁ ଯାଇ ସେଠାରେ ଜୀବିକାର୍ଜନ କରୁଅଛନ୍ତି । ତଦ୍ଦ୍ୱାରା ଏ ଦେଶର ଲୋକସଂଖ୍ୟା ଦିନକୁଦିନ କମ୍ ହେଉଛି । ଏଇ ଅଧିକା ଲୋକମାନଙ୍କ ପାଇଁ ଯଥେଷ୍ଟ ପରିମାଣ ଜମିବାଡ଼ି ନାହିଁ । ଜମିବାଡ଼ି ଅଭାବରେ ଏଠାରେ ଅଧିକସଂଖ୍ୟକ କୁଟୀର ଶିଳ୍ପାଗାରମାନ ସ୍ଥାପନ କଲେ ଯେଉଁମାନେ କାର୍ଯ୍ୟ ଅଭାବରେ ବିଦେଶ ଯିବାକୁ ବସିଛନ୍ତି, ସେମାନେ ଏଇ କାର୍ଯ୍ୟ କରି ନିଜର ଜୀବିକାର୍ଜନ କରିପାରିବେ । ଏଥିଦ୍ୱାରା ସେମାନଙ୍କୁ କାର୍ଯ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଦେଶରେ କେତୋଟି ମହତ୍ ଅନୁଷ୍ଠାନ ସ୍ଥାପନ କରାଯାଇ ପାରିବ ।

( ୫ ) ଶିକ୍ଷିତ ଓ କାର୍ଯ୍ୟକ୍ଷମ ଲୋକଙ୍କ ଉପରେ ଦେଶର ଉନ୍ନତି ବା ଅବନତି ନିର୍ଭର କରେ । ୟୁରୋପର ଡେନମାର୍କ, ସ୍ୱିଟ୍‌ଜରଲଣ୍ଡ ପ୍ରଭୃତି ଅତି ଛୋଟ ଛୋଟ ରାଜ୍ୟଗୁଡ଼ିକ ଆଜି ପୃଥିବୀବିଖ୍ୟାତ ହୋଇଛି କେବଳ ସେଠା ଅଧିବାସୀଙ୍କୁ ନେଇ । ସେଇ ଦେଶଗୁଡ଼ିକ ଆମ ଓଡ଼ିଶାର ଗୋଟିଏ ଗୋଟିଏ ଜିଲ୍ଲାପରି ହେବ । ସେଠାର ଲୋକସଂଖ୍ୟା ମଧ୍ୟ ସେଇପରି କମ୍ ଅଟେ । ତଥାପି ସେ ଦେଶଗୁଡ଼ିକ ଏତେ ଉନ୍ନତି କରିଛି କିପରି ? କେବଳ ଶିଳ୍ପ ସ୍ଥାପନାର ଯୋଗୁଁ । ସେଠାର ପ୍ରତ୍ୟେକ ଲୋକ ନିଜ ଦେଶର ଭାବୀ ଉନ୍ନତି ଦିଗରେ କାର୍ଯ୍ୟ କରନ୍ତି । ଶିକ୍ଷା ସେମାନଙ୍କୁ କେବେ ବଡ଼ କରି ନାହିଁ । କେବଳ ବିଭିନ୍ନ ପ୍ରକାର ଶିଳ୍ପ ଦ୍ୱାରା ସେମାନେ ପ୍ରଚୁର ଧନୋପାର୍ଜନ କରନ୍ତି ଓ ତଦ୍ଦ୍ୱାରା ଦେଶର ଉନ୍ନତି ହୁଏ । ନିକଟ ଭବିଷ୍ୟତରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଉଥିବା ସମୟରେ ଓଡ଼ିଶାର ଯେଉଁ ଲକ୍ଷ ଲକ୍ଷ ପ୍ରଜା ପ୍ରବାସରେ ରହି କୁଲି କାମ କରନ୍ତି, ସେମାନଙ୍କୁ ଏଠାକୁ ଆଣି ଏ ଦେଶର ଲୋକସଂଖ୍ୟା ବୃଦ୍ଧି କରାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ପେଟପୂରି ଖାଇବାକୁ ଯୋଗାଇବା ନିମନ୍ତେ ଦେଶର ବିଭିନ୍ନ ସ୍ଥାନରେ ନାନା ପ୍ରକାର କୁଟୀର ଶିଳ୍ପ ସ୍ଥାପନ କରିବାକୁ ହେବ । ତା ହେଲେ ଓଡ଼ିଶାର ଧନ ଓ ଜନସଂଖ୍ୟା ଅଚିରେ ବୃଦ୍ଧି ହେବ ଏବଂ ଓଡ଼ିଶା ଭାରତର ଅନ୍ୟାନ୍ୟ ପ୍ରଦେଶର ସମକକ୍ଷ ହେବ ।

ଦେଶର ବିଭିନ୍ନ ସ୍ଥାନରେ କୁଟୀର ଶିଳ୍ପାଗାରମାନ ସ୍ଥାପନ କଲେ କୌଣସି ପ୍ରକାର ରାଜନୈତିକ (Political ) ଗନ୍ଧ ବାରି ସରକାର ବାଧା ଦେବେ ବୋଲି ଆଶା କରିବା ଅନୁଚିତ । କାରଣ ଏ ଦିଗରେ ଭାରତ ସରକାର ଏକାଧିକ ଘୋଷଣା କରି କହୁଛନ୍ତି ଯେ, ଯେତେ ଦିନଯାଏ "କୁଟୀର ଶିଳ୍ପ" ସ୍ଥାପନ କିମ୍ବା ସ୍ୱଦେଶୀ ଦ୍ରବ୍ୟର ବହୁଳ

ସୂତ୍ରର ସଙ୍ଗେ କୌଣସି ପ୍ରକାର ରାଜନୈତିକ ଗନ୍ଧ ମିଶି ନ ଥାଏ, ସେତେ ବେଳେ ଆଉ ସରକାର କୌଣସି ପ୍ରକାର ବାଧା ଦେବେ ନାହିଁ । *

ଅତଏବ

(୧) ଦେଶର କୃଷକମାନଙ୍କ ଆର୍ଥିକ ଦୁଃସ୍ଥିତି ଦୂର କରି ସେମାନଙ୍କର ଅବସର ସମୟର ସଦ୍‌ବ୍ୟବହାର କରିବା ପାଇଁ,

(୨) ଦେଶର ଶିକ୍ଷିତ ଓ ଅଶିକ୍ଷିତ ଅକର୍ମୀମାନଙ୍କୁ କାର୍ଯ୍ୟ ଯୋଗାଇ ସେମାନଙ୍କର ଜୀବିକାର୍ଜନର ସୁବିଧା କରିବା ପାଇଁ,

(୩) ଦେଶର ପ୍ରବାସୀ ଓଡ଼ିଆଙ୍କୁ ଓଡ଼ିଶାକୁ ଆଣି ସେମାନଙ୍କୁ ସୁବିଧାଜନକ କାର୍ଯ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଭାବୀ ପ୍ରଦେଶର ଆର୍ଥିକ ଦୁଃସ୍ଥିତି ଦୂର କରିବା ପାଇଁ,

(୪) ବନ୍ୟା, ମଡ଼କ ଓ ଦୁର୍ଭିକ୍ଷ ସମୟରେ ଦେଶର ଦୀନଦରିଦ୍ରମାନଙ୍କ ଦ୍ୱାରା 'ସ୍ୱଦେଶୀ' ଦ୍ରବ୍ୟଗୁଡ଼ିକ ତିଆରି କରାଇ ସେମାନଙ୍କର "ଅନ୍ନକଷ୍ଟ" ଦୂର କରିବା ନିମନ୍ତେ, ପରିଶେଷରେ

(୫) ଦେଶର କଞ୍ଚାମାଲ୍ ( Raw Products ) ଗୁଡ଼ିକର ସଦ୍‌ବ୍ୟବହାର କରି ଦେଶରେ ପ୍ରଚୁର ପରିମାଣ "ସ୍ୱଦେଶୀ" ଦ୍ରବ୍ୟ ପ୍ରସ୍ତୁତ କରିବା ନିମନ୍ତେ ଓଡ଼ିଶାର ବିଭିନ୍ନ ସ୍ଥାନରେ ନାନାପ୍ରକାର କୁଟୀର ଶିଳ୍ପାଗାରମାନ ସ୍ଥାପନ କରିବାକୁ ହେବ ।

## ଉତ୍କଳରେ "କୁଟୀର ଶିଳ୍ପ"ର ସୁବିଧା

ଯେ କୌଣସି 'କୁଟୀର ଶିଳ୍ପ' କରିବା ପୂର୍ବରୁ ପ୍ରଥମେ ପ୍ରଚୁର ପରିମାଣ କଞ୍ଚା ମାଲ୍ ( Raw Products ) ସଂଗ୍ରହ କରିବାକୁ ହେବ । ମନେ କରନ୍ତୁ, ଆମ୍ଭେମାନେ ଏଣ୍ଡି ଗୁଦର, ମଶିଣା, ବେତଛପା କମ୍ବା ବିଭିନ୍ନ ପ୍ରକାର ତେଲ ପ୍ରସ୍ତୁତର ଶିଳ୍ପ କରିବାକୁ ଇଚ୍ଛା

* The Govt. of India, in the recent communique have given their sanction for the movement provided it is not made to serve as a cloak for the carrying on of the Civil Disobedience campain.

[ Circular issued by the "Buy India league" of Madras. A. B. P. 2-6-32]

କରନ୍ତି । ତେବେ ସେଇ ସେଇ ଶିଳ୍ପପାଇଁ ଯଥାକ୍ରମେ ଏଣ୍ଡି ଖୋଷା, ମଣିଣା ଘାସ, ବାଉଁଶ କମ୍ବା ବିଭିନ୍ନ ପ୍ରକାର ତେଲର ମଞ୍ଜି (ଯଥା—ଗବମଞ୍ଜି, ଟୋଲମଞ୍ଜି, ନିମ୍ବମଞ୍ଜି, କରଞ୍ଜ ମଞ୍ଜି ପ୍ରଭୃତି ) ପ୍ରଥମେ ସଂଗ୍ରହ କରିବାକୁ ହେବ । କଞ୍ଚାମାଲ୍ ପ୍ରଚୁର ପରିମାଣ ସଂଗ୍ରହ କଲେ ଯେ କୌଣସି ସ୍ଥାନରେ ଯେ କୌଣସି ପ୍ରକାର ଶିଳ୍ପ କରା ଯାଇପାରେ ।

ବର୍ତ୍ତମାନ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରେ ଅସ୍ମମାନଙ୍କର ଅବଶ୍ୟକ ସମସ୍ତ ପ୍ରକାର ଜିନିଷ ତିଆରି କରିବାପାଇଁ ପ୍ରଚୁର ପରିମାଣ କଞ୍ଚାମାଲ୍ ମିଳେ, ଏଥିରେ କୌଣସି ସନ୍ଦେହ ନାହିଁ । ଏପରିକି ଅସ୍ମମାନଙ୍କର ନିତାନ୍ତ ଅବଶ୍ୟକ ଜିନିଷ ମଧ୍ୟରୁ କେବଳ ଲଣ୍ଠନ, ଘଡ଼ି ( watch ) କାଚ୍‌ସିଲ୍, ଝର କଲମ ( Fountain pen ) ଓ ଆଉ ଅଳ୍ପ କେତୋଟି ଜିନିଷକୁ ବାଦ୍ ଦେଲେ ଅନ୍ୟ ସବୁ ପ୍ରକାର ଜିନିଷ ତିଆରି କରିବାପାଇଁ ଆମ ଦେଶରେ ବିଶେଷ ସୁବିଧା ଅଛି । କିନ୍ତୁ ଏତିକି ଦୁଃଖର ବିଷୟ ଯେ, ଏପର୍ଯ୍ୟନ୍ତ ଆମର କି ରାଜା କି ପ୍ରଜା କେହି ଏ ଜିନିଷଗୁଡ଼ିକର ସ୍ଥାନୀୟ ସଦ୍‌ବ୍ୟବହାର କରିବା ପାଇଁ ଚେଷ୍ଟା କରି ନାହାନ୍ତି ।

ପାଠକମାନଙ୍କର ମନେ ଥିବ, କିପରି ପ୍ରତିବର୍ଷ ଓଡ଼ିଶାର ସମ୍ବାଦପତ୍ରଗୁଡ଼ିକରେ ପ୍ରତ୍ୟେକ ଗଡ଼ଜାତର ଜଙ୍ଗଲ ବା ବନଜାତ ଜିନିଷଗୁଡ଼ିକୁ ନିଲାମ କରିବାପାଇଁ ବିଜ୍ଞାପନ-ମାନ ପ୍ରକାଶିତ ହୁଏ । ଏଇ ବିଜ୍ଞାପନ ତାଲିକାଗୁଡ଼ିକରୁ ସ୍ପଷ୍ଟ ଜଣାଯାଏ ଯେ, ଓଡ଼ିଶା ଗଡ଼ଜାତରେ ପ୍ରାୟ ସବୁ ପ୍ରକାର କଞ୍ଚା ମାଲ୍ ( ବିସ୍ତୃତ ବିବରଣୀ ପରବର୍ତ୍ତୀ ଅଧ୍ୟାୟରେ ଦିଆଯିବ ) ମିଳେ ଏବଂ ଏଇ କଞ୍ଚାମାଲ୍ ଏତେ ପ୍ରଚୁର ମିଳେ ଯେ ଏଇଗୁଡ଼ିକୁ ବିକି କରି ଗଡ଼ଜାତ ରାଜାମାନେ ସେମାନଙ୍କ ବାର୍ଷିକ ଆୟରୁ ଅର୍ଦ୍ଧାଧିକ ଟଙ୍କା ପାନ୍ତି । ହାରାହାରି ୧୨ । ୨ କୋଟି ଟଙ୍କା କେବଳ ଏଇ କଞ୍ଚାମାଲଗୁଡ଼ିକୁ ନିଲାମ କରିବାଦ୍ୱାରା ଯଦି ଅଦାୟ ହୁଏ ଏଗୁଡ଼ିକୁ ଏଇ ଦେଶରେ କୁଟୀର ଶିଳ୍ପ ପାଇଁ ବ୍ୟବହାର କଲେ ତହିଁର ୨ । ୪ ଗୁଣ ଟଙ୍କା ଅଦାୟ ହୋଇପାରେ, ଏଥିରେ କୌଣସି ସନ୍ଦେହ ନାହିଁ । ତଥାପି ଆମ ଦେଶର କୌଣସି ଦେଶହିତୈଷୀ ଏ ଦିଗରେ ବିଶେଷ ଦୃଷ୍ଟି ଦେଇ ନାହାନ୍ତି । *

---

* ଅବଶ୍ୟ ଦୁଇବର୍ଷ ତଳେ ମୟୂରଭଞ୍ଜର ନବୀନ ମହାରାଜା ବାହାଦୁର ନିଜ ଭ୍ରାତାଙ୍କ ସ୍ମୃତିରକ୍ଷା ନିମନ୍ତେ ନିଜ ରାଜଧାନୀରେ ଗୋଟିଏ "ଶିଳ୍ପ ସଦନ" ସ୍ଥାପନ କରିଛନ୍ତି । ତଦ୍ଦ୍ୱାରା ସେ ରାଜ୍ୟର ଅନେକ ଅକର୍ମୀ ସୁବିଧାରେ ଜୀବିକାର୍ଜନ କରୁଅଛନ୍ତି । ମୟୂରଭଞ୍ଜଙ୍କ ଅନୁକରଣରେ ଅନ୍ୟାନ୍ୟ ଗଡ଼ଜାତ ରାଜାମାନେ ଏକାଧିକ ଶିଳ୍ପାଗାରମାନ ସ୍ଥାପନ କରିବା ଆଶା କରାଯାଏ ।

ଅଛି, ଗଡ଼ଜାତରେ ମିଳୁଥିବା ଏଇ କଞ୍ଚାମାଲ୍‌ର କିପରି ସଦ୍‌ବ୍ୟବହାର ହୁଏ ଜାଣନ୍ତି ? ଏଇ ଜିନିଷଗୁଡ଼ିକୁ ପ୍ରତିବର୍ଷ ନିଲାମ କରୁଥିବାରୁ କଲିକତା, ମଧ୍ୟ ପ୍ରଦେଶ ଓ ଯୁକ୍ତ ପ୍ରଦେଶ ଅଞ୍ଚଳରୁ ଧନୀ ମହାଜନମାନେ ଆସି ଅଧିକ ମୂଲ୍ୟ ଦେଇ ଏଇ ଜିନିଷଗୁଡ଼ିକୁ କିଣି ନିଅନ୍ତି ଓ ସେମାନଙ୍କ ଦେଶରେ ତାହାର ସଦ୍‌ବ୍ୟବହାର କରନ୍ତି । ଓଡ଼ିଶାର ଯେଉଁ କେତେ ଜଣ ମହାଜନ ଏଇ ଜିନିଷଗୁଡ଼ିକୁ ନିଲାମ ଧରନ୍ତି, ସେମାନେ ମଧ୍ୟ ତାହାର କୌଣସି ବିଶେଷ ସଦ୍‌ବ୍ୟବହାର ନ କରି ସେଇ ବିଦେଶୀ ମହାଜନମାନଙ୍କୁ ପୁଣି ବିକି କରନ୍ତି । ତଦ୍ଵାରା ଅଳ୍ପ କେତୋଟି ମହାଜନ ଓ ଗଡ଼ଜାତର ରାଜା ମହାରାଜାମାନେ ବିଶେଷ ଲାଭବାନ୍ ହୁଅନ୍ତି ସତ; କିନ୍ତୁ ସ୍ଥାନୀୟ ପ୍ରଜାମାନଙ୍କର ଅଣୁମାତ୍ର ମଙ୍ଗଳ ହୁଏ ନାହିଁ ।

ଅନେକ ସମୟରେ ଗଡ଼ଜାତର ଏଇ ଜଙ୍ଗଲ ପଦାର୍ଥଗୁଡ଼ିକୁ ସଂଗ୍ରହ କରିବା ପାଇଁ ସ୍ଥାନୀୟ ଅଧିବାସୀ ହାଡ଼ଭଙ୍ଗା କାମ କରନ୍ତି । କେତେକ ଗଡ଼ଜାତରେ ଏମାନଙ୍କର ପରିଶ୍ରମ ପାଇଁ ସାମାନ୍ୟ ଖୋରାକି ଦିଆଯାଏ; କିନ୍ତୁ ଆଜି କେତୋଟି ରାଜ୍ୟରେ ଏମାନେ ( ପ୍ରଜାମାନେ ) କେବଳ ବେଠି ଖଟି ନିସ୍ତାର ହୁଅନ୍ତି । ଏମାନଙ୍କର ଷାଣ୍ଢଭଙ୍ଗା ପରିଶ୍ରମ-ଦ୍ଵାରା ଯେଉଁ କଞ୍ଚାମାଲ୍ ସଂଗ୍ରହ କରାଯାଇ ଥାଏ, ସେ ସବୁ ବିଦେଶୀ ମହାଜନଙ୍କ ଗୋଦାମକୁ ଯାଏ; କିନ୍ତୁ ସ୍ଥାନୀୟ ଅଧିବାସୀମାନେ ତଦ୍ଵାରା କୌଣସି ପ୍ରକାର ଲାଭବାନ୍ ହୁଅନ୍ତି ନାହିଁ ।

ଗଡ଼ଜାତ ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାରେ ମଧ୍ୟ ଏଇ କଞ୍ଚା ମାଲର କୌଣସି ଅଭାବ ଦେଖାଯାଏ ନାହିଁ । ପ୍ରତ୍ୟେକ ଜିଲ୍ଲାରେ ଅନେକ ପ୍ରକାର କଞ୍ଚାମାଲ୍ ମିଳେ, ଯାହାକି ଆମ୍ଭେମାନେ ଆଦୌ କୌଣସି ଶିଳ୍ପରେ ଲଗାଇବା ଶିକ୍ଷା କରି ନାହୁଁ । ଏପରି କେତୋଟି ଜିନିଷ ଅଛି ( ଯଥା—କିଅ, କନକା, ଗୁଣ୍ଡ୍ରି ଇତ୍ୟାଦି ), ଯାହାକୁ କେବଳ ସ୍ଥାନୀୟ ଅଧିବାସୀମାନେ ଜାଣନ୍ତି ଓ ସେମାନଙ୍କ ଦ୍ଵାରା ତାହାର ସାମାନ୍ୟ ସଦ୍‌-ବ୍ୟବହାର ହୁଏ. କିନ୍ତୁ ଏଗୁଡ଼ିକ ଅନ୍ୟାନ୍ୟ ଜିଲ୍ଲାରେ ଥିଲେ ମଧ୍ୟ ତାହାର ସଦ୍‌ବ୍ୟବହାର କରିବାପାଇଁ ସେଠା ଅଧିବାସୀମାନେ ଆଦୌ ଶିକ୍ଷା କରି ନାହାନ୍ତି । ଏପରି ସ୍ଥଳେ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରେ ମିଳୁଥିବା କଞ୍ଚାମାଲଗୁଡ଼ିକର ସଦ୍‌ବ୍ୟବହାର କରିବା ପାଇଁ ଆମ ଦେଶର ରାଜା, ମହାରାଜା ଓ ଧନକୁବେରମାନେ ଚେଷ୍ଟା କରିବା ଦରକାର । ତା ହେଲେ ଆମ ଦେଶର କଞ୍ଚାମାଲ୍‌ଗୁଡ଼ିକୁ ନେଇ ଆମର ସମସ୍ତ ପ୍ରକାର କୁଟୀର ଶିଳ୍ପ କରିବା ସୁବିଧା ହେବ, ଦେଶର ଗରିବ ଓ ଅକର୍ମୀମାନେ ଏଇ ଶିଳ୍ପାଗାରରେ କାର୍ଯ୍ୟ କରି ଜୀବିକା-ର୍ଜ୍ଜନ କରିବେ ଏବଂ ଦେଶରେ ଆଜିକାଲି ପରି ବିଦେଶୀ ମାଲ୍ ବଦଳରେ କେବଳ 'ସ୍ଵଦେଶୀ'

ଜିନିଷର ବ୍ୟବହାର ବଢ଼ିବ । ଆମ ଦେଶରୁ କଞ୍ଚାମାଲ୍ ନେଇ ବିଦେଶୀମାନେ ନାନା ପ୍ରକାର ଶିଳ୍ପକାର୍ଯ୍ୟମାନ କରି ପ୍ରଚୁର ଧନୋପାର୍ଜନ କରୁଥିବା ସମୟରେ ସେହି କଞ୍ଚାମାଲଗୁଡ଼ିକୁ ଆମ୍ଭେମାନେ ଏଠାରେ ବ୍ୟବହାର କରି ତତୋଽଧିକ ଧନବାନ୍ ହେବା, ଏଥିରେ କୌଣସି ସନ୍ଦେହ ନାହିଁ ।



## ବିଭିନ୍ନ ପ୍ରକାର କୁଟୀର ଶିଳ୍ପ

ଜଙ୍ଗଲରେ "କୁଟୀର ଶିଳ୍ପ" ସ୍ଥାପନ କରିବା ଅବଶ୍ୟକ କିଣ ଓ ତା କରିବା ପାଇଁ କି କି ସୁବିଧା ଅଛି, ସେ କଥା ପୂର୍ବ ଦୁଇଟି ଅଧ୍ୟାୟରେ କୁହା ଯାଇଛି । ବର୍ତ୍ତମାନ

(୧) ଓଡ଼ିଶା ଗଡ଼ଜାତରେ,

(୨) ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଏବଂ

(୩) ସମଗ୍ର ଓଡ଼ିଶା ଓ ଓଡ଼ିଶା ଗଡ଼ଜାତ ପାଇଁ କି କି ପ୍ରକାର 'କୁଟୀର ଶିଳ୍ପ' ସ୍ଥାପନ କରାଯାଇ ପାରେ, ସେ କଥା ନିମ୍ନରେ ବର୍ଣ୍ଣିତ ହେବ । ( ପାଠକମାନଙ୍କୁ ଏଠାରେ ମନେ ରଖିବାକୁ ହେବ ଯେ, କେବଳ କଞ୍ଚାମାଲକୁ ନେଇ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ କରାଯାଇ ପାରେ; କିନ୍ତୁ ସବୁପ୍ରକାର କଞ୍ଚାମାଲ୍ ସବୁ ସ୍ଥାନରେ ପ୍ରଚୁର ପରିମାଣ ମିଳିପାରେ ନାହିଁ । ଅତଏବ ଏ ଦିଗରେ ବିଶେଷ କାର୍ଯ୍ୟାରମ୍ଭ କରିବା ପୂର୍ବରୁ କେଉଁ କେଉଁ ପଦାର୍ଥ କେଉଁ କେଉଁ ସ୍ଥାନରେ ପ୍ରଚୁର ମିଳେ ତା ସ୍ଥିର କରି ସେହି ସେହି ପଦାର୍ଥର କୁଟୀର ଶିଳ୍ପ ସେହି ସେହି ସ୍ଥାନରେ କରିବା ପାଇଁ ଯତ୍ନ କରିବ । ଏ ଦିଗରେ ବିଶେଷ ସୁବିଧା ପାଇବା ନିମନ୍ତେ ଏହି ଅଧ୍ୟାୟରେ ଏହି ବିଷୟ ଉପର୍ଯ୍ୟୁକ୍ତ ତିନି ଭାଗରେ ବର୍ଣ୍ଣନା କରାଯିବ । )

**(୧) ଓଡ଼ିଶା ଗଡ଼ଜାତରେ:—** ପ୍ରାୟ ପ୍ରତ୍ୟେକ ଗଡ଼ଜାତରେ ନିମ୍ନଲିଖିତ କଞ୍ଚାମାଲ୍ ପ୍ରଚୁର ପରିମାଣ ମିଳେ । ସୁବିଧାନୁସାରେ ଏକ ଏକ ପ୍ରକାର କଞ୍ଚାମାଲ୍ ସବୁ ଗଡ଼-ଜାତରୁ ଏକତ୍ର କରି ଗୋଟିଏ ଦୁଇଟା ବଡ଼ ଧରଣର ଶିଳ୍ପାଗାର ସ୍ଥାପନ କରାଯାଇ ପାରେ କିମ୍ବା ଜିନିଷ ଯଦି ପ୍ରଚୁର ଥାଏ, ତେବେ ପ୍ରତ୍ୟେକ ଗଡ଼ଜାତରେ ବିଭିନ୍ନ ପ୍ରକାର ଶିଳ୍ପା-ଗାର ସ୍ଥାପନ କରି ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ବିଭିନ୍ନ ପ୍ରକାର ଜିନିଷ ତିଆରି କରାଯାଇ ପାରେ । ଅବଶ୍ୟ ପ୍ରାରମ୍ଭରେ ଏହି ଜିନିଷର ଶିଳ୍ପ କରିବା ପୂର୍ବରୁ କେତେ ଜଣ ବିଦେଶୀ

ବିଶେଷଜ୍ଞ ( Expert ) ମାନଙ୍କୁ ନିଯୁକ୍ତ କରିବାକୁ ହେବ, ତା ନ ହେଲେ ସବୁ କାର୍ଯ୍ୟ ସୁଚାରୁରୂପେ କରି ହେବ ନାହିଁ । କିନ୍ତୁ କାଳ କାଳକୁ ଏହି ବୈଦେଶିକ ବିଶେଷଜ୍ଞମାନଙ୍କୁ ରଖିବା ଇଚ୍ଛା ନ କରି ସେମାନଙ୍କ ଦ୍ୱାରା ନିଜ ରାଜ୍ୟର ଏକାଧିକ ଲୋକଙ୍କୁ ବିଶେଷଜ୍ଞ କରାଇବା ଯତ୍ନ କରିବାକୁ ହେବ । ଗଡ଼ଜାତର ପ୍ରତ୍ୟେକ ସ୍ଥାନରେ ନାନା ପ୍ରକାର ଶିଳ୍ପାଗାର-ମାନ ସ୍ଥାପିତ ହେଲେ ସେଠାରେ କାର୍ଯ୍ୟ କରି ସ୍ଥାନୀୟ ଲୋକମାନେ ନିଜର ଜୀବିକାର୍ଜନ ବେଶ୍ ସୁନ୍ଦରରୂପେ କରିପାରିବେ । ସେମାନଙ୍କୁ ଆଉ ବିଦେଶ ଯାଇ କୁଲିକାମ କରିବା ଆବଶ୍ୟକ ପଡ଼ିବ ନାହିଁ କିମ୍ବା ଘରେ ଅକର୍ମୀ ହୋଇ ବସିବା ଦରକାର ପଡ଼ିବ ନାହିଁ ।

ବର୍ତ୍ତମାନ ଓଡ଼ିଶା ଗଡ଼ଜାତରେ କି କି ପ୍ରକାର କଞ୍ଚା ମାଲ୍ ମିଳେ ଓ ସେଗୁଡ଼ିକୁ ନେଇ କି କି ପ୍ରକାର କୁଟୀର ଶିଳ୍ପ କରି ଯାଇପାରେ, ତାହା ଏଠାରେ ଉଲ୍ଲେଖ କରିବି ।

(କ) **ଗୋରୁ ହାଡ଼**—ଗୋରୁ ହାଡ଼ରୁ ଉତ୍କୃଷ୍ଟ ଖତ ବା ସାର ତିଆରି ହୁଏ । ଓଡ଼ିଶାର ଅନେକ ଅନୁର୍ବର କୃଷି ଜମିରେ ଏହି ଖତ ବ୍ୟବହାର କରାଯାଇ ପାରେ । ଗୋରୁହାଡ଼କୁ ଉତ୍ତମରୂପେ ଗୁଣ୍ଡ କଲେ ତା ଖତ ପାଇଁ ବ୍ୟବହାର କରାଯାଇ ପାରେ । ଖତ ବ୍ୟତୀତ ହାଡ଼ଗୁଣ୍ଡ ଚିନି ( Sugar ) ପ୍ରସ୍ତୁତ କରିବା ପାଇଁ ମଧ୍ୟ ବ୍ୟବହାର କରନ୍ତି । ଭାରତରୁ ପ୍ରତିବର୍ଷ ପ୍ରାୟ ୯୦ ହଜାର ଟନ୍‌ର ହାଡ଼ ବିଦେଶକୁ ରପ୍ତାନୀ ହୁଏ । ଧାନ ଫସଲ ପାଇଁ ହାଡ଼ଗୁଣ୍ଡର ଖତ ବିଶେଷ ଦରକାର ହୁଏ ବୋଲି କୃଷିବିଶାରଦ-ମାନେ କହନ୍ତି ।

(ଖ) **ଚମଡ଼ା**—ଗାଈ, ଗୋରୁ, ଘୋଡ଼ା, ମହିଷ, ଛେଳି, ବାଘ, ଭାଲୁ, ହରିଣ, ଶମ୍ବର ଓ ଗୋଧି ପ୍ରଭୃତି ଜୀବର ଚମଡ଼ା ଓଡ଼ିଶାର ପ୍ରତ୍ୟେକ ଗଡ଼ଜାତରେ ମିଳେ । ଏଗୁଡ଼ିକୁ ଉତ୍ତମରୂପେ ସଫା କରି ଟ୍ୟାନ୍ଙ୍ଗ୍ କରାଇଲେ(Tanning) ଉତ୍କୃଷ୍ଟ ଧରଣର ଯୋତା, ଚମଡ଼ା ବ୍ୟାଗ, ପଟି, ଢାଲ, ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର ତିଆରି କରାଯାଇ ପାରେ । ଏଥି-ପାଇଁ ଯେଉଁ କାରଖାନା (ଶିଳ୍ପାଗାର) ଦରକାର, ତହିଁରେ ଶହ ଶହ ଲୋକ କାର୍ଯ୍ୟ କରି ଜୀବିକାର୍ଜନ କରିପାରନ୍ତି । ଓଡ଼ିଶାର କୁଳବୃଦ୍ଧ ମଧୁବାବୁ (ମି. ମଧୁସୂଦନ ଦାସ ଏମ୍, ଏ., ସି. ଆଇ. ଇ) ବହୁବର୍ଷ ପାଏ ଯେଉଁ ଚମଡ଼ା କାରଖାନା ( Utkal Tannery ) ଖୋଲିଥିଲେ, ତହିଁରେ ଓଡ଼ିଶାର ଶତାଧିକ ଲୋକ କାର୍ଯ୍ୟ କରି ଜୀବିକାର୍ଜନ କରୁଥିଲେ ଏବଂ ଏହି କାରଖାନାକୁ ନେଇ ମଧୁବାବୁ ସୁଦୂର ଆମେରିକା ଓ ୟୁରୋପରେ ଓଡ଼ିଶାର ଟେକ ରଖାଇଥିଲେ ।

[ 'କ' ଓ 'ଖ'—ଏ ଦୁଇଟି କାର୍ଯ୍ୟ କରିବା ପାଇଁ ଓଡ଼ିଶା ଗଡ଼ଜାତରେ ଅସଂଖ୍ୟ **କନ୍ଧ**, ଶବର, ପରଦା ଓ ଗାଦବା ପ୍ରଭୃତି ଆଦିମ ଜାତିର ଲୋକମାନେ ଅଛନ୍ତି । ଏମାନେ ଅକ୍ଳେଶରେ ଉପର୍ଯ୍ୟୁକ୍ତ ଦୁଇଟି ଶିଳ୍ପ କରିପାରନ୍ତି । ନୈଷ୍ଠିକ ହିନ୍ଦୁଙ୍କୁ ବାଦ୍ ଦେଲେ ଅନ୍ୟ ଯେ କୌଣସି ଅସ୍ପୃଶ୍ୟ ଜାତିର ଲୋକ - ହାଡ଼ି, ପାଣ, ଡମ ପ୍ରଭୃତି—ଏ କାର୍ଯ୍ୟ କରିବାକୁ ଇଚ୍ଛା-ପ୍ରକାଶ କରିବେ । ସେପରି ଜାତିର ଲୋକସଂଖ୍ୟା ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରେ କମ୍ ନୁହେ । ଅଜକାଲି ଏହି ଲୋକମାନେ ନିଜ ଦେଶରେ କୌଣସି କାର୍ଯ୍ୟ ନ ପାଇ ଆସାମ ଚା ବଗିଚାରେ କାର୍ଯ୍ୟ କରିବା ପାଇଁ ଯାନ୍ତି । ବର୍ଷକୁ ହାରାହାରି ୮ । ୧୦ ହଜାର ଆଦିମବାସୀ ଓଡ଼ିଶା ଗଡ଼ଜାତ ଓ ଜୟପୁରରୁ ଆସାମ ଯାଉଥିବାର ସରକାରୀ ରିପୋର୍ଟରୁ ଜଣାଯାଏ । ଏପରି ସ୍ଥଳେ ଉପଯୁ୍ୟକ୍ତ ଦୁଇଟି ଶିଳ୍ପାଗାର ଖୋଲିଲେ ଓଡ଼ିଶା ଗଡ଼ଜାତର ଏହି ଆଦିମବାସୀମାନେ ସେଠାରେ କାର୍ଯ୍ୟ କରି ଜୀବିକାର୍ଜନ କରନ୍ତେ ଓ ସେମାନଙ୍କର ବିଦେଶ ଯିବା ବନ୍ଦ ହୁଅନ୍ତା । ]

(ଗ) **ଶିଙ୍ଗ** (Horn)—ଗାଈ, ଗୋରୁ, ହରିଣ ଓ ଶମ୍ବର ପ୍ରଭୃତିଙ୍କର ଶିଙ୍ଗ ସଂଗ୍ରହ କରି ବିଭିନ୍ନ ପ୍ରକାର ସୁନ୍ଦର ସୁନ୍ଦର ପାନିଆ, ପେଡ଼ି, ପଟା, ଛଡ଼ି, ଖଟୁଲି, ଗୁରିବେଣ୍ଟ, ଛୁରୀବେଣ୍ଟ, ଖେଳନା ଛବି, ବୋତାମ, ଠାକୁର ପ୍ରତିମା ପ୍ରଭୃତି କରାଯାଇ ପାରେ । ଏହି କାର୍ଯ୍ୟପାଇଁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଶିଙ୍ଗ ଏ ଦେଶରୁ କଲିକତା, ମାନ୍ଦ୍ରାଜ ଓ ୟୁରୋପର ଜର୍ମାନୀ, ଇଂଲଣ୍ଡ ପ୍ରଭୃତି ସ୍ଥାନକୁ ରପ୍ତାନୀ ହୁଏ । ଆମ ଦେଶରୁ ଶିଙ୍ଗ ନେଇ ଜର୍ମାନ ଦେଶ ଓ ଜାପାନୀମାନେ ଛଡ଼ିବେଣ୍ଟ, ଛୁରିବେଣ୍ଟ ଓ ଅନ୍ୟାନ୍ୟ କାର୍ଯ୍ୟରେ ଲଗାଇ ପୁଣି ଆମ ଦେଶକୁ ରପ୍ତାନୀ କରି ବହୁମୂଲ୍ୟରେ ବିକ୍ରି କରନ୍ତି । ଏହି ଶିଙ୍ଗ କାମ କରିବା ପାଇଁ ଓଡ଼ିଶାରେ ଅନେକ କାରିଗର ଅଛନ୍ତି । କିନ୍ତୁ ସେମାନଙ୍କୁ କୌଣସି ଉତ୍ସାହ ଦିଆଯାଉ ନ ଥିବାରୁ ସେମାନେ ଏ ଦିଗରେ ବିଶେଷ କିଛି ଉନ୍ନତି କରି ପାରୁ ନାହାନ୍ତି । ଏହି ଶିଳ୍ପ ଯେ କୌଣସି ଜାତିର ଲୋକ କରିପାରନ୍ତି, ଏହା କରିବା ପାଇଁ କୌଣସି ପ୍ରକାର ଜାତି ବା ଧର୍ମ ସମ୍ବନ୍ଧୀୟ ଆପତ୍ତି ଉଠିବା ସମ୍ଭବ ନୁହେଁ ।

(ଘ) **ହାତୀଦାନ୍ତ**—ହାତୀଦାନ୍ତ ପାଇଁ ଓଡ଼ିଶା ଇତିହାସପ୍ରସିଦ୍ଧ । ଅତି ପ୍ରାଚୀନ କାଳରୁ ଓଡ଼ିଶାରେ ହାତୀର କାରବାର ଥିଲା । ପ୍ରାଚୀନ ଓଡ଼ିଶାର ରାଜାମାନେ ଯୁଦ୍ଧପାଇଁ ପ୍ରଚୁର ହାତୀ ରଖୁଥିଲେ । * "ମହାଭାରତର କୁରୁପାଣ୍ଡବଙ୍କ ଯୁଦ୍ଧରେ କଳିଙ୍ଗ ସେନା

* "Elephants were specially bred for the royal forces of which they formed a prominent part."
[ Rock Edict XIII of Asoka. P. D. G. P. 23 ]

କୌରବ ପକ୍ଷରେ ଯୁଦ୍ଧ କରିଥିଲେ । × × କଳିଙ୍ଗରୁ ୬୦ ହଜାର ରଥ ଓ **ପର୍ବତ ସମାନ ହାତୀ ୧୦ ହଜାର ଯାଇ ଯୁଦ୍ଧ କରିଥିଲେ** ।" * ଚୀନ ପରିବ୍ରାଜକ ହୁଏନସାଂ ତାଙ୍କର ଭ୍ରମଣବୃତ୍ତାନ୍ତରେ ମଧ୍ୟ ଏହି ହାତୀର କାରବାର କଥା ଲେଖି ଯାଇଛନ୍ତି । ✤ କଥିତ ଅଛି ଯେ ପ୍ରାଚୀନ ଉତ୍କଳର ଜଣେ ରାଜା ହାତୀଦାନ୍ତର ଅତି ସୂକ୍ଷ୍ମ କାରୁକାର୍ଯ୍ୟମାନ ତତ୍କାଳୀନ ଚୀନ ସମ୍ରାଟଙ୍କୁ ଉପହାର ଦେଇ ଉତ୍କଳ ଓ ଚୀନଦେଶ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ବନ୍ଧୁତା ସ୍ଥାପନ କରିଥିଲେ ।

ଆଜିକାଲି ଗଡ଼ଜାତର ଅନେକ ସ୍ଥାନରେ ଶତ ଶତ ହାତୀ ମିଳେ ଓ ପ୍ରତିବର୍ଷ ହାତୀ ଧରା ହୁଅନ୍ତି । ଓଡ଼ିଶା ଗଡଜାତରୁ ସହସ୍ରାଧିକ ଟଙ୍କାର ହାତୀଦାନ୍ତ ପ୍ରତିବର୍ଷ ନିଲାମ ହୁଏ । ହାତୀଦାନ୍ତରେ ବିଭିନ୍ନ ପ୍ରକାର ଅତି ସୁନ୍ଦର ଓ ସୂକ୍ଷ୍ମ କାମମାନ ହୁଏ । ହାତୀଦାନ୍ତର ଚେଡ଼ି, ଖଟୁଲି, ଖଟ, ଅମାରି (ହାଉଦା), ସିଂହାସନ, ଚୌକୀ, ମୁଦି, ବାଲି, ଅନନ୍ତ, ଶଙ୍ଖା, ଫୁଲଦାନି, ଫରୁଆ ପ୍ରଭୃତି ହୁଏ । ଏଗୁଡ଼ିକ କରିବା ପାଇଁ ଓଡ଼ିଶାରେ ଅନେକ କାରିଗର ଅଛନ୍ତି । ଉତ୍ସାହ ପାଇଲେ ଏମାନେ ଯେ ଆହୁରି ସୁନ୍ଦର ଓ ସୌଖିନ କାମମାନ କରିପାରନ୍ତେ, ସନ୍ଦେହ ନାହିଁ ।

( ଙ ) **ଏଣ୍ଡି, ମୁଗା, ଟସର ଓ ପାଟ ପ୍ରଭୃତି**—ଗଡଜାତ ଜଙ୍ଗଲରେ ଏହି ଖୋଷାଗୁଡ଼ିକ ପ୍ରଚୁର ମିଳେ । ଏହି ଖୋଷା ଯେଉଁ ପୋକଦ୍ୱାରା ତିଆରି ହୁଏ, ସେହି ପୋକ ପୋଷିବା ପାଇଁ ଏଠାରେ ବିଶେଷ ସୁବିଧା ମଧ୍ୟ ଅଛି । ସାମାନ୍ୟ ଚେଷ୍ଟା କଲେ ଏହି "ଶିଳ୍ପ" ଆହୁରି ଅଧିକ କରାଯାଇ ପାରେ । ଏହି ଖୋଷାଗୁଡ଼ିକୁ ସଂଗ୍ରହ କରି ତହିଁର ସୂତାରେ ଗୁଦରି, ମଠା ଓ ପାଟ ପ୍ରଭୃତି କରାଯାଇ ପାରେ । ଅତି ପ୍ରାଚୀନ କାଳରୁ ଓଡ଼ିଶାର ତନ୍ତୀମାନେ ଅତି ସରୁ ଓ ଚିକ୍କଣ ଲୁଗା ଶାଢ଼ୀ, ଗୁଦରି ପ୍ରଭୃତି କରି ଓଡ଼ିଶାର ଟେକ ଦେଶ ବିଦେଶରେ ରଖାଇଥିଲେ । ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ଅନେକ ସ୍ଥାନରେ ଏହି କାମ କରିବା ତନ୍ତୀ, ଗୌନ୍ତିଆ ଓ ପାଇଣ୍ଡା ପ୍ରଭୃତି ଜାତିର ଲୋକମାନେ ଅଛନ୍ତି । ଉତ୍ସାହ ପାଇଲେ ସେମାନେ ଏହି ବ୍ୟବସାୟ ଆହୁରି ସୁନ୍ଦର ଓ ସୂକ୍ଷ୍ମ ରୂପେ କରିପାରିବେ, ସନ୍ଦେହ ନାହିଁ ।

---

* "ଉତ୍କଳ ଇତିହାସ" ୧୫ ପୃଷ୍ଠା

✤ It ( ପ୍ରାଚୀନ ଓଡ଼ିଶା ) produced large dark-coloured Elephants, capable of long journeys.

[ Travels of Hiuen Tsiang by Watters Vol. II, P. 196-7 ]

ଏହି ଖୋଷାଗୁଡ଼ିକୁ ପ୍ରସ୍ତୁତ କରିବାପାଇଁ ବିଶେଷ କିଛି ବୈଜ୍ଞାନିକ ପ୍ରଣାଳୀ ଜାଣିବା ଦରକାର ନାହିଁ । ନିତାନ୍ତ ଅଶିକ୍ଷିତ ଲୋକ ମଧ୍ୟ ଏହି ଖୋଷାର ପୋକଗୁଡ଼ିକୁ ପାଳି ଖୋଷା ତିଆରି କରି ତହିଁରୁ ସୂତା କାଟିପାରେ । ଓଡ଼ିଶା ଗଡ଼ଜାତର ଅର୍ଦ୍ଧାଧିକ ପ୍ରଜା ଏହି କାର୍ଯ୍ୟରେ ନିଯୁକ୍ତ ହୋଇପାରନ୍ତି । ଖୋଷା ସଂଗ୍ରହ ସଙ୍ଗେ ସଙ୍ଗେ ଏହି ଜାତିର ପୋକଗୁଡ଼ିକର ସଂଖ୍ୟା ଆହୁରି ବହୁତ ଅଧିକ କରାଯାଇପାରେ ଏବଂ ସେଗୁଡ଼ିକ କିପରି ଅତି ବଡ଼ ଓ ସୁନ୍ଦର ଖୋଷା ଦେଇପାରନ୍ତି, ତହିଁର ବୈଜ୍ଞାନିକ ପ୍ରଣାଳୀ ଆବିଷ୍କାର କରିବା ପାଇଁ କେତେ ଜଣ ବିଶେଷଜ୍ଞଙ୍କୁ ମଧ୍ୟ ନିଯୁକ୍ତ କରାଯାଇ ପାରେ, କିମ୍ବା ଏହି ଦେଶର କେତେ ଜଣଙ୍କୁ ସେହି ବିଦ୍ୟା ଶିକ୍ଷା କରିବାପାଇଁ ଦେଶ ବିଦେଶକୁ ପଠାଇ ଦିଆଯାଇ ପାରେ । ତଦ୍ଦ୍ୱାରା ଏହି ଶିଳ୍ପର ଆହୁରି ଅଧିକ ଉନ୍ନତି ହେବା ଆଶା କରାଯାଏ । ଆଜିକାଲି କି ଶିକ୍ଷିତ କି ଅଶିକ୍ଷିତ ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଏଣ୍ଡି, ପାଟ, ମଠା ଓ ଟସର ପ୍ରଭୃତିର ଚାଦର, କୋଟ, କାମିଜ, ଶାଢ଼ୀ, ପିନ୍ଧା ପ୍ରଭୃତି ବିଶେଷରୂପେ ଆଦୃତ ହେଉଥିବାର ଦେଖାଯାଏ । ପୁଣି ଏହି ବ୍ୟବସାୟ ପାଶ୍ଚାତ୍ୟ ଦେଶଗୁଡ଼ିକରେ ଆହୁରି ଅଧିକ ଥିବାରୁ, ସେଠା ଲୋକମାନେ ପ୍ରାକୃତିକ ଖୋଷା ପାଇ ନ ଥିବାରୁ କୃତ୍ରିମ ଖୋଷା (Artificial Cacoon) ତିଆରି କରିବାକୁ ବାଧ୍ୟ ହୁଅନ୍ତି । ଏପରି ଅବସ୍ଥାରେ ଆମ ଗଡ଼ଜାତର ଜଙ୍ଗଲରେ ଏହି ଖୋଷାଗୁଡ଼ିକୁ ଅଧିକ ପରିମାଣରେ ଚାଷ କରି ସେହି ଖୋଷାର ସୂତାରେ ଉନ୍ନତ ଧରଣର ଶିଳ୍ପ କଲେ ଏହି ବ୍ୟବସାୟ ଦ୍ୱାରା ବିଶେଷ ଲାଭ ହେବା ନିଃସନ୍ଦେହ । ଅଳ୍ପ ପରିଶ୍ରମ ଦ୍ୱାରା ଅସଂଖ୍ୟ ଖୋଷା ତିଆରି କରି ପ୍ରଚୁର ଧନୋପାର୍ଜନ କରିବାପାଇଁ ଏହି ବିଭିନ୍ନ ପ୍ରକାର ଖୋଷାର 'ଚାଷ' ଓ ତହିଁର ଶିଳ୍ପ ବ୍ୟତୀତ ଅନ୍ୟ କୌଣସି ସୁବିଧାଜନକ ବ୍ୟବସାୟ ଓଡ଼ିଶାରେ ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତଏବ ଏହି ଚାଷ ଓ ଶିଳ୍ପର ବିଶେଷ ଉନ୍ନତି କରିବା ନିତାନ୍ତ ଦରକାର ।

( ଗ ) **ତେଲ**—ମହୁଲ ବା ଟୋଲଫଳ, କରଞ୍ଜମଞ୍ଜି, ଗବ ମଞ୍ଜି, ନିମ୍ବ, ଲଙ୍କା-ମୁଣ୍ଡି ( ଭାଲିଆ ), ସୁନାରମ୍ପା, କନିଅର, ପୋଲଙ୍ଗ, କପା ପ୍ରଭୃତି ମଞ୍ଜିରୁ ତେଲ ଆଦାୟ ହୁଏ । ଏଥିରୁ ଅଧିକାଂଶ ତେଲ ଦୀପ ଜାଳିବା ପାଇଁ, ସାବୁନ ତିଆରି ପାଇଁ ଏବଂ ଔଷଧରେ ବ୍ୟବହାର କରିବାପାଇଁ ବ୍ୟବହାର କରାଯାଏ । କେବଳ ଓଡ଼ିଶା ଗଡ଼ଜାତରେ ଯେଉଁ ତେଲ ମଞ୍ଜି ମିଳେ, ସେହି ମଞ୍ଜିରୁ ତେଲ ବାହାର କଲେ ସମଗ୍ର ଓଡ଼ିଶା ପାଇଁ ଯୋଗାଇ ଦିଆଯାଇ ପାରେ । ଓଡ଼ିଶା ଇଂରାଜମାନଙ୍କ ଅଧିକାରଭୁକ୍ତ ହେବ

ପୂର୍ବରୁ "କିରାସିନି" କିମ୍ବା ଅନ୍ୟ କୌଣସି ପ୍ରକାର ତେଲ ଓଡ଼ିଶା ବାହାରୁ (ବିଦେଶରୁ) ଓଡ଼ିଶାକୁ ଆସୁ ନ ଥିଲା । ଲୋକମାନେ ନିଜ ନିଜର ଖର୍ଚ୍ଚପାଇଁ ପ୍ରଚୁର ପରିମାଣରେ ଦେଶୀ ତେଲ ଏଠାରେ ତିଆରି କରୁଥିଲେ । ଆଜି ମଧ୍ୟ ଓଡ଼ିଶାର ଅନେକ ମଫସଲବାସୀ କେବଳ ନିଜ ଗ୍ରାମରେ ପ୍ରସ୍ତୁତ ଦେଶୀ ତେଲରେ (ପୋଲଙ୍ଗ, ଗବ, ଟୋଲ, ଲଙ୍କାମୂଣ୍ଡି ପ୍ରଭୃତି) ଦୀପ ଜାଳନ୍ତି ଓ ସୋରିଷ, ରାଶି ଏବଂ ନଡ଼ିଆ ତେଲ ଦେହରେ ଲଗାନ୍ତି ଏବଂ ଖିଆପିଆ ପାଇଁ ବ୍ୟବହାର କରନ୍ତି । ଏପର୍ଯ୍ୟନ୍ତ ଅନେକ ପଲ୍ଲୀରେ 'ବିଦେଶୀ' କିରାସିନି ତେଲ ଆଦୌ ପ୍ରବେଶ କରି ନାହିଁ ଏବଂ ଆଜି କେତେକ ପଲ୍ଲୀ ଅଧିବାସୀ କେବଳ ଦେଶୀ ତେଲ ଅଭାବରେ ବାଧ୍ୟ ହୋଇ ଦୂର ସହରରୁ କିରାସିନି ଆଣି 'ଢିବି'ରେ ଦୀପ ଜାଳନ୍ତି । ଏପରି ଅବସ୍ଥାରେ ଆମ ଦେଶର ପ୍ରତ୍ୟେକ ପଲ୍ଲୀବାସୀଙ୍କ ବ୍ୟବହାର ପାଇଁ ଉପଯୁକ୍ତ ତେଲର ଶିଳ୍ପ ଓଡ଼ିଶା ଗଡ଼ଜାତରେ କରିବାକୁ ହେବ । ତଦ୍ଦ୍ୱାରା ପଲ୍ଲୀବାସୀଙ୍କ ପ୍ରଧାନ ଅଭାବ ଦୂର ହେବା ସଙ୍ଗେ ସଙ୍ଗେ ଅନେକ ଲୋକ ଏହି ବ୍ୟବସାୟ ଦ୍ୱାରା ପଇସା ରୋଜଗାର କରି ସୁଖରେ ଜୀବନ କାଟିପାରନ୍ତି ।

ନିମ୍ବ, କନିଅର, ସୁନାଚମ୍ପା, ଚଡ଼ା ତେଲ ପ୍ରଭୃତି ସାଧାରଣ ବ୍ୟବହାର ବ୍ୟତୀତ ଔଷଧ ଓ ସାବୁନ ତିଆରିପାଇଁ ମଧ୍ୟ ବ୍ୟବହାର କରାଯାଇ ପାରେ । ଅନେକ ବୈଦ୍ୟ ଓ ଡାକ୍ତର ଏହି ତେଲଗୁଡ଼ିକୁ କାଛୁ, ଯାଦୁ ପ୍ରଭୃତି ଚର୍ମ ରୋଗର "ଅବ୍ୟର୍ଥ ଔଷଧ" ତିଆରି କରି ବଜାରରେ ବିକ୍ରୟ କରନ୍ତି । ନିମ୍ବ ତେଲରେ ପ୍ରସ୍ତୁତ ସାବୁନ ( Neem Soap ) ଭାରତର ବିଭିନ୍ନ ଅଞ୍ଚଳରେ ଚର୍ମ ରୋଗୀଙ୍କ ମଧ୍ୟରେ ବ୍ୟବହାର କରାଯାଏ । ଆଜିକାଲି କଲିକତା ବଜାରରେ ଏହି ସାବୁନ୍ ଚର୍ମ ରୋଗର ଉତ୍କୃଷ୍ଟ ଔଷଧରୂପେ ବିକ୍ରୟ ହୁଏ ।

ଉପର୍ଯ୍ୟୁକ୍ତ ବିଭିନ୍ନ ପ୍ରକାର ତେଲ ତିଆରି କରିବା ପାଇଁ ଆମ ଦେଶର 'ତେଲି'-ମାନଙ୍କୁ ନିଯୁକ୍ତ କରାଯାଇ ପାରେ; କିନ୍ତୁ ଯେ କୌଣସି ଆଦର୍ଶ କୁଟୀର ଶିଳ୍ପାଗାରରେ ଏହି ବ୍ୟବସାୟ କରିବା ପାଇଁ ଅନ୍ୟାନ୍ୟ ଜାତିର ଲୋକମାନେ ମଧ୍ୟ ଆସିପାରନ୍ତି । ଏହା କରିବାପାଇଁ କୌଣସି ଜାତି ବା ଧର୍ମର ପାର୍ଥକ୍ୟ ବା ନିଷେଧ ଦେଖାଯିବା ସମ୍ଭବପର ନୁହେଁ ।

( ଛ ) **ଲାଖ ଓ ଝୁଣା**—ଲାଖ ବା "ଜଉ" ଏକଜାତୀୟ ପୋକ ଦ୍ୱାରା ତିଆରି ହୁଏ । ସେହି ପୋକ 'ବରକୋଳି' ଓ ଆଉ କେତୋଟି ଜଙ୍ଗଲ ଗଛର ପତ୍ର ଉହାଳରେ

ଲାଖ ପ୍ରସ୍ତୁତ କରନ୍ତି । ଓଡ଼ିଶା ଗଡ଼ଜାତରୁ ପ୍ରତିବର୍ଷ କୋଟି କୋଟି ଟଙ୍କାର ଲାଖ ୟୁରୋପ ଓ ଆମେରିକା ପ୍ରଭୃତି ଦେଶକୁ ରପ୍ତାନୀ ହେଉଥିବାର ଜଣାଯାଏ । ଏ ଲାଖ ନାନା ପ୍ରକାର ଅଳଙ୍କାର ତିଆରିରେ ବ୍ୟବହାର କରାଯାଏ ଏବଂ ଏଥି ଦ୍ୱାରା ଅତି ସୁନ୍ଦର ଓ କାରୁକାର୍ଯ୍ୟପୂର୍ଣ୍ଣ ଛବି, ପ୍ରତିମୂର୍ତ୍ତି, କାଚ, ଶିକୁଳି ପ୍ରଭୃତି ତିଆରି ହୁଏ । ଯାପାନ, ଆମେରିକା ଓ ୟୁରୋପ ପ୍ରଭୃତି ଦେଶରେ ବିଭିନ୍ନ ପ୍ରକାର ସୌଖିନ ଜିନିଷ ଓ ପିଲାଙ୍କ ଖେଳନା ଲାଖରେ ତିଆରି ହୁଏ । ଓଡ଼ିଶା ଗଡ଼ଜାତରେ ଯେପରି ପ୍ରଚୁର ପରିମାଣ ବରକୋଳି ଓ ଅନ୍ୟାନ୍ୟ ଜଙ୍ଗଲ ଗଛ ମିଳେ, ସାମାନ୍ୟ ଚେଷ୍ଟା କଲେ ଏହି ବ୍ୟବସାୟ ଅତିକ ଅଧିକ ପରିମାଣରେ କରି ହେବ ଓ ଲାଖର କୁଟୀର ଶିଳ୍ପ କରି ଅଧିକ ଧନୋପାର୍ଜନ କରି ହେବ ।

ଝୁଣା ଔଷଧରେ, କାଠ ପାଲିସ ପାଇଁ, ଧୂପ ଓ "ମଶକ ନାଶକ ଚୂର୍ଣ୍ଣ" ରୂପେ ବ୍ୟବହାର କରନ୍ତି । ଏହା ଗୋଟିଏ ଜଙ୍ଗଲ ଗଛର ଅଠା ବା ରସରୁ ଆଦାୟ ହୁଏ । ସେହି ଗଛର ବହୁଳ କୃଷି କଲେ ଓଡ଼ିଶା ଗଡ଼ଜାତରୁ ଅଧିକ ପରିମାଣ ଝୁଣା ଆଦାୟ ହୋଇପାରେ । ଏହି ଦରକି ଶିଳ୍ପ ମଧ୍ୟ ଯେ କୌଣସି ଜାତିର ଲୋକମାନେ କରିପାରନ୍ତି ।

(ଚ) **କାଠ** —କାଠ ଓଡ଼ିଶା ଗଡ଼ଜାତର ଗୋଟିଏ ପ୍ରଧାନ ସମ୍ପତ୍ତି । ଭିନ୍ନ ଧରଣର ପ୍ରଚୁର ପରିମାଣ ଅତି ମୋଟା ଓ ଟାଣୁଆ କାଠ—ବିଭିନ୍ନ ପ୍ରକାର—ଗଡ଼ଜାତ ଜଙ୍ଗଲରେ ମିଳେ । ଏହି କାଠରେ ଅତି ସୁନ୍ଦର ଓ ମଜଭୁତ ପେଡ଼ି, ଅଲମାରି, ଟେବୁଲ, ଚୌକି ପ୍ରଭୃତି କରାଯାଇ ପାରେ । ଘରର ସବୁ ପ୍ରକାର ଉପକରଣ ସଙ୍ଗେ ଢଳି, ବରଗା, ପଟା, କବାଟ, ଝରକା ପ୍ରଭୃତି ମଧ୍ୟ ଏହି କାଠରେ ତିଆରି ହୁଏ । କାର୍ଯ୍ୟର ସୌନ୍ଦର୍ଯ୍ୟ ଓ କାଠର ପ୍ରଶସ୍ତି ଦେଖିଲେ ଯେ କୌଣସି ଲୋକ ଏହି କାଠରେ ତିଆରି ଜିନିଷଗୁଡ଼ିକ କିଣିନେବେ, ସନ୍ଦେହ ନାହିଁ । ଆମ ଦେଶର ରାଜା, ମହାରାଜାମାନେ କଲିକତା ଓ ମାନ୍ଦ୍ରାଜ ପ୍ରଭୃତି ଦେଶରେ ଥିବା ସାହେବୀ ଦୋକାନରୁ ଯେଉଁ ବେଞ୍ଚ, ଚୌକି ପ୍ରଭୃତି ଉପକରଣମାନ କିଣନ୍ତି, ତା ଅପେକ୍ଷା ଆମ ଦେଶର ବଢ଼େଇମାନଙ୍କ ଦ୍ୱାରା ତିଆରି ହୋଇଥିବା ଏହି ଦେଶୀ

---

* ବୋମ୍ବେର Messrs D. B. Taraporevala Sons & Co. ଙ୍କ ଦ୍ୱାରା ପ୍ରକାଶିତ "Co-operation in Bombay" ନାମକ ପୁସ୍ତକର ୧୬୬ ପୃଷ୍ଠାରେ ଲେଖାଅଛି—"Lac Industry for which India holds practically a monopoly. **Orissa exports lac worth crores of rupees.**"

କାଠର ଉପକରଣଗୁଡ଼ିକ କୌଣସି ଗୁଣରେ ନ୍ୟୁନ ବୋଲି କୁହାଯାଇ ନ ପାରେ । ତଥାପି, କେବଳ ପାଶ୍ଚାତ୍ୟ ଚାକଚକ୍ୟରେ ବଢ଼ିଥିବା ଆମ ରାଜା ଓ ମହାରାଜାମାନେ କମ୍ପାନୀ ଜିନଷଗୁଡ଼ିକୁ ଅଧିକ ଟଙ୍କା ଦେଇ କିଣି ଏ ଦେଶର ଜାତୀୟ ଶିଳ୍ପକୁ ଦମନ କରିବା ସଙ୍ଗେ ସଙ୍ଗେ ଆମର ଜାତୀୟ ସମ୍ପଦର ଅପବ୍ୟବହାର ଯେ କରୁଛନ୍ତି, କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର କାଠ ଓଡ଼ିଶା ଗଡ଼ଜାତରୁ କଲିକତା ଓ ମାନ୍ଦ୍ରାଜ ପ୍ରଭୃତି ସ୍ଥାନକୁ ରପ୍ତାନୀ ହୁଏ । ପୁଣି ସେଇ କାଠରେ ତିଆରି ହେବା ଉପକରଣମାନ ଆମ ଦେଶର ଧନୀ ରାଜା ଓ ମହାରାଜାମାନେ କିଣି ଆଣନ୍ତି । ଯା ଅପେକ୍ଷା ଆମ ଦେଶର କାଠ-ଗୁଡ଼ିକୁ ଏଠାରେ ରଖାଇ ଏଠା ବଢ଼େଇଙ୍କ ଦ୍ୱାରା ବିଭିନ୍ନ ପ୍ରକାର ଶିଳ୍ପକାମ କରାଇ ଏଗୁଡ଼ିକୁ ଦେଶ ବିଦେଶରେ ବିକି କଲେ ଅଧିକ ଧନୋପାର୍ଜନ ହେବା ସଙ୍ଗେ ସଙ୍ଗେ ଆମ ଦେଶର ଲୋକମାନେ ଏଇ ଶିଳ୍ପକାର୍ଯ୍ୟ କରି ନିଜ ନିଜ ଜୀବିକାର୍ଜନ କରନ୍ତେ ।

ଗଡ଼ଜାତରେ ମିଳୁଥିବା ଶାଳ, ପିଆଶାଳ, ସରଟି ଓ ଶିଶୁ ପ୍ରଭୃତି ଅତି ମୋଟା ଓ ଟାଣ କାଠରେ ରେଲ କମ୍ପାନୀମାନେ ରେଲଡବା ( ଯାତ୍ରୀ ବସିବା ଡ଼ିବା ), ରେଲ 'ସ୍ଲିପର' ଓ ଅନ୍ୟାନ୍ୟ ଉପକରଣମାନ ତିଆରି କରନ୍ତି । ପ୍ରତିବର୍ଷ ଭାରତର ବିଭିନ୍ନ ରେଲ କମ୍ପାନୀ କୋଟି କୋଟି ଟଙ୍କାର କାଠ କିଣୁଥିବା ଜଣାଯାଏ । ସମୟରେ ଏଇ କାଠ ୟୁରୋପ ଦେଶରୁ ମଧ୍ୟ ଆମଦାନୀ କରନ୍ତି । କିନ୍ତୁ ଆମ ଗଡ଼ଜାତ ଜଙ୍ଗଲରେ ଏତେ ରକମ ପ୍ରଚୁର ପରିମାଣ କାଠ ମିଳୁଥିବା ସତ୍ତ୍ୱେ ଏଗୁଡ଼ିକର ସଦ୍‌ବ୍ୟବହାର ହୁଏ ନାହିଁ । ଏଇ କାଠକୁ ବିଦେଶକୁ ରପ୍ତାନୀ ନ କରି ସ୍ଥାନେ ସ୍ଥାନେ ଶିଳ୍ପାଗାରମାନ ସ୍ଥାପନ କରି ସେଠାରେ ଏଇ କାଠର ଉପକରଣ ପ୍ରଭୃତି ତିଆରି କରି ବିଦେଶକୁ ରପ୍ତାନୀ କରିବା ଯୋଗାଡ଼ କଲେ ବିଶେଷ ଲାଭବାନ୍ ହେବା ନିଃସନ୍ଦେହ । ବହୁଳ ପ୍ରଚାରର ଅଭାବରୁ ଏବଂ ଲୋକମାନଙ୍କ ଉଦାସୀନତା ଯୋଗୁଁ ଓଡ଼ିଶା ଗଡ଼ଜାତରେ ଥିବା ଏଇ କାଠଗୁଡ଼ିକ ସମ୍ବନ୍ଧରେ ଦେଶ ବିଦେଶର ଲୋକମାନେ ବିଶେଷ କିଛି ଜାଣିପାରୁ ନାହାନ୍ତି । ସ୍ଥାନୀୟ ଶିଳ୍ପ କାରଖାନାଗୁଡ଼ିକରେ ନାନା ପ୍ରକାର ଉପକରଣ ତିଆରି କରି ତାହାର ବହୁଳ ବିଜ୍ଞାପନ କରାଇଲେ ଗଡ଼ଜାତ ଜଙ୍ଗଲରେ ଥିବା କାଠଗୁଡ଼ିକର ସଦ୍‌ବ୍ୟବହାର ହୋଇପାରେ ।

ଗଡ଼ଜାତରେ ମିଳୁଥିବା କାଠରେ ବଭିନ୍ନ ପ୍ରକାର ଡଙ୍ଗା, ନାହା ( Boats ) ପ୍ରସ୍ତୁତ କରି ଯାଇପାରେ । ଚିଲିକା, ମହାନଦୀ ଓ ଅନ୍ୟାନ୍ୟ ଛୋଟିଆ ନଦୀରେ ଯେଉଁ 'ଏକକାଠିଆ', କୋସଲୀ, ଦଣିପୋକା, 'ଅଠଗୋଡ଼ିଆ' ପ୍ରସ୍ତୁତ ଡଙ୍ଗା ଓ ନାହା ବ୍ୟବହାର କରାଯାଏ, ଏଗୁଡ଼ିକ ସବୁ ସେଇ ଗଡ଼ଜାତ ଜଙ୍ଗଲର କାଠରେ ତିଆରି ହୁଏ । ଓଡ଼ିଶାରେ ନୌବାଣିଜ୍ୟ ଦ୍ୱାରା ବଣିକମାନେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ବାଣିଜ୍ୟ ଜିନିଷଗୁଡ଼ିକ ନେଆଣ କରିବା ପାଇଁ ପୂର୍ବେ ଅଭିର ଅନେକ ଡଙ୍ଗା ଓ ନାହା ତିଆରି କରୁଥିଲେ । ବର୍ତ୍ତମାନ ସୁଦ୍ଧା ଏଗୁଡ଼ିକ ତିଆରି କରି ତହିଁର ବହୁଳ ପ୍ରଚାର କରି ଯାଇପାରେ ।

ଭଲ ଜଙ୍ଗଲ୍ କାଠର ଶସ ( Wood-Pulp ) କାଢ଼ି ତହିଁରେ କେତେକ ପ୍ରକାର କାଗଜ ତିଆରି କରି ଯାଇପାରେ । ଏ ସମ୍ବନ୍ଧରେ ଜଣେ କେହି ସରକାରୀ କାଗଜ-ବିଶାରଦ (Paper Expert) ସରକାରଙ୍କୁ ଅନୁକୂଳ ମତ ପ୍ରକାଶ କରିଥିବାର ଜଣାଯାଏ । କାଠ-ଶସରେ ତିଆରି ହେବା କାଗଜ ଆଧୁନିକ ସମ୍ବାଦ-ପତ୍ର ଓ ଅନ୍ୟାନ୍ୟ ଛପା କାର୍ଯ୍ୟ ପାଇଁ ବ୍ୟବହାର କରି ଯାଇପାରେ । ଶସ କାଢ଼ିବା ପାଇ ସାମାନ୍ୟ ଯନ୍ତ୍ର ପାତି ( Machine ) ଦରକାର ହେଲେ ମଧ୍ୟ ସେଇ ଶିଳ୍ପାଗାରରେ ଅସଂଖ୍ୟ ଲୋକ କାର୍ଯ୍ୟ କରିପାରନ୍ତି ।

ଭଲ ଜଙ୍ଗଲ୍ କାଠରେ ଡିଆସିଲାଇ କାଠି (Match Stick) ମଧ୍ୟ ତିଆରି ହୁଏ । ସେପରି କାଠର ଅନୁସନ୍ଧାନ କରାଇ ତହିଁର ବହୁଳ କୃଷି କରିବା ସଙ୍ଗେ ସଙ୍ଗେ ସେଇ କାଠରୁ ଡିଆସିଲାଇ କାଠି କରିବାପାଇଁ କେତେକ ସ୍ଥାନରେ ଶିଳ୍ପସଦନମାନ ସ୍ଥାପନ କରାଯାଇପାରେ ।

(ଙ) **ବାଉଁଶ** (Bamboo)—ନାନା ପ୍ରକାର ଉତ୍କୃଷ୍ଟ ବାଉଁଶ ମଧ୍ୟ ଓଡ଼ିଶା ଗଡ଼-ଜାତରେ ମିଳେ । ସାଧାରଣ ଘର କାମ, ଛଚା ( ଚଲେଇ ), ଟୋକେଇ, ଛାଟ ପ୍ରଭୃତି ଗୃହୋପକରଣମାନ କରିବା ସଙ୍ଗେ ସଙ୍ଗେ ଅତି ମୋଟା ଓ ବଡ଼ ବାଉଁଶର ଭିତରେ ଥିବା ଶସରୁ ଭଲ ରକମ କାଗଜ ତିଆରି କରି ଯାଇପାରେ । ପ୍ରୋକ୍ତ ସରକାରୀ ବିଶେଷଜ୍ଞ ଏଥି ସମ୍ବନ୍ଧରେ ମଧ୍ୟ ଅନୁକୂଳ ଅଭିମତ ଦେଇଥିବାର ଜଣାଯାଏ । *

---

* Mr. Right ( Paper Expert ) ଓଡ଼ିଶାରେ ବିଶେଷ ଅନୁସନ୍ଧାନ କରି କହିଛନ୍ତି ଯେ, କେବଳ କଟକ ଆଖ ପାଖ ( ଗଡ଼ଜାତ ) ଜଙ୍ଗଲରେ ବାଉଁଶରୁ ପ୍ରାୟ ୧୦,୦୦୦ ଟନ୍ ଓଜନର କାଗଜ ମଣ୍ଡ ( Paper pulp ) ପ୍ରତିବର୍ଷ ପ୍ରସ୍ତୁତ ହୋଇପାରିବ ।"

( ୧୯୩୦ ଖ୍ରୀଷ୍ଟାବ୍ଦର ୮ମ ସଂଖ୍ୟା "ପଲ୍ଲୀମଙ୍ଗଳ" ଦେଖନ୍ତୁ । )

(ଝ) **ଖଲିପତ୍ର**—ପଳାଶ, ଶିଆଳି, ଶାଳ ଓ କଞ୍ଚଣ ପତ୍ରରେ ଭଲ ଖଲି ତିଆରି ହୁଏ । ଓଡ଼ିଶା ତଥା ଭାରତର ଅର୍ଦ୍ଧାଧିକ ଲୋକ ଖଲିପତ୍ରରେ ଭାତ ଖାନ୍ତି କିମ୍ବା ପୂଜିଆବନ୍ଧା ଓ ଅନ୍ୟାନ୍ୟ କାର୍ଯ୍ୟପାଇଁ ମଧ୍ୟ ଖଲିପତ୍ର ବ୍ୟବହାର କରନ୍ତି । ଗଡ଼ଜାତ ଜଙ୍ଗଲରେ ଏହି ଗଛ-ଗୁଡ଼ିକ ପ୍ରଚୁର ହୁଏ । ଏହି ଗଛର ପତ୍ର ସଂଗ୍ରହ କରି ସ୍ଥାନେ ସ୍ଥାନେ ଖଲିପତ୍ରର ଶିଳ୍ପାଗାର ସ୍ଥାପନ କରାଯାଇ ପାରେ କିମ୍ବା ଏହି ପତ୍ରକୁ ପ୍ରତି ଘରେ ଘରେ ନେଇ ସେଠା ଲୋକମାନଙ୍କ ଦ୍ୱାରା ଖଲି ତିଆରି କରାଯାଇ ପାରେ । ମାନ୍ଦ୍ରାଜ ଅଞ୍ଚଳରେ ସେଠାର ମଫସଲ ସ୍ତ୍ରୀମାନେ —ଧନୀ ଘରର ସ୍ତ୍ରୀ ମଧ୍ୟ—ଦିନର ୮।୧୦ ଘଣ୍ଟା ସମୟ ଖଲିସିଲାଇ ପାଇଁ କଟାଇ ମାସିକ ୨୦।୨୫ ବା ତତୋଽଧିକ ଟଙ୍କା ରୋଜଗାର କରିବା ଲେଖକ ନିଜେ ଜାଣନ୍ତି । ସମୟ ସମୟରେ ସେଠା ସ୍ତ୍ରୀମାନେ ଦିନ ଓ ରାତିରେ ମଧ୍ୟ ଏହି କାର୍ଯ୍ୟ କରିପାରନ୍ତି । ଏପରିକି ଅନ୍ଧ ଓ ଅନ୍ଧୁଣୀମାନେ ମଧ୍ୟ ଏହି କାର୍ଯ୍ୟ (ଖଲିପତ୍ର ସିଲାଇ) ସୁନ୍ଦରରୂପେ କରି ପାରନ୍ତି । ଏହା କରିବା ପାଇଁ କୌଣସି ପ୍ରକାର ଶିକ୍ଷା ବା ପୂର୍ବ କୃତିତ୍ୱ ଦରକାର ହୁଏ ନାହିଁ । ଗୋଟିଏ ଦୁଇଟା ଖଲି ସିଲାଇ କରିବା ମାତ୍ରେ ଯେ କୌଣସି ଲୋକ ଏହି କାର୍ଯ୍ୟ ଅକ୍ଳେଶରେ କରିପାରନ୍ତି । ଖଲି ପତ୍ର ସିଲାଇ କରିବା ପାଇଁ ପ୍ରଧାନ ଉପାଦାନ ପଳାଶ, ଶିଆଳି ବା କଞ୍ଚଣ ପତ୍ର ଓ ଖଡ଼ିକା (ଗୁଣ୍ଡୁରି ବା ନଡ଼ିଆ କାଠି) ଗଡ଼ଜାତରେ ଯଥେଷ୍ଟ ମିଳେ । କେବଳ ଖଡ଼ିକା ଅଭାବ ହେଲେ ଓଡ଼ିଶାର ମୋଗଲବନ୍ଦିରୁ (ବିଶେଷତଃ ପୁରୀ ଜିଲ୍ଲାରୁ) ନଡ଼ିଆ କାଠି ପ୍ରଚୁର ସଂଗ୍ରହ କରାଯାଇ ପାରେ । ଏହି କାର୍ଯ୍ୟ ଘରର ସବୁ ସ୍ତ୍ରୀ ଓ ଛୋଟ ଛୋଟ ପିଲାମାନଙ୍କ ଦ୍ୱାରା କରାଯାଇ ପାରେ ।

(ଟ) **କେନ୍ଦୁ ପତ୍ର**—କେନ୍ଦୁପତ୍ର "ବିଡ଼ି" ଓ "ପିକା" ଖୋଳ ପାଇଁ ଦରକାର ହୁଏ । ଗଛରେ ପାଚି ହଳଦିବା ପୂର୍ବରୁ ଏହି ପତ୍ରକୁ ସଂଗ୍ରହ କରି କିଛି ଦିନ ଶୁଖାଇ ନରମ କଲେ ତଦ୍ଦ୍ୱାରା ଅତି ସୁନ୍ଦର ବିଡ଼ି ତିଆରି ହୁଏ । ଗଡ଼ଜାତ ଜଙ୍ଗଲରେ କେନ୍ଦୁ ଗଛର ଅଭାବ ନାହିଁ କିମ୍ବା ଓଡ଼ିଶାବାସୀ ବିଡ଼ି ପୋଡ଼ିବାରେ ଅବହେଳା କରନ୍ତି ନାହିଁ । ଆଜି-କାଲି ଓଡ଼ିଶାର ନବ୍ୟ ଶିକ୍ଷିତ 'ବାବୁ'ଙ୍କଠାରୁ ଆରମ୍ଭ କରି ମଫସଲର ନିତାନ୍ତ ମୂର୍ଖ ଓ ଗରିବ ଲୋକ ମଧ୍ୟ ବିଡ଼ିର ସଦ୍‌ବ୍ୟବହାର କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ପ୍ରତି ବର୍ଷ ଓଡ଼ିଶାକୁ ହଜାର ହଜାର ଟଙ୍କାର ବିଡ଼ି କଲିକତା, ଲକ୍ଷ୍ନୌ ଓ ମାନ୍ଦ୍ରାଜରୁ ଆମଦାନୀ ହୁଏ । ବିଡ଼ି ଖାଇଲେ ସ୍ୱାସ୍ଥ୍ୟ ନଷ୍ଟ ହେଉଥିବାର ଜାଣି ସୁଦ୍ଧା ଆମ ଦେଶର ଏହି ନବ୍ୟ ରୁଚିସମ୍ପନ୍ନ ବ୍ୟକ୍ତିମାନେ ବିଡ଼ିର ପ୍ରଧାନ ଉପାସକ ଥିବାର ଦେଖାଯାନ୍ତି । ଓଡ଼ିଶାର ପ୍ରତ୍ୟେକ ପଲ୍ଲିରେ

ଅଜକାଲି ବିଡି ବିକି ହୁଏ; କିନ୍ତୁ ଗଡଜାତର କେନ୍ଦୁପତ୍ରଗୁଡିକ ବିଦେଶୀ ମହାଜନମାନଙ୍କୁ ନିଲାମ କରାଯାଇ ଥିବାରୁ ଏହି ବ୍ୟବସାୟ ( ବିଡି ତିଆରି ) ଆମ ଦେଶବାସୀଙ୍କ ହାତରେ ନାହିଁ । ଆମ ଦେଶରୁ କେନ୍ଦୁପତ୍ର ନେଇ କଲିକତାବାସୀ ବିଡି ତିଆରି କରନ୍ତି; ପୁଣି ସେହି ବିଡି ଏଠାକୁ ରପ୍ତାନୀ କରି ଲାଭବାନ୍ ହୁଅନ୍ତି । ଏହି ୨।୪ ବର୍ଷ ହେଲା ଭାରତରେ "ସ୍ୱଦେଶୀ" ପ୍ରଚାର ବଡ ଜୋରରେ ଚାଲିଥିବାରୁ କଲିକତା ଅଧିବାସୀମାନେ ବିଦେଶୀ ସିଗାରେଟ୍ ଓ ପିକା ଛାଡି ଦେଇ କେବଳ ସ୍ୱଦେଶୀ ବିଡି ବ୍ୟବହାର କରନ୍ତି । ଶୁଣାଯାଏ ଯେଉଁ କଲିକତାବାସୀ ବର୍ଷକୁ ୮।୧୦ ଲକ୍ଷ ଟଙ୍କାର ବିଦେଶୀ ସିଗାରେଟ୍ ପୋଡୁଥିଲେ, ଆଜି ସେଠାକୁ ମୋଟେ ୨।୩ ଲକ୍ଷ ଟଙ୍କାର ସିଗାରେଟ୍ ଆମଦାନୀ ହୁଏ—ପୁଣି ବିଦେଶୀ ସିଗାରେଟ୍ ବଦଳରେ ସେଠାର ଲୋକମାନେ କେବଳ ସ୍ୱଦେଶୀ ବିଡି ପୋଡନ୍ତି । ଏହି ସ୍ୱଦେଶୀ ପ୍ରଚାର ଫଳରୁ ସେଠାର ( କଲିକତାର ) ବ୍ୟବସାୟୀମାନେ ପ୍ରଚୁର ପରିମାଣରେ ବିଡି ତିଆରି କରୁଥିବାର ଓ କେବଳ ସେହି ବ୍ୟବସାୟ ସେଠା ଅକର୍ମୀଙ୍କ ସଂଖ୍ୟା କମାଇ ଦେଇଥିବାର କଲିକତାର ପ୍ରଧାନ ନେତା ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ ଡଙ୍କର ଏକାଧିକ ବକ୍ତୃତାରେ ଘୋଷଣା କରନ୍ତି । * ଆମ ଗଡଜାତରୁ ଯାଉଥିବା କେନ୍ଦୁପତ୍ରର ସଦ୍‌ବ୍ୟବହାର କରି କଲିକତା ଅଧିବାସୀ ବିଶେଷ ଲାଭବାନ୍ ହେବା ସଙ୍ଗେ ସଙ୍ଗେ ସେଠାର ଅକର୍ମୀଙ୍କ ସଂଖ୍ୟା କମାଉଥିବା ସତ୍ତ୍ୱେ ଆମ ଦେଶରେ ସେହି ବ୍ୟବସାୟର କୁଟୀର ଶିଳ୍ପାଗାରମାନ ସ୍ଥାପନ କଲେ ଏଠାର ଅକର୍ମୀଙ୍କ ସଂଖ୍ୟା ବହୁ ପରିମାଣରେ ଯେ କମିଯିବ, ସନ୍ଦେହ ନାହିଁ । କେନ୍ଦୁପତ୍ର ସଂଗ୍ରହ କରି ତଦ୍ଦ୍ୱାରା ବିଡି ତିଆରି କରିବା ପାଇଁ କୌଣସି ପ୍ରକାର ବିଶେଷ ଶିକ୍ଷା ବା ଜ୍ଞାନ ଦରକାର ନାହିଁ । ଏହି କାର୍ଯ୍ୟ ଯେ କୌଣସି ଲୋକ—ଶିକ୍ଷିତ କିମ୍ବା ଅଶିକ୍ଷିତ—ଅକ୍ଳେଶରେ କରିପାରନ୍ତି । ଅତଏବ ଗଡଜାତ ଓ ଓଡିଶାର ବିଭିନ୍ନ ସ୍ଥାନରେ ବିଡି ତିଆରି କରିବା ପାଇଁ ଶିଳ୍ପାଗାରମାନ ସ୍ଥାପନ କରିବାକୁ ହେବ ।

(ଠ) **ମହୁ ଓ ମହଣ**—ମହୁ (Honey) ଗୋଟିଏ ଉତ୍କୃଷ୍ଟ ଓ ପୁଷ୍ଟିକର ଖାଦ୍ୟ । ଦୁର୍ବଳ ଓ ରୋଗୀମାନଙ୍କ ପାଇଁ ପକ୍ଷେ ତ ମହୁଠାରୁ ସାରବାନ୍ ଖାଦ୍ୟ ଆଉ ନାହିଁ । ବିଭିନ୍ନ ପ୍ରକାର ଔଷଧରେ ମଧ୍ୟ ମହୁ ବ୍ୟବହୃତ ହୁଏ । ପୁଷ୍ପରସରୁ ମହୁମାଛି ଦ୍ୱାରା ମହୁ ତିଆରି

*Vide, "Biri manufacture and the Bengalis" by Dr. Sir. P. C. Ray in his "Life and Experiences of a Bengali chemist" PP. 459-461.

ହୁଏ । ଗଡଜାତର ଜଙ୍ଗଲଗୁଡ଼କରେ ମହୁ ମିଳେ ଓ ମହୁମାଛିର ଘରରୁ ମହଣ ପ୍ରସ୍ତୁତ ହୁଏ । ମହଣ ବିଭିନ୍ନ ପ୍ରକାର ଶିଳ୍ପ କାର୍ଯ୍ୟ ପାଇଁ ଦରକାର ହୁଏ । ୟୁରୋପ ଓ ଆମେରିକା ପ୍ରଭୃତି ସୁସଭ୍ୟ ଦେଶରେ ମହୁର ଆଦର ଏତେ ଅସ୍ୱାଭାବିକରୂପେ ବଢ଼ିଛି ଯେ, ସେଠା ଅଧିବାସୀମାନେ ପ୍ରାକୃତିକ ପ୍ରଣାଳୀରେ ପ୍ରଚୁର ମହୁ ପାଇବାର ସୁବିଧା ନ ପାଇ କୃତ୍ରିମ ଉପାୟରେ ( By artificial means ) ମହୁ ତିଆରି କରନ୍ତି । ଏପରି ଅବସ୍ଥାରେ ଗଡଜାତ ଜଙ୍ଗଲରୁ ପ୍ରଚୁର ମହୁ ଆଦାୟ କରି ଦେଶ ବିଦେଶକୁ ରପ୍ତାନୀ କରି ଧନୋପାର୍ଜନ କରାଯାଇ ପାରେ ।

ଆଜିକାଲି ମହୁମାଛିକୁ ପୋଷି ତଦ୍ୱାରା ଅଧିକ ପରିମାଣ ମହୁ ଆଦାୟ କରାଯାଇ-ପାରେ । ଓଡ଼ିଶାର ଜଣେ ଦୁଇ ଜଣ ଏହି ଶିଳ୍ପ ଦ୍ୱାରା ବେଶ୍ ଲାଭବାନ୍ ହେବାର ଶୁଣାଯାଏ । * ୟୁରୋପର ଅନେକ ଦେଶରେ ଏପରି ଶିଳ୍ପ ଦ୍ୱାରା ଭଲ ମହୁ ଆଦାୟ ହୁଏ । ମହୁମାଛି ପ୍ରକୃତିରେ ଦୁଷ୍ଟ ବା ଦଂଶନପ୍ରିୟ ନୁହେଁ । କେବଳ ତା ଘରକୁ ଯେଉଁମାନେ ହଲାନ୍ତି ବା ଭାଙ୍ଗିବା ଚେଷ୍ଟା କରନ୍ତି, ସେମାନଙ୍କୁ ମହୁମାଛି ଦଂଶନ କରେ । ଦଂଶନ ଦ୍ୱାରା ତାର ପ୍ରତିଶୋଧ ସେ ନିଏ । ଯେଉଁମାନେ ଅତି ସାବଧାନତା ସହ ଏହି ମାଛିଗୁଡ଼ିକୁ ପୋଷି, ଖାଦ୍ୟ ଦେଇ, ତଦ୍ୱାରା ମହୁ ଓ ମହଣ ଆଦାୟ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କର ଏଇ ଶିଳ୍ପକୁ ସ୍ଥାନେ ସ୍ଥାନେ ସ୍ଥାପନ କରିବା ଉଚିତ । ମାଛି ପୋଷି ମହୁ ଆଦାୟ କଲେ ଅତି ଉତ୍କୃଷ୍ଟ ମହୁ ଆଦାୟ ହୁଏ ଓ ତା ଅତି ମୂଲ୍ୟବାନ୍ ହୁଏ ।

**(ଡ) ମଦ**—ଆମ ଗଡଜାତ ରାଜ୍ୟଗୁଡ଼ିକରେ ମହୁଲ, ଖଜୁରି, ତାଳ, ସୋଲପ ଓ କଦମ୍ବ ପ୍ରଭୃତି ଗଛ ମଧ୍ୟ ପ୍ରଚୁର ମିଳେ । ଏଇ ଗଛଗୁଡ଼ିକର ରସରୁ ଭଲ ରକମ ମଦ ତିଆରି ହୁଏ । ଏହି କେତେକ ମଦ ବ୍ୟତୀତ 'ହାଣ୍ଡିଆ' ମଦ ମଧ୍ୟ ଗଡ଼ଜାତର ଆଦମ-ବାସୀମାନେ ଖାଆନ୍ତି । ବର୍ତ୍ତମାନ ସମଗ୍ର ଭାରତରେ "ନିଶା ନିବାରଣ" (Prohibition)

---

* କଟକ ଜିଲ୍ଲା ଜଗତ୍‌ସିଂହପୁର ନିକଟବର୍ତ୍ତୀ 'ଅଣଙ୍ଗିଆ'ରେ ଶ୍ରୀଯୁକ୍ତ ବିହାରୀ ଲାଲଙ୍କ 'କୁଟିର-ଶିଳ୍ପାଗାର'ରେ ଅନ୍ୟାନ୍ୟ ଶିଳ୍ପ ସଙ୍ଗେ ମହୁମାଛି ପୋଷି ତହିଁରୁ ମହୁ ଆଦାୟ କରାଯାଉଛି । ଯେଉଁ-ମାନେ ଏହି ଶିଳ୍ପ ଶିକ୍ଷା କରିବାପାଇଁ ଇଚ୍ଛା କରନ୍ତି, ସେମାନେ ସେଠାକୁ ଗଲେ ଅକେଶରେ ତା ଶିକ୍ଷା କରିପାରନ୍ତି ।

ପ୍ରଚଳିତ ହେଉଥିବା ସମୟରେ ଓଡ଼ିଶା ଗଡ଼ଜାତରେ ମଦ ତିଆରି କରି ଧନୋପାର୍ଜନ କରିବା ସୁବିଧା ଘଟିବ ନାହିଁ । ପୁଣି ଓଡ଼ିଶା ଗଡ଼ଜାତରେ ମଦ ତିଆରି ହେଲେ ଓଡ଼ିଶା ଓ ଗଡ଼ଜାତର ଗରିବ ଓ ଅକର୍ମଣ୍ୟ ମଫସଲବାସୀଙ୍କ ମଧ୍ୟରୁ ଅନେକ ଲୋକ ନିଶାଖୋର ହେବା ଅସମ୍ଭବ ନୁହେଁ । ଯଦି ସମସ୍ତ ବାଧାବିଘ୍ନ ସତ୍ତ୍ୱେ କୌଣସି ବୈଦେଶିକ ଲୋକମାନେ ଏହି ଦେଶୀ ମଦକୁ ଆଗ୍ରହ କରନ୍ତି ଓ ତଦ୍ଦ୍ୱାରା ଯଦି ବିଶେଷ ଲାଭବାନ୍ ହେବା ଆଶା କରାଯାଏ, ତେବେ ଗଡ଼ଜାତର ଏହି କେତୋଟି ଗଛରୁ ମଦ ଆଦାୟ କରି ସେହି ମଦ ବିଦେଶକୁ ରପ୍ତାନି କରିବା ଯୋଗାଡ଼ କଲେ ଏହି ବ୍ୟବସାୟ ଦ୍ୱାରା ଅନେକ ଲୋକଙ୍କର ଜୀବିକାର୍ଜନ ହୋଇପାରେ । ଏହି କାର୍ଯ୍ୟ କରିବାପାଇଁ ଅନେକ ନିମ୍ନ ଶ୍ରେଣୀର ଲୋକ ନିଯୁକ୍ତ କରାଯାଇ ପାରନ୍ତି । [ କିନ୍ତୁ ସାବଧାନ ହେବାକୁ ହେବ ଯେପରି କୌଣସି କର୍ମୀ ଏଠାରେ ପ୍ରସ୍ତୁତ ହେବା ମଦ ଖାଇ 'ମଦଖୋର' ନ ହୁଅନ୍ତି । ମଦଖୋରମାନେ ଦେଶର ମଙ୍ଗଳ କରିବା ତେଣେ ଥାଉ, ଦେଶରେ ଲୁଣ୍ଠନ, ନରହତ୍ୟା ଓ ଚୋରି ପ୍ରଭୃତି ଅସତ୍ କାର୍ଯ୍ୟ କରି ନିଜକୁ ଓ ନିଜ ଦେଶକୁ କଳଙ୍କିତ କରନ୍ତି । ]

( ଚ ) **ଚେର, ଫଳ, ମୂଳ ଓ ଛେଲି ସଂଗ୍ରହ**—ଗଡ଼ଜାତ ଜଙ୍ଗଲଗୁଡ଼ିକରେ ବିଭିନ୍ନ ପ୍ରକାର ଔଷଧ ଓ ରଙ୍ଗ ଦେବା ଚେର, ମୂଳ ଓ ଛେଲି ପ୍ରଭୃତି ମିଳେ । ସୁନାରି, ହରିଡ଼ା, ବହୁଡ଼ା, କମଳା ଗୁଣ୍ଡି, କରଞ୍ଜ ଛେଲି, ଅଳୁ ଛେଲି ଏବଂ କୋଚିଲା, ହରିଡ଼ା, ବାହାଡ଼ା, ଅଁଳା, କୁସୁମ, ଘଣ୍ଟୁଳି ପ୍ରଭୃତି ଛେଲି ଓ ଫଳ ମୂଳ ମିଳେ । ଏଥିମଧ୍ୟରୁ ଅନେକ ଛେଲି ଔଷଧ ପାଇଁ ଏବଂ ବିଭିନ୍ନ ପ୍ରକାର ରଙ୍ଗ ଦେବାପାଇଁ ବ୍ୟବହାର କରାଯାଇ-ଥାଏ । ଭାରତରେ ଆଜିକାଲି ଯେପରି ବିଦେଶୀ ରଙ୍ଗ ଓ ବିଦେଶୀ ଔଷଧ ବନ୍ଦ କରି କେବଳ ଦେଶୀ ରଙ୍ଗ ଓ ଔଷଧ ବ୍ୟବହାର କରିବା ପାଇଁ ଲୋକମାନଙ୍କର ଗୋଟିଏ ପ୍ରବଳ ଇଚ୍ଛା ଜାତ ହୋଇଛି ଏବଂ ଆମ ଦେଶର ବୈଦ୍ୟ, କବିରାଜ ଓ ହାକିମମାନେ ଯେପରି ଅସଂଖ୍ୟ ଔଷଧ, ପାଚନ, ମୋଦକ ଓ ଲେହ ପ୍ରଭୃତି କେବଳ ଚେର ମୂଳ ଓ ଫଳ ପୁଷ୍ପରେ ତିଆରି କରନ୍ତି, ଏପରି ଅବସ୍ଥାରେ ଗଡ଼ଜାତ ଜଙ୍ଗଲଗୁଡ଼ିକରୁ ଏହି ପଦାର୍ଥଗୁଡ଼ିକୁ ସଂଗ୍ରହ କରି, ପରିଷ୍କୃତ କରି ଓ ଆବଶ୍ୟକତା ଅନୁସାରେ ଚୂର୍ଣ୍ଣ, ଦ୍ରାବକ, ଲେହ କିମ୍ବା ବଟିକା ପ୍ରଭୃତି ତିଆରି କରିବାପାଇଁ ସ୍ଥାନେ ସ୍ଥାନେ ଶିଳ୍ପାଗାରମାନ ସ୍ଥାପନ କରିବାକୁ ହେବ । ଔଷଧ ପାଇଁ ଦରକାର ହେବା ଚେର ମୂଳ ପ୍ରଭୃତି ଯେପରି ତାହାର ସଦ୍‌ବ୍ୟବହାର କରିବାପାଇଁ ବିଶେଷଜ୍ଞମାନଙ୍କୁ ମଧ୍ୟ ରଖିବାକୁ ହେବ । ଅନେକ ବୈଦ୍ୟ, କବିରାଜ ଓ ଡାକ୍ତରମାନେ ଆଜିକାଲି କୌଣସି ଚାକିରି ନ ପାଇ ବସି ରହିଛନ୍ତି । ସେମାନଙ୍କୁ ଏ-

କାର୍ଯ୍ୟରେ ନିଯୁକ୍ତ କଲେ ସେମାନଙ୍କର ସମୟର ସଦ୍‌ବ୍ୟବହାର ହେବା ସଙ୍ଗେ ଦେଶବାସୀଙ୍କ ପାଇଁ ଉତ୍କୃଷ୍ଟ ଦେଶୀ ଚେର ମୂଳ ଯୋଗାଇ ତଦ୍ଦ୍ୱାରା ବିଶେଷ ଧନ ସଂଗ୍ରହ କରାଯାଇପାରିବ ।

ପୂର୍ବେ କୁହାଯିବା 'ଚମଡ଼ା' ବ୍ୟବସାୟ ପାଇଁ ପ୍ରଚୁର ପରିମାଣ ଅଛୁ, ସୁନାରି ଓ ହିଞ୍ଜଳ ପ୍ରଭୃତି ଗଛର ଛେଲି ଦରକାର । ଏହି ଛେଲିର କଷା ପାଣିରେ ଚମଡ଼ାକୁ ବିଭୁରାଇ ସଫା (Tanning) କରାଯାଏ । ଏହି ଛେଲିଗୁଡ଼ିକୁ ଓଡ଼ିଶା ଗଡ଼ଜାତରେ ସଂଗ୍ରହ କରି ଯାଇପାରେ । ତଦ୍ଦ୍ୱାରା ଛେଲିର ସଦ୍‌ବ୍ୟବହାର ହେବା ସଙ୍ଗେ ସଙ୍ଗେ ଚମଡ଼ାଗୁଡ଼ିକୁ ସଫା କରି ଯୋତା, ବ୍ୟାଗ ପ୍ରଭୃତି କରାଯାଇପାରେ ।

ଅନ୍ୟାନ୍ୟ ଔଷଧ ମଞ୍ଜି ମଧ୍ୟରୁ କୋଚିଲା ବା କୁଚିମଞ୍ଜି (Nuxvomica) କବିରାଜ ଓ ଡାକ୍ତର ଔଷଧରେ ଗୋଟିଏ ପ୍ରଧାନ ଔଷଧ ହୁଏ । 'ହୋମିଓପାଥି' ବୈଦ୍ୟ (Homeopathy Doctor) ମାନେ ମଧ୍ୟ ଏହାକୁ ବିଶେଷରୂପେ ବ୍ୟବହାର କରନ୍ତି । ଏହି ମଞ୍ଜିରୁ ଦ୍ରାବକ (Tincture) କାଢିବାପାଇଁ କେତୋଟି ଯନ୍ତ୍ରର ସାହାଯ୍ୟ ନେବାକୁ ହେବ । ଭାରତରୁ ପ୍ରତି ବର୍ଷ ଲକ୍ଷ ଲକ୍ଷ ଟଙ୍କାର କୋଚିଲା ମଞ୍ଜି ଜର୍ମାନି, ଇଂଲଣ୍ଡ ଓ ଅମେରିକାକୁ ରପ୍ତାନୀ ହୁଏ । ସେଠାରେ ବୈଦ୍ୟୁତିକ ସାହାଯ୍ୟରେ (By means of electricity) ଏହି ମଞ୍ଜିରୁ ଔଷଧ ବାହାର କରାଯାଏ ଓ ପରେ ଏଠାକୁ ରପ୍ତାନୀ ହୁଏ । ଆମ ଦେଶର ପ୍ରତ୍ୟେକ ଡାକ୍ତରଖାନାରେ ଏହି ମଞ୍ଜିର ଔଷଧ ବ୍ୟବହାର କରାଯାଏ । ଏହା ଗୋଟିଏ ଅତି ଉତ୍କୃଷ୍ଟ ପୁଷ୍ଟିକର ଔଷଧ (Tonic) । ଅତି ବିଷାକ୍ତ ହେଲେହେଁ ପରିମିତ ପରିମାଣରେ ବ୍ୟବହାର କଲେ ଏହି ଔଷଧ ଅଜୀର୍ଣ୍ଣ ଭଲ କରେ ଓ ଦେହକୁ ହୃଷ୍ଟପୁଷ୍ଟ କରେ । ଆଜିକାଲି ବିଦ୍ୟୁତ୍ ଶକ୍ତିର ପ୍ରସାର ଓଡ଼ିଶା ଓ ଓଡ଼ିଶା ଗଡ଼ଜାତକୁ ବ୍ୟାପିଥିବା ସମୟରେ ଆମ ଦେଶର ଏହି ଜାତୀୟ ସମ୍ପତ୍ତି ବିଦେଶକୁ ପଠାଇ ସେଠାରୁ ପୁଣି ମଗାଇବା ସୁନ୍ଦର ଦଶିବ ନାହିଁ; ଏଣୁ କୋଚିଲା ମଞ୍ଜିରୁ ଔଷଧ ତିଆରି କରିବାପାଇଁ ଗଡ଼ଜାତର କେତେକ ସ୍ଥାନରେ ଗୋଟିଏ ଦୋଟି ଶିଳ୍ପସଦନ ସ୍ଥାପନ କରିବାକୁ ହେବ । ତଦ୍ଦ୍ୱାରା ଆମ ଦେଶର ଔଷଧ ଏଠାରେ ପ୍ରସ୍ତୁତ ହେବ ଏବଂ ଆମ ଦେଶର ଲୋକମାନେ ସେହି ସଦନରେ କାର୍ଯ୍ୟ କରି ଜୀବିକାର୍ଜନ କରିବେ ।

ଗଡଜାତ ଜଙ୍ଗଲରେ ପ୍ରଚୁର ହରଡ଼ା ମିଳେ । ହରଡ଼ା ତ୍ରିଫଳା ସଙ୍ଗେ ମିଶି (ହରଡ଼ା, ବାହାଡ଼ା ଓ ଅଁଳା) ବୈଦ୍ୟମାନଙ୍କର ଔଷଧରେ ବ୍ୟବହାର ହୁଏ । କିନ୍ତୁ ହରଡ଼ାରସରୁ ଅତି ଉତ୍କୃଷ୍ଟ କାଳି ତିଆରି ହୁଏ । ହରଡ଼ାକୁ ପାଣିରେ ସିଝାଇ କେତେ ଦିନ ରଖିବା ପରେ ତହିଁରେ ଲୁହାଗୁଣ୍ଡ ପ୍ରଭୃତି ଦେଇ ତାକୁ ସଫା କଲେ ଭଲ ରକମ "କାଳି"

( Ink ) ପ୍ରସ୍ତୁତ ହୁଏ । ଆମ ଦେଶରୁ ରପ୍ତାନୀ ହେବା ହରଡ଼ା କଲିକତା ଓ ମାନ୍ଦ୍ରାଜ ପ୍ରଭୃତି ସ୍ଥାନରେ "କାଳଗୁଣ୍ଡ" ଓ "କାଳି ବଟିକା" ରୂପେ ପରିବର୍ତ୍ତିତ ହୋଇ ପୁଣି ଆମ ଦେଶକୁ ଆସି ବିକ୍ରି ହୁଏ । ଆଜିକାଲି ଦେଶରେ ସ୍କୁଲ କଲେଜ ଓ ଛାତ୍ରଙ୍କ ସଂଖ୍ୟା ଯେପରି ବୃଦ୍ଧି ହେଉଛି, କାଳି ଓ ଦୁଆତର ସଂଖ୍ୟା ମଧ୍ୟ ସେହିପରି ବୃଦ୍ଧି ହେଉଛି । ଯେଉଁମାନେ ପାଶ୍ଚାତ୍ୟ ମୋହରେ ପଡ଼ି ଆମ ଦେଶର ଦେଶୀ କଲମ, କାଠ କଲମ ବା ପର କଲମ ଛାଡ଼ି କେବଳ ଝର କଲମ ( Fountain Pen ) ରେ ଲେଖା ଲେଖି କରନ୍ତି, ସେମାନେ ମଧ୍ୟ 'କାଳି' ବ୍ୟବହାର କରିବାକୁ ବାଧ୍ୟ ହୁଅନ୍ତି । ତେବେ ସେମାନେ ଏଠା ପ୍ରସ୍ତୁତ କାଳି ବ୍ୟବହାର ନ କରି ସେହି ବିଦେଶରେ ପ୍ରସ୍ତୁତ କାଳି ବ୍ୟବହାର କରନ୍ତି । ସେହି କାଳି ମଧ୍ୟ ଆମ ଦେଶର ଏହି 'ହରଡ଼ା'ରେ ତିଆରି ହୋଇପାରେ ।

ବର୍ତ୍ତମାନ ଦେଶରେ ଶିକ୍ଷିତ ଯୁବକ ଓ ବାବୁମାନଙ୍କ ମଧ୍ୟରେ ଦେଶପ୍ରୀତି ଜାତ ହେଉଥିବା ଯୋଗୁ ଗଡ଼ଜାତରେ ମିଳୁଥିବା ଏହି ହରିଡ଼ାକୁ ବିଦେଶ ନ ପଠାଇ ଏଠାରେ କେତୋଟି ଶିଳ୍ପସଦନ ସ୍ଥାପନ କରି 'କାଳଗୁଣ୍ଡ' କିମ୍ବା କାଳିପାଣି ତିଆରି କରାଇବାକୁ ହେବ । ଏହି କାର୍ଯ୍ୟ ଶିକ୍ଷା କରିବାପାଇଁ ଅଳ୍ପ କେତେ ଜଣଙ୍କୁ କଲିକତା ବା ମାନ୍ଦ୍ରାଜ ପ୍ରଭୃତି ସ୍ଥାନକୁ ପଠାଇ ସେମାନେ ଫେରିବା ମାତ୍ରେ ଏହି ବ୍ୟବସାୟ ଖୋଲିବାକୁ ହେବ । ଏହି ବ୍ୟବସାୟ ଦ୍ୱାରା ଅନେକ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଯୁବକ ନିଜନିଜର ପେଟ ପୋଷି ପାରନ୍ତି । ତଦ୍ଦ୍ୱାରା ସେମାନଙ୍କ ମଧ୍ୟରୁ ଅକର୍ମୀଙ୍କ ସଂଖ୍ୟା କେତେକ ପରିମାଣ କମ୍ ହୋଇପାରେ ।

(ଣ) **ତୂଳା** —ଓଡ଼ିଶା ଗଡ଼ଜାତରେ 'ଶିମିଳି' ଓ 'ଅରଖ' ତୂଳା ମଧ୍ୟ ମିଳେ । ଆଜିକାଲି କଳକାରଖାନା ଓ ଡାକ୍ତରଖାନାଗୁଡ଼ିକରେ ପ୍ରଚୁର ତୂଳା ଖର୍ଚ୍ଚ ହୁଏ । କେବଳ ରୋଗୀମାନଙ୍କର ଘା ଧୋଇବା ପାଇଁ ଭାରତକୁ ପ୍ରତି ବର୍ଷ କୋଟି କୋଟି ଟଙ୍କାର ତୂଳା ବିଦେଶରୁ ଆସେ । ୟୁରୋପ ପ୍ରଭୃତି ଦେଶରେ ଆଦୌ ତୂଳା ମିଳେ ନାହିଁ । କେବଳ ଆମ ଦେଶରୁ ତୂଳା ନେଇ ସେମାନେ ଯନ୍ତ୍ର ସାହାଯ୍ୟରେ ସେଗୁଡ଼ିକୁ ସଫା ଓ ଚିକ୍କଣ କରି ପୁଣି ଏଠାକୁ ପଠାନ୍ତି । ଯେଉଁମାନେ ଏ ଦେଶରେ କଳକାରଖାନାଗୁଡ଼ିକରେ କିମ୍ବା ରେଳ ଇଞ୍ଜିନରେ କାମ କରନ୍ତି, ସେମାନେ ହାତରେ ଧରିବା ପାଇଁ ମେଞ୍ଚା ମେଞ୍ଚା ତୂଳା ବ୍ୟବହାର କରନ୍ତି । ଯଥା ବାଦ ଶେଯ, ତକିଆ ଓ ରୋଗୀମାନଙ୍କ ପାଇଁ ଛୋଟ ଛୋଟ ଗଦିଣା ତିଆରି କରିବା ପାଇଁ ଏହି ଧରଣର ତୂଳା ବ୍ୟବହାର କରାଯାଏ । ଆମ ଦେଶରେ ଅଧିକ-ସଂଖ୍ୟକ କଳ କାରଖାନା କିମ୍ବା ଡାକ୍ତରଖାନା ନ ଥିଲେ ସୁଦ୍ଧା ଗଡ଼ଜାତରେ ମିଳୁଥିବା ତୂଳାକୁ ସଂଗ୍ରହ କରି ସାମାନ୍ୟ ପରିଷ୍କାର କରିଦେଲେ ସେଗୁଡ଼ିକୁ ଭାରତର ଅନ୍ୟାନ୍ୟ ସ୍ଥାନକୁ

ରପ୍ତାନି କରାଯାଇପାରେ । ଏହି ସଂଗ୍ରହ ଓ ସଫା କରିବାପାଇଁ ଏ ଦେଶର ଅନେକ ଅକର୍ମୀ ନିଯୁକ୍ତ ହୋଇପାରନ୍ତି ।

ଶିମିଳି ଓ ଅରଖ ବ୍ୟତୀତ ଅନ୍ୟ କେତେକ ପ୍ରକାର ବନ୍ୟ ଫଳରୁ ମଧ୍ୟ ଏକପ୍ରକାର ତୁଳା ଅଦାୟ କରାଯାଇ ପାରେ । ଏହି ତୁଳାରେ ଗଦି ଓ ଗାଈଗୋରୁ, କୁକୁର ପ୍ରଭୃତି ଜୀବମାନଙ୍କ ପାଇଁ ଶୀତ 'ପୋଷାକ' ବା ଘୋଡଣୀ ତିଆରି କରାଯାଇ ପାରେ । ଉତ୍ତର-ଭାରତର ଶୀତପ୍ରଧାନ ପ୍ରଦେଶଗୁଡ଼ିକରେ ଏବଂ ପାଶ୍ଚାତ୍ୟ ଦେଶରେ ଏପରି ପୋଷାକ ସେଠା ଅଧିବାସୀମାନେ ବିଶେଷ ରୂପେ ବ୍ୟବହାର କରନ୍ତି । ବିଶେଷ ଶିଳ୍ପ ନୈପୁଣ୍ୟ ଦେଖାଇଲେ ଏ ରକମ ପୋଷାକଗୁଡ଼ିକ ଯେ ଦେଶ ବିଦେଶରେ ବିକ୍ରୀ ହୋଇପାରିବ, ସନ୍ଦେହ ନାହିଁ ।

ଓଡ଼ିଶା ଗଡ଼ଜାତରେ ମିଳୁଥିବା ବିଭିନ୍ନ ପ୍ରକାର କଞ୍ଚାମାଲର ବିଶେଷ ପରିଚୟ ଓ ସେଗୁଡ଼ିକୁ ନେଇ କି କି ପ୍ରକାର ଶିଳ୍ପ କରାଯାଇପାରେ, ସେ କଥା ପୂର୍ବେ ବର୍ଣ୍ଣିତ ହେଲା । ବର୍ତ୍ତମାନ ଓଡ଼ିଶା ଗଡ଼ଜାତରେ ଥିବା ଖନିଜ ପଦାର୍ଥ ( Mineral Products ) ର କେତେକ ପରିଚୟ ଓ ସେଗୁଡ଼ିକର ସଦ୍‌ବ୍ୟବହାର କିପରି କରାଯାଇ ପାରେ, ସେ କଥା ଏଠାରେ ଉଲ୍ଲେଖ କରିବୁ । ଅବଶ୍ୟ, ଅଧିକାଂଶ ଖନିଜ ପଦାର୍ଥର ସଦ୍‌ବ୍ୟବହାର କେବଳ ଯନ୍ତ୍ର ସାହାଯ୍ୟରେ କରି ଯାଇଥାଏ । ସେପରି ଯନ୍ତ୍ରର ସୁବିଧା ଗଡ଼ଜାତରେ ନ ଥିବାରୁ ଏହି ପଦାର୍ଥଗୁଡ଼ିକୁ ସ୍ଥାନୀୟ ରାଜାମାନେ କୌଣସି ଶିଳ୍ପରେ ନ ଲଗାଇ କେବଳ ବିଦେଶୀ-ମାନଙ୍କୁ ନିଲାମ କରି ଦିଅନ୍ତି । କିନ୍ତୁ ଆଜିକାଲି ଦେଶରେ ଅକର୍ମୀଙ୍କ ସଂଖ୍ୟା ଓ ଆର୍ଥିକ ଦୁଃସ୍ଥିତି ଯେପରି ଦିନୁଦିନ ବୃଦ୍ଧି ପାଉଛି, ଏପରି ଅବସ୍ଥାରେ ( ଗୋଟିଏ ଦିଓଟି ଯନ୍ତ୍ରର ସାହାଯ୍ୟ ନେଲେ ସୁଦ୍ଧା ) ଆମ ଦେଶର ଅକର୍ମୀମାନଙ୍କୁ କାର୍ଯ୍ୟ ଯୋଗାଇବା ପାଇଁ ଏବଂ ଦେଶର ଆର୍ଥିକ ଦୁଃସ୍ଥିତି ବା 'ଅନ୍ନକଷ୍ଟ' ଦୂର କରିବାପାଇଁ ଏହି ଖନିଜ ଜିନିଷଗୁଡ଼ିକୁ ବିଦେଶକୁ ରପ୍ତାନି ନ କରି ଏଠାରେ ନାନା ପ୍ରକାର ଶିଳ୍ପାଗାରମାନ ସ୍ଥାପନ କରିବାକୁ ହେବ । ତଦ୍ଦ୍ୱାରା ଦେଶର ଜାତୀୟ ସମ୍ପଦ ବଢ଼ିବ ଓ ଦେଶରେ ସ୍ୱଦେଶୀ ଜିନିଷର ବ୍ୟବହାର ମଧ୍ୟ ବଢ଼ିବ । ନିମ୍ନରେ କେତେକ ପ୍ରକାର ଖନିଜ ଦ୍ରବ୍ୟର ପରିଚୟ ଓ ସେଗୁଡ଼ିକ କି କି ଶିଳ୍ପରେ ଲାଗିପାରେ, ତା କୁହାଯିବ ।

(ତ) ପଥରକୋଇଲା ( Coal )—ଆଜିକାଲି କେବଳ ତାଳଚେରରେ ଏହି 'ଖନିଜ ପଦାର୍ଥ' ଅଦାୟ ହୁଏ । କିନ୍ତୁ ଓଡ଼ିଶାର ଆହୁରି କେତୋଟି ଗଡ଼ଜାତରେ ମଧ୍ୟ ଏହା ମିଳେ । କେବଳ ଜଙ୍ଗଲ ହେବା ଭୟରେ ସ୍ଥାନୀୟ ଅଧିବାସୀ କେହି ଏହାକୁ ସଂଗ୍ରହ

କରନ୍ତି ନାହିଁ । ରେଲ ଇଞ୍ଜିନ ଓ ଆଜ କେତୋଟି ଯନ୍ତ୍ର ଚଳିବା ନିମନ୍ତେ ପଥରକୋଇଲା ବ୍ୟବହାର କରାଯାଏ; କିନ୍ତୁ ବର୍ତ୍ତମାନ ସେପରି କୌଣସି ଯନ୍ତ୍ର କଥା ଆଲୋଚନା କରିବା ଆମର ଉଦ୍ଦେଶ୍ୟ ନୁହେଁ । ଯନ୍ତ୍ରକୁ ବାଦ୍ ଦେଲେ ଗଡଜାତରେ ଏହି କୋଇଲାର ଆଉ କେତୋଟି ସଦ୍‌ବ୍ୟବହାର କରାଯାଇ ପାରେ । ପଥରକୋଇଲାରୁ 'ପେଟ୍ରୋଲ' (Petroleum) ଓ 'ଝୁଆ' ଅର୍କ ତିଆରି ହୁଏ । ପେଟ୍ରୋଲ ମୋଟର, ମୋଟର ସାଇକେଲ୍ ଓ ଡାଇନାମୋ ପ୍ରଭୃତି ଚଳାଇବା ନିମନ୍ତେ ବ୍ୟବହାର କରାଯାଏ । ଝୁଆ ଓଡ଼ିଶାର ଗୋଟିଏ ପ୍ରଧାନ ଶିଳ୍ପ ବସ୍ତୁ । ଗୁଣ୍ଡି ମସଲାର ପ୍ରଧାନ ଭାଗ ହେଉଛି 'ଝୁଆ ଅତର' । ଯାହା ବାଦ କେତେକ ପ୍ରକାର ଔଷଧରେ ମଧ୍ୟ ଝୁଆ ବ୍ୟବହାର କରାଯାଏ । କୋଇଲାରୁ ଏ ଦୁଇଟି ପଦାର୍ଥ ତିଆରି କରିବା ପାଇଁ ଗୋଟିଏ ଦୁଇଟି ଚିଲ୍ଲାଗାର ସ୍ଥାପନ କରିବାକୁ ହେବ । ଅବଶ୍ୟ ଏହା କରିବା ପାଇଁ ସାମାନ୍ୟ ଯନ୍ତ୍ରପାତି ଓ କିଛି ବିଶେଷ ଜ୍ଞାନ ଦରକାର । ଗଡଜାତରେ ଯେତେବେଳେ ପ୍ରଚୁର ପରିମାଣରେ କୋଇଲା ମିଳେ, ତେବେ ଏ ଦୁଇଟି ଶିଳ୍ପପାଇଁ ପ୍ରଥମେ କିଛି ଖର୍ଚ୍ଚାନ୍ତ ହେଲେ ସୁଦ୍ଧା ପରେ ଏଥିଦ୍ୱାରା ବିଶେଷ ଲାଭବାନ୍ ହେବା ସମ୍ଭବପର ।

• କାଠ ଅଭାବରେ ପଥରକୋଇଲା ଦେଇ ଇଟା, ହାଣ୍ଡି, ପାଉଁରୁଟି (Loaf) ପ୍ରଭୃତି ମଧ୍ୟ ପୋଡାଯାଏ ବା ରନ୍ଧାଯାଏ । ( ପରବର୍ତ୍ତୀ ଅଧ୍ୟାୟରେ ଏଇ 'ମାଟିକାମ' କଥା ବିସ୍ତୃତ ଭାବେ କୁହାଯିବ ।)

(ଥ) **ଲୁହା** (Iron) --ଅଳ୍ପ କେତୋଟି ଗଡ଼ଜାତରେ ଲୌହଖଣି ( Iron ore ) ଥିବାର ଅନୁମିତ ହୁଏ । ବିଶେଷଜ୍ଞମାନଙ୍କ ଦ୍ୱାରା ଏହାର ବିଶେଷ ଅନୁସନ୍ଧାନ କରାଇ ଲୌହ ଆମଦାନୀ କରାଇଲେ ବିଭିନ୍ନ ପ୍ରକାର 'କମାର ଶିଳ୍ପ' କରାଯାଇ ପାରେ । ପ୍ରାଚୀନକ ଓଡ଼ିଶାର ଏକ ଅଂଶ ହୋଇଥିବା ସମୟରେ ସିଂହଭୂମିରୁ ପ୍ରାଚୀନ ଉତ୍କଳୀୟମାନେ ପ୍ରଚୁର ଲୁହା ଆଦାୟ କରି ଓଡ଼ିଶାର ଇତିହାସପ୍ରସିଦ୍ଧ ଭୁବନେଶ୍ବର, ଜଗନ୍ନାଥ ଓ କୋଣାର୍କ ମନ୍ଦିରର ଲୁହା କଡ଼ିମାନ ସେଇ ଲୁହାରେ ତିଆରି କରୁଥିଲେ । ବର୍ତ୍ତମାନ ଶାସନକର୍ତ୍ତାର କଣାଘାତରେ ପଡି ସିଂହଭୂମି ଓଡ଼ିଶାରୁ ବିଚ୍ଛିନ୍ନ ହୋଇଛି ଓ ସେଠାରେ ଥିବା ଅଧୁନିକ "ଟାଟା ଲୌହ କାରଖାନା" ବିଦେଶୀମାନଙ୍କ ଦ୍ୱାରା ପରିଚାଳିତ । ନିକଟ ବା ଦୂର-ଭବିଷ୍ୟତରେ ସିଂହଭୂମି ଓଡ଼ିଶା ସଙ୍ଗେ ମିଶିଲେ ଓଡ଼ିଶାରେ ଲୌହଶିଳ୍ପର ବିସ୍ତାର ବଢ଼ିବା ଆଶା କରାଯାଏ ।

(ଦ) **ଆଭ**—ଅଭ ବା ଅଭ୍ର ( Mica ) ଖଣି ମଧ୍ୟ ଗଡ଼ଜାତର କେତେକ ସ୍ଥାନରେ ମିଳେ । "ଅଭ୍ରଭସ୍ମ" ଆୟୁର୍ବେଦର ଗୋଟିଏ ପ୍ରଧାନ ଔଷଧ । ଖଣିରୁ କାଢିବା ଅଭ୍ରକୁ ପରିଷ୍କୃତ କରି ଶାସ୍ତ୍ରୀୟ ମତରେ ପୁଟ ଦେଲେ ଅଭ୍ରଭସ୍ମ ହୁଏ । ଏହା ଗୋଟିଏ ଅତି

ବଲବୃଦ୍ଧିକର ( Tonic ) ଔଷଧ ଓ ନାନା ପ୍ରକାର ରୋଗରେ ଦିଆଯାଏ । ଔଷଧ ବ୍ୟତୀତ ଅତ୍ରରୁ ଟିକଲି ( ସ୍ତ୍ରୀମାନଙ୍କର ଟିକା ) ଓ ବିଭିନ୍ନ ପ୍ରକାର କୃତ୍ରିମ ଫୁଲଗଛ, ଦୀପଦାନ ପ୍ରଭୃତି ମଧ୍ୟ ତିଆରି ହୁଏ । ଏହି କୃତ୍ରିମ ଫୁଲ ଓ ଦୀପଦାନ ପ୍ରଭୃତି କରିବାପାଇଁ ଓଡ଼ିଶାରେ ଭଲ କାରିଗର ଅଛନ୍ତି । ଏମାନଙ୍କୁ ଉତ୍ସାହ ଦେଲେ ଏହି ଶିଳ୍ପର ଉନ୍ନତି ହୁଅନ୍ତା । ଶିବାହ ଶୋଭାଯାତ୍ରୀ ସମୟରେ ଯେଉଁ ଫୁଲ ଓ ଫୁଲଗଛଗୁଡ଼ିକ ପ୍ରଦର୍ଶିତ ହୁଏ, ସେଗୁଡ଼ିକୁ ଦେଖିଲେ ଆମ୍ଭଦେଶର ଶିଳ୍ପୀମାନଙ୍କ ଶିଳ୍ପପରାକାଷ୍ଠା ସ୍ପଷ୍ଟ ଜଣାଯାଏ ।

(ଧ) **ମୁଗୁନି ପଥର**—କଳା ମୁଗୁନି ପଥର ( Black granite ) ପାଇଁ ଓଡ଼ିଶା ଗଡ଼ଜାତର "ନୀଳଗିରି" ରାଜ୍ୟ ଇତିହାସ-ପ୍ରସିଦ୍ଧ । ଏଠାରୁ ପଥର ନାଇ ଭୁବନେଶ୍ୱର ଓ କୋଣାର୍କମନ୍ଦିରର ଅସଂଖ୍ୟ ବିଗ୍ରହ, କଳସ, ନବଗ୍ରହ ପ୍ରଭୃତି ତିଆରି ହୋଇଥିଲା । ଅଦ୍ୟାବଧି ଏଠାରେ ଓ ଡମପଡ଼ାରେ ମିଳୁଥିବା କୁଣ୍ଡାପଥରରେ ଅତି ସୁନ୍ଦର "ଗଥୁରି" (ପଥର ବାସନ), ଥାଳି ଓ ପ୍ରତିମୂର୍ତ୍ତିମାନ ତିଆରି ହୁଏ । ଏଗୁଡ଼ିକ ଦେଖିବାକୁ ଯେପରି ସୁନ୍ଦର ଓ ଚିକ୍କଣ, ସେହିପରି ମଜଭୁତ—ଅନେକ ଦିନଯାଏ ବ୍ୟବହାର କରାଯାଇ ପାରେ । ଆମ ଦେଶର ରାଜା ମହାରାଜାମାନେ ବିଦେଶରେ କୃତ୍ରିମ ମାଟିଦ୍ୱାରା ତିଆରି ହୋଇଥିବା ମାଟିବାସନ, ଗାଧୁଆକୁଣ୍ଡ, ଝାଡ଼ାଫେରିବା କୁଣ୍ଡ (Commode), ବିଭିନ୍ନପ୍ରକାର ଥାଳି (Plates) ପ୍ରଭୃତି ମଗାଇ ଅନେକ ଟଙ୍କା ଖର୍ଚ୍ଚ କରନ୍ତି । କୃତ୍ରିମ ଉପାୟରେ ତିଆରି ହୋଇଥିବା ମୁଗୁନି ବା ମର୍ମର ପଥର ( Artificial Marble Slabs ) ଆଣି ନିଜର "ଡିଅସ" ପ୍ରଭୃତି ସଜାନ୍ତି । କିନ୍ତୁ ସେପରି କୃତ୍ରିମ ଉପାୟରେ ତିଆରି ହୋଇଥିବା ପ୍ରସ୍ତର ଅପେକ୍ଷା ଏହି ମୁଗୁନି ଓ କୁଣ୍ଡା ପ୍ରସ୍ତରର ଜିନିଷଗୁଡ଼ିକ ବ୍ୟବହାର କଲେ ଏ ଦେଶର ଅନେକ କାରିଗର ଏହି ପ୍ରସ୍ତର ଶିଳ୍ପଦ୍ୱାରା ନିଜର ଜୀବିକାର୍ଜ୍ଜନ କରନ୍ତେ । ପୁଣି ସେହି ପ୍ରାଚୀନ ପ୍ରସ୍ତରଶିଳ୍ପ (ଯାହା ପାଇଁ କି ଓଡ଼ିଶା ଇତିହାସପ୍ରସିଦ୍ଧ ଥିବାର ଏକାଧିକ ପ୍ରତ୍ନତତ୍ତ୍ୱବିଶାରଦ— Research Experts—କହୁଯାଇଛନ୍ତି ) ତାର ମୃତ୍ୟୁ ଠେକି ଦେଶର କାରିଗରମାନଙ୍କୁ ଉତ୍ସାହ ଦେବ ଓ ଏହି ଶିଳ୍ପ ନେଇ ଓଡ଼ିଶାର ଠେକ ଦେଶ ବିଦେଶରେ ରହିବ ।

(ନ) **ଖଡ଼ି, ଟେଗେଟି, ଚୂନପଥର ( ମୁରୁଜ ପଥର ) ଓ ତିଳକ ମାଟି**— ଏଗୁଡ଼ିକ ମଧ୍ୟ ଓଡ଼ିଶା ଗଡ଼ଜାତର ବିଭିନ୍ନ ସ୍ଥାନରେ ମିଳେ । ଇଂରାଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ଏ ଦେଶର "ବାଟିବଂଶ ଅବଧାନ"ମାନେ ଗୃହାଳରେ ପିଲାଙ୍କୁ ଅକ୍ଷର ପରିଚୟ କରାଇବା ନିମନ୍ତେ କେବଳ "ଖଡ଼ି" (chalk) ବ୍ୟବହାର କରୁଥିଲେ । ଆଜି ସୁଦ୍ଧା ଅନେକ ମଫସଲରେ ଅବଧାନ ଓ ନିମ୍ନପ୍ରାଇମେରୀ ଶିକ୍ଷକମାନେ ଏହି ଖଡ଼ିରେ ପିଲାମାନଙ୍କ ଦ୍ୱାରା "ଅ ଆ" ପ୍ରଭୃତି ଲେଖାନ୍ତି । କେବଳ ଉପର ସ୍କୁଲର ଶିକ୍ଷକମାନେ

ଜର୍ମାନୀ ବା ଇଂଲଣ୍ଡ ପ୍ରଭୃତିରେ ତିଆରି ହେବା 'ଚକ୍' ( crayons ) ଖଡ଼ି ବ୍ୟବହାର କରନ୍ତି । ପିଲାଙ୍କ ଅକ୍ଷର ଲେଖିବା ବ୍ୟତୀତ ଖଡ଼ିରେ ଘରର ସ୍ତ୍ରୀମାନେ ବିଭିନ୍ନ ପ୍ରକାର ଚିତ୍ର ବା "ଝୋଟି" ଅଙ୍କନ୍ତି ଏବଂ କେତେକ ଔଷଧରେ ମଧ୍ୟ ଖଡ଼ି ବ୍ୟବହାର କରାଯାଏ ।

ଗେଙ୍ଗୁଟି ଓ ଚୂନ ପଥରରେ ଚୂନ ଓ ଘରର ଚଟାଣ ପ୍ରଭୃତି ଏବଂ କାନ୍ଥରେ ଦେବା ସଫେଦ ଚୂନ ପ୍ରଭୃତି ପ୍ରସ୍ତୁତ ହୁଏ । କେତେକ ସ୍ଥାନରେ 'ମୁରୁଜ ପଥର' ମଧ୍ୟ ମିଳେ । ଏହି ପଥରକୁ ଉତ୍ତମରୂପେ ଗୁଣ୍ଡ କରି ଠାକୁର ମନ୍ଦିରରେ କିମ୍ବା ତୁଳସୀ ଚଉଁରାର ପିଣ୍ଡମାନଙ୍କରେ ଚିତା ଦିଆଯାଏ । ଓଡ଼ିଶା ଓ ବଙ୍ଗଳା ଦେଶର ଅନେକ ସ୍ଥାନରେ ଏହି ମୁରୁଜ ଗୁଣ୍ଡ ସ୍ତ୍ରୀମାନେ ବ୍ୟବହାର କରନ୍ତି ।

ବୈଷ୍ଣବ ସମ୍ପ୍ରଦାୟର ଲୋକମାନେ ନାକ ଓ ଦେହରେ ଯେଉଁ 'ଚିତା ତିଳକ' ଲଗାନ୍ତି, ସେହି 'ତିଳକମାଟି' ମଧ୍ୟ ଗଡ଼ଜାତର ନାନା ସ୍ଥାନରେ ମିଳେ । ପ୍ରତିବର୍ଷ ସହସ୍ରାଧିକ ଟଙ୍କାର ତିଳକ ମାଟି ଓଡ଼ିଶା ଓ ବଙ୍ଗଳା ଦେଶରେ ବିକ୍ରି ହେଉଥିବ । ଏହି ମାଟିରେ କେତେକ ପ୍ରକାର ପ୍ରତିମୂର୍ତ୍ତି (ଠାକୁର ମୂର୍ତ୍ତି) ମଧ୍ୟ ତିଆରି ହୁଏ । ପୁରୀ ଜଗନ୍ନାଥ-ମନ୍ଦିରର ଆଗରେ ଏବଂ ବଡ଼ଦାଣ୍ଡର ଦୁଇ ପାର୍ଶ୍ୱରେ ତିଳକମାଟିର ଏକାଧିକ ଦୋକାନ ଦେଖାଯାଏ ।

ପ୍ରୋକ୍ତ ୩ । ୪ ପ୍ରକାର ଗୋଡ଼ି ଓ ମାଟି ସଂଗ୍ରହ କରି ତାହାର ବିଶେଷ ଉନ୍ନତି କରିବା ପାଇଁ କେତୋଟି ଶିଳ୍ପାଗାର ସ୍ଥାପନ କଲେ ଏହି ବ୍ୟବସାୟ ଦ୍ୱାରା ଆମ ଦେଶର ଅନେକ କାରିଗର ଓ ଅନ୍ୟାନ୍ୟ ଶିକ୍ଷିତ ବା ଅଶିକ୍ଷିତ ଅକର୍ମା ନିଜ ସମୟର ସଦ୍‌ବ୍ୟବହାର କରିପାରନ୍ତେ ।

(ଘ) **ପଟପ୍ରଦ ବୃକ୍ଷଲତା**—ବାଣି ବା 'ଦଉଡ଼ି' କରିବା ପାଇଁ ଗଡ଼ଜାତ ଜଙ୍ଗଲରେ ଅନେକ ପ୍ରକାର ଘାସ, ଲଟା ବା ଲହୁ ( ନଳି ) ମିଳେ । ଏହି ଲହୁ ଓ ଘାସ ମଧ୍ୟ ପ୍ରତିବର୍ଷ ନିଲାମ ହୁଏ । ଏଗୁଡ଼ିକ ଏକତ୍ର ସଂଗ୍ରହ କରି ଗୋଟିଏ ଦଟା ଶିଳ୍ପାଗାର ସ୍ଥାପନ କଲେ ସେଠାରେ ଅନେକ ଲୋକ କାର୍ଯ୍ୟ କରି ଅତି ମଜବୁତ ଓ ସୁନ୍ଦର ବାଣି ଦଉଡ଼ି ତିଆରି କରନ୍ତେ । ବିଚ୍ଛିନ୍ନ ଭାବରେ ଯେ କୌଣସି ଲୋକ ଯେ କୌଣସି ଠାରେ ତିଆରି କରିଥିବା ବାଣି ବା ଦଉଡ଼ି ପ୍ରଭୃତି ସେତେ ମଜବୁତ ନ ଥିବାରୁ ସାଧାରଣ ଲୋକମାନଙ୍କ ଦ୍ୱାରା ସେଗୁଡ଼ିକ ବିଶେଷରୂପେ ଆଦୃତ ହୁଏ ନାହିଁ କିମ୍ବା ତଦ୍ଦ୍ୱାରା ସେହି ବ୍ୟବସାୟର ବିଶେଷ ଉନ୍ନତି ମଧ୍ୟ ହୁଏ ନାହିଁ । କିନ୍ତୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଶିଳ୍ପାଗାରରେ ଉତ୍ତମ ପରିଚାଳକଙ୍କ ତତ୍ତ୍ୱାବଧାନରେ ତିଆରି ହୋଇଥିବା ଜିନିଷଗୁଡ଼ିକ

ଯେ କୌଣସି ଲୋକର ଆଦରର ବସ୍ତୁ ହେବ । ଏପରି ଗୋଟିଏ ଶିଳ୍ପାଗାର ସ୍ଥାପନ କଲେ ଯେଉଁ ପଦାର୍ଥଗୁଡ଼ିକ କୌଣସି ଲୋକଦ୍ୱାରା ବିଶେଷରୂପେ ଅଦୃତ ହୁଏ ନାହିଁ, ସେଗୁଡ଼ିକ ମଧ୍ୟ ଏହି ଅନୁଷ୍ଠାନ ଦ୍ୱାରା ବିକ୍ରି ହୋଇପାରେ ।

ଗଡ଼ଜାତ ଜଙ୍ଗଲରେ ମିଳୁଥିବା 'ସବାଇ' ବା 'ସବେଇ ଘାସ'ରେ ଅତି ମଜବୁତ ଦଉଡ଼ି ତିଆରି ହୋଇଥାଏ । ପୁଣି ଏହି ଘାସରେ ଅତି ଉତ୍କୃଷ୍ଟ ରକମ କାଗଜ ମଣ୍ଡ (Paper Pulp) ତିଆରି ହୋଇପାରେ ବୋଲି ବିଶେଷଜ୍ଞମାନେ କହନ୍ତି । * ଓଡ଼ିଶା ଗଡ଼ଜାତର ବିଭିନ୍ନ ସ୍ଥାନରେ କି କି ପ୍ରକାର କଞ୍ଚାମାଲ୍ (Raw Products) ମିଳେ ଓ ତଦ୍ୱାରା କେଉଁ କେଉଁ ଶିଳ୍ପ କରାଯାଇ ପାରେ, ସେ କଥା ପୂର୍ବ ପୃଷ୍ଠାଗୁଡ଼ିକରେ ବର୍ଣ୍ଣିତ ହେଲା । ବର୍ତ୍ତମାନ କେଉଁ ଗଡ଼ଜାତରେ କି କି ପ୍ରକାର ଜିନିଷ ପ୍ରଚୁର ମିଳେ, ତହିଁର ଗୋଟିଏ ତାଲିକା ନିମ୍ନରେ ଦିଆଗଲା:—

| ଗଡ଼ଜାତର ନାମ | ସେଠାରେ ମିଳୁଥିବା ଜିନିଷ |
|---|---|
| ୧ । ନୟାଗଡ଼ | ହାତୀଦାନ୍ତ, କଂସା ପିତଳ ବାସନ |
| ୨ । ରଣପୁର | ଏଜନ |
| ୩ । ଖଣ୍ଡପଡ଼ା | ବେତ ପେଟରା, କଂସାବାସନ ( କଣ୍ଟିଲୋ ) |
| ୪ । ନୀଳଗିରି | କଳା ମୁଗୁନି ପଥର, କଂସାପିତଳ ବାସନ, ଟସର ମଠ |
| ୫ । ତାଳଚେର | ପଥର କୋଇଲା |
| ୬ । କେନ୍ଦୁଝର | ଲୌହ ଓ ସ୍ୱର୍ଣ୍ଣ ( ? ) ଖଣି |
| ୭ । ଗାଙ୍ଗପୁର | ଲୌହ, କୋଇଲା, ସିତାର ତାର, ଗଡ଼ୁ, ଲାଖବାଣ୍ଡ, ଅରଟ ସୂତା |
| ୮ । ତିଗିରିଆ | ପାଟ ଓ ଲୁଗା |
| ୯ । ବଡ଼ମ୍ବା | "ମାଣିଆବନ୍ଧ" ଲୁଗା |
| ୧୦ । ଢେଙ୍କାନାଳ | ବାସନ, ଟସର |
| ୧୧ । ମୟୂରଭଞ୍ଜ | କୋଇଲା, ଖଡ଼ି ପଥର, ପାଲିସ୍ ଚୁନ |
| ୧୨ । ସୋନପୁର | ମଠା, ବାସନ |
| ୧୩ । ବାମଣ୍ଡା | କାଠ, ଅଭ୍ର, ଚୂନ ଓ ଖଡ଼ି ପଥର |
| ୧୪ । ଖଡ଼ିଆଳ | କୋଇଲା, କରସିମା ( ? ) |

* "ପଲ୍ଲୀମଙ୍ଗଳ" ମାସିକ ପତ୍ରର ୧୯୩୦ ବର୍ଷର ୮ମ ସଂଖ୍ୟା ଦେଖନ୍ତୁ ।

୧୫ । ପାଲଲହଡ଼ା — ନାଗେଶ୍ୱର ଫୁଲ୍,
୧୬ । ହିନ୍ଦୋଳ — ହାତଦାନ୍ତ, ସେଟରି
୧୭ । ଦଶପଲ୍ଲା — ଅତି ସୁନ୍ଦର ହାତ ବାଉ
୧୮ । ବୌଦ୍ଧ — ଭଲ୍ ମଠା
୧୯ । କଳାହାଣ୍ଡି — ଚକ୍, ଅଭ୍ର

ଉପର୍ଯ୍ୟୁକ୍ତ ବିଶିଷ୍ଟ ପଦାର୍ଥଗୁଡ଼ିକ ବ୍ୟତୀତ ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ସମସ୍ତ ପ୍ରକାର ଜଙ୍ଗଲ୍ ପଦାର୍ଥ ମଧ୍ୟ ଏଇ ଗଡ଼ଜାତଗୁଡ଼ିକରେ ମିଳେ ।

## (୨) ଉତ୍କଳ ପ୍ରଦେଶର ବିଭିନ୍ନ ଜିଲାରେ—

ନିକଟ ଭବିଷ୍ୟତରେ ଉତ୍କଳ ଗୋଟିଏ "ସ୍ୱତନ୍ତ୍ର ପ୍ରଦେଶ"ରୂପେ ଗଠିତ ହେବ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶରେ ନିମ୍ନ ସାତଗୋଟି ଜିଲ୍ଲା ରହିବ :—

(୧) ଜୟପୁର (୪) କଟକ
(୨) ଗଞ୍ଜାମ (୫) ବାଲେଶ୍ୱର
(୩) ପୁରୀ (୬) ସମ୍ବଲପୁର ଓ
(୭) ଅନୁଗୁଳ

ଉତ୍କଳର ପ୍ରତ୍ୟେକ ଜିଲ୍ଲାରେ ଯେଉଁ କଞ୍ଚା ମାଲ୍ ମିଳେ, ସେଇ ମାଲକୁ ନେଇ ପ୍ରତ୍ୟେକ ଜିଲ୍ଲାରେ ଏକାଧିକ କୁଟୀର-ଶିଳ୍ପାଗାର ସ୍ଥାପନ କରାଯାଇ ପାରେ । ଏଇ କାମ କରିବା ପାଇଁ କେବଳ ସ୍ଥାନୀୟ ଅଧିବାସୀମାନଙ୍କୁ ( ଅକର୍ମୀ, ଶିକ୍ଷିତ ଓ ଅଶିକ୍ଷିତ ସମସ୍ତଙ୍କୁ ) ନିଯୁକ୍ତ କଲେ ଓଡ଼ିଶାର ଅକର୍ମୀଙ୍କ ସଂଖ୍ୟା କମିଯିବ ଏବଂ ଦେଶର ଆର୍ଥିକ ଦୁରବସ୍ଥା ଦୂର ହେବ । ଭାବୀ ପ୍ରଦେଶର ରାଜସ୍ୱ ତୁଳନାରେ ଯେଉଁ "ଖର୍ଚ୍ଚ ନିଅଣ୍ଟ" ହେବ ବୋଲି ଆଶଙ୍କା କରା ଯାଉଛି, ଏପରି ସ୍ଥଳେ ଆଜଠୁ ପ୍ରତ୍ୟେକ ଜିଲ୍ଲାର କଞ୍ଚା ମାଲ୍ ସଂଗ୍ରହ କରି ସ୍ଥାନେ ସ୍ଥାନେ କୁଟୀର ଶିଳ୍ପ ସ୍ଥାପନ କଲେ ଏଇ "ଖର୍ଚ୍ଚ ନିଅଣ୍ଟ" ଦୂର ହେବା ନିଃସନ୍ଦେହ । ପ୍ରାଦେଶିକ ସରକାର ପ୍ରାରମ୍ଭରୁ ଏଇ ଧନାଗମର ପନ୍ଥା ଖୋଲିଲେ ଏ ଦେଶ ଯେ ଅଚିରେ ସର୍ବାଙ୍ଗସୁନ୍ଦର ହୋଇ ଉଠିବ, ସନ୍ଦେହ ନାହିଁ । ବର୍ତ୍ତମାନ ଓଡ଼ିଶାର କେଉଁ ଜିଲ୍ଲାରେ କ'ଣ ଜିନିଷ ପ୍ରଚୁର ମିଳେ ଓ ତଦ୍ଦ୍ୱାରା କ'ଣ ରକମର କୁଟୀର ଶିଳ୍ପ କରାଯାଇ ପାରେ, ତା ଏଠାରେ ବର୍ଣ୍ଣିତ ହେବ ।

୧ । **ଜୟପୁର**—ଜୟପୁର ଗୋଟିଏ ନିବିଡ ଜଙ୍ଗଲମୟ ପ୍ରଦେଶ, ଯାହାକୁ "ବିକାରଣ୍ୟ" ବା "ମହାରଣ୍ୟ" କୁହାଯାଏ; ସେପରି ଅରଣ୍ୟ ଏଠାରେ ଦେଖିବାକୁ ପାଇଁ । ଏପର୍ଯ୍ୟନ୍ତ ଏଠାର ଅନେକ ପ୍ରଦେଶ ଲୋକବସତିର ଉପଯୁକ୍ତ ହୋଇ ପାରି ନାହିଁ କିମ୍ବା କେଉଁ ସ୍ଥାନରେ କି ଅମୂଲ୍ୟ ପଦାର୍ଥ ରହିଛି ତା ଆବିଷ୍କୃତ ହୋଇ ନାହିଁ । ଏଠା ଜଙ୍ଗଲରେ ପୂର୍ବେ ବର୍ଣ୍ଣିତ ଗଡ଼ଜାତ ଜଙ୍ଗଲର ସବୁ ପଦାର୍ଥ ମିଳେ । ଏଠାର ପାର୍ବତ୍ୟ ପ୍ରଦେଶରେ ନାନା ପ୍ରକାର ଖନିଜ ପଦାର୍ଥ ଥିବାର କେତେକ ଅନୁସନ୍ଧିତ୍ସୁ ପ୍ରକାଶ କରିଥିଲେ । ଜୟପୁର ନିକଟବର୍ତ୍ତୀ "ଡୁଡୁମା" ଗ୍ରାମରେ ଯେଉଁ 'ଜଳପ୍ରପାତ' ( Water fall ) ଅଛି, ତହିଁରୁ ବିଦ୍ୟୁତ ଶକ୍ତି (Electricity) ବାହାର କରି ପ୍ରାୟ ୨୦୦ ମାଇଲ ଦୂରରେ ଥିବା ବିଶାଖପାଟଣାର ନୂତନ ବନ୍ଦର ଓ ଭାବୀ ବିଶାଖପାଟଣା ସହର ପାଇଁ ବୈଦ୍ୟୁତିକ ଆଲୋକ ଯୋଗାଇବା ଯୋଗାଡ଼ ଚାଲିଛି । ଏହି ଜଳପ୍ରପାତର ସଦ୍‌ବ୍ୟବହାର କଲେ ନିକଟ ଭବିଷ୍ୟତରେ ଜୟପୁର ରାଜ୍ୟର ଆର୍ଥିକ ଅବସ୍ଥା ଯେ ଶତଗୁଣ ବୃଦ୍ଧିଲାଭ କରିବ, ସନ୍ଦେହ ନାହିଁ । ଏହି ପ୍ରପାତରେ ଗୋଟିଏ ବନ୍ଧ ( Dam ) ବାନ୍ଧି ଏଠାରୁ ଜଳ ଯୋଗାଇଲେ ଜୟପୁର ରାଜ୍ୟର ଅର୍ଦ୍ଧାଧିକ ପ୍ରଦେଶର ଜମିଗୁଡ଼ିକୁ କୃଷ୍ୟୁପଯୋଗୀ କରାଯାଇ ପାରେ । ଏ ଦିଗରେ ଜୟପୁର ନବୀନ ରାଜା ସାହେବଙ୍କର ଦୃଷ୍ଟି ପଡ଼ିଥିବା ସୁଖର ବିଷୟ ।

ବୈଦ୍ୟୁତିକ ଶକ୍ତି ଆବିଷ୍କୃତ ହେବାମାତ୍ରେ ଜୟପୁରର ପ୍ରତ୍ୟେକ ସ୍ଥାନରେ ନାନା ପ୍ରକାର ଶିଳ୍ପାଗାରମାନ ସ୍ଥାପନ କରାଯାଇ ପାରେ । ଅବଶ୍ୟ ଏହି ଶକ୍ତି ଦ୍ୱାରା ନୂତନ ଯନ୍ତ୍ରପାତି ( Machines ) ସ୍ଥାପନ କଲେ ତଦ୍ଦ୍ୱାରା ଦେଶବାସୀଙ୍କର କୌଣସି ବିଶେଷ ଉନ୍ନତି ହେବ ନାହିଁ କିମ୍ବା ଦେଶର ଅନ୍ନକଷ୍ଟ ଦୂର ହେବା ସମ୍ଭବପର ନୁହେଁ; କିନ୍ତୁ ଏହି ଶକ୍ତିଦ୍ୱାରା ଜୟପୁର ପରି ଅତି ବିସ୍ତୃତ ପ୍ରଦେଶରେ କୃଷିର ପରିମାଣ ବୃଦ୍ଧି ହୋଇପାରେ ଓ ସଙ୍ଗେ ସଙ୍ଗେ ଅନେକ ଜଙ୍ଗଲ ପ୍ରଦେଶଗୁଡ଼ିକୁ ଲୋକବସତିର ଉପଯୁକ୍ତ କରାଯାଇ ପାରେ । ଏହି କାର୍ଯ୍ୟ ପାଇଁ ଯେଉଁ 'ଶକ୍ତି' ଦରକାର, ତା ମନୁଷ୍ୟ ଶକ୍ତି ଅପେକ୍ଷା ଏହି ନବାବିଷ୍କୃତ ବୈଦ୍ୟୁତିକ ଶକ୍ତି ଦ୍ୱାରା କରିବାକୁ ହେବ ।

ଜୟପୁର ଜଙ୍ଗଲରେ ଯେଉଁ "ସରଗି" କାଠ ମିଳେ, ତା ଓଡ଼ିଶା ଗଡଜାତରେ ମିଳେ କି ନାହିଁ ସନ୍ଦେହ । ସରଗି ଗଛର ଉଚ୍ଚତା ଯେପରି ବିଭ୍ରାନ୍ତିମ୍ନୀ, ତାର ମୋଟା ମଧ୍ୟ ସେଇପରି ଆଶ୍ଚର୍ଯ୍ୟଜନକ । ଏହି କାଠକୁ ନେଇ 'ବଙ୍ଗନାଗପୁର ରେଲକମ୍ପାନୀ'(B. N. Ry) ବହୁବର୍ଷ ଯାଏ ରେଲ ପୋଲ୍ ତଳେ ଦିଆଯିବା 'ସ୍ଲିପର୍' କରିଥିଲା । ପ୍ରତିବର୍ଷ ୨ । ୩ ଲକ୍ଷ

ଝଙ୍କାର ସରଗିକାଠ ସେଇ କମ୍ପାନୀ ନେଉଥିଲା । ଏଇ କାଠର ସ୍ଥାନୀୟ ସଦ୍‌ବ୍ୟବହାର କରିବା ନିମନ୍ତେ ଜୟପୁରର ଭୂତପୂର୍ବ ମହାରାଜା ୧୧।୧୨ ବର୍ଷ ପୂର୍ବେ ଏଠାରେ ଗୋଟିଏ 'କରତକଳ' ( Saw Mill ) ବସାଇଥିଲେ । କିନ୍ତୁ ଉଦ୍ୟୋଗ ସ୍ଥାନୀୟ ଲୋକମାନଙ୍କର ବିଶେଷ ଉନ୍ନତ ହୋଇ ନ ଥିବାରୁ ସେ କାର୍ଯ୍ୟ ବନ୍ଦ କରାଗଲା । ଏଠା ଜଙ୍ଗଲରେ ମିଳୁଥିବା କାଠରେ ଅତି ଉତ୍କୃଷ୍ଟ ଧରଣର ଉପକରଣମାନ ଓ ଗୃହୋପଯୋଗୀ କାଉ, ବରଗା, କବାଟ ପ୍ରଭୃତି କରାଯାଇ ପାରେ ।

ଜୟପୁରର "ଝାମ୍ପା ପେଡ଼ି" ତିଆରି ଗୋଟିଏ ଅତି ସୁନ୍ଦର ଶିଳ୍ପ । ଓଡ଼ିଶାର ବହୁଳ ସ୍ଥାନରେ ଯେପରି ବେତ 'ପେଟରା'ମାନ ତିଆରି ହୁଏ, ଠିକ୍ ସେଇପରି ଅତି ଟାଣ ବାଉଁଶ କାଠିରେ ଏଇ ପେଡ଼ିମାନ ତିଆରି ହୁଏ । ଏଇ ପେଡ଼ିଗୁଡ଼ିକ ଏତେ ମଜବୁତ ଯେ, ଏଗୁଡ଼ିକ ସହଜରେ ଭାଙ୍ଗିଯାଏ ନାହିଁ କିମ୍ବା କୌଣସି ଲୋକ ତାକୁ କାଟି ଭିତରୁ ଧନାପହରଣ କରିବା ଭୟ ନାହିଁ । ଏଇ ଶିଳ୍ପ ସ୍ଥାନୀୟ ଆଦିମବାସୀଙ୍କ ଦ୍ୱାରା କରାଯାଏ ।

ଜଙ୍ଗଲରେ ତିଆରି ହେବା ଶିଙ୍ଖୁଳି, ଡାଲ, ଖଡ଼ୁ ପ୍ରଭୃତି ଏବଂ ସରୁ ଧାନରେ ତିଆରି ହେବା 'କୁଣ୍ଡିଆ', ବିଞ୍ଚଣା ( ପଙ୍ଖା ), ପେଡ଼ି, ଗଣ୍ଡୁଳି, ହାତବାକ୍ସ ପ୍ରଭୃତି ଜୟପୁରର ଗୋଟିଏ ଗୋଟିଏ ପ୍ରଧାନ ଶିଳ୍ପ । ଏଇ ପଦାର୍ଥଗୁଡ଼ିକ ମାନ୍ଦ୍ରାଜ ଅଞ୍ଚଳରେ ବେଶ୍ ପ୍ରସିଦ୍ଧି ଲାଭ କରିଛି ।

ଏଠାରେ ତିଆରି ହେବା ( ଶାଢ଼ୀ ) ଶିଆଳି ପତ୍ରର ଛତା, ଶଗଡ଼ ଛପର (ଗୁଡ଼ା), "ତଲାର" (ଏକରକମ ବାଉଁଶ ନ ଥିବା ଛତା) ପାଶିଆ ଏବଂ ଶିଆଳି ଲଇରେ ତିଆରି ହେବା ଖଟିଆ, ( ଡ଼ୋଲି ) ଦଉଡ଼ା, ପଘା ପ୍ରଭୃତି ସେ ଅଞ୍ଚଳରେ ବେଶୀ ଆଦୃତ ହୁଏ । ଶିଆଳି ଲଇରେ ତିଆରି ହେବା ଦଉଡ଼ି ଯେ ଦଉଡ଼ା ପାଇଁ ବ୍ୟବହାର କରନ୍ତି କିମ୍ବା ସମୟରେ ସେଇ ଦଉଡ଼ିରେ ବନ୍ୟ ହାତୀଙ୍କ ବାନ୍ଧିରଖନ୍ତି । ଏଥିରୁ ସେଇ ଦାଉଡ଼ି କେପରି ମଜବୁତ ଓ ସୁଦୃଢ଼ ରହେ, ତାହା ସହଜରେ ଅନୁମାନ କରାଯାଇପାରେ ।

ଜୟପୁରର "ଫୁଲ ଝାଡ଼ୁଣି" ଆଉ ଗୋଟିଏ ବିଶେଷତ୍ୱ । ଏକରକମ ଜଙ୍ଗଲୀ ଗଛର ଉପରଭାଗକୁ କାଟି ଏଇ ଝାଡ଼ୁଣି ତିଆରି ହୁଏ । ଏଗୁଡ଼ିକ ସୁଦୂର କଲିକତା ଓ ମାନ୍ଦ୍ରାଜ ପ୍ରଭୃତି ସ୍ଥାନକୁ ରପ୍ତାନୀ ହୁଏ । ପକ୍କାଘରର ଚଟାଣ ଝାଡ଼ୁଇବା ପାଇଁ ଏ ପ୍ରକାର ଝାଡ଼ୁଣି ଅତି ଉତ୍କୃଷ୍ଟ ବୋଲି କୁହାଯାଇ ପାରେ ।

ବଙ୍ଗଦେଶରେ "ସଉ" ନାମକ ଗଛରୁ ଯେପରି ଅବର (ଫଗୁ) ଓ ପିଲାମାନଙ୍କ ପାଇଁ ଏକ ପ୍ରକାର ଖାଦ୍ୟ (Patent food) ପ୍ରସ୍ତୁତ କରାଯାଏ, ଠିକ୍ ସେଇପରି ଏଠାରେ

ମିଳୁଥିବା ଅସଂଖ୍ୟ ରେର ମୂଳରୁ ସେପରି ଖାଦ୍ୟ ପ୍ରସ୍ତୁତ କରାଯାଇ ପାରେ । ଏଇ ଖାଦ୍ୟ ମଧ୍ୟରୁ ପ୍ରଧାନ ହେଉଛି "ପାଲୁଅଗୁଣ୍ଡି" । ଏକ ଜାତୀୟ ବନ୍ୟ ଗଛର ଅତି ମୋଟା କନ୍ଦାରୁ ଏହି ଗୁଣ୍ଡ ତିଆରି ହୁଏ । ଏଗୁଡ଼ିକ ଦେଖିବାକୁ ଚକ୍‌ ଖଡ଼ିପରି ସଫା, ଧଳା ଓ ଚିକ୍କଣ ଦେଖାଯାଏ । ଗାଈ କ୍ଷୀରରେ ଏଇ ଗୁଣ୍ଡ ଓ ଚିନି ପକାଇ ରାନ୍ଧିଲେ ଅତି ଉତ୍ତମ ଖାଦ୍ୟ ହୁଏ । ଏଇ ଖାଦ୍ୟ ଛୋଟ ପିଲାଙ୍କୁ ଏବଂ ରୋଗୀମାନଙ୍କୁ ଦିଆଯାଇ ପାରେ । ଜୟପୁରର କନ୍ଧ, ସଉରା, ଗାଦବା ଓ ପରଦା ଜାତିର ଲୋକମାନେ ଏଇ ଗୁଣ୍ଡ ତିଆରି କରନ୍ତି । ବ୍ୟବସାୟ ସୂତ୍ରରେ ଏଇ ଗୁଣ୍ଡର ଶିଳ୍ପ କଲେ ଜୟପୁରରେ ଏତେ ପରିମାଣ 'ପାଲୁଅଗୁଣ୍ଡି' ଆଦାୟ ହେବ ଯେ, ଏହାକୁ ସମଗ୍ର ଓଡ଼ିଶାବାସୀଙ୍କ ପାଇଁ ଯୋଗାଇବା ସଙ୍ଗେ ସଙ୍ଗେ ଭାରତର ଅନ୍ୟାନ୍ୟ ଦେଶକୁ ମଧ୍ୟ ରପ୍ତାନୀ କରାଯାଇପାରେ ।

ଦୀର୍ଘ ୧୨ ହଜାର ବର୍ଗମାଇଲ ବିସ୍ତୃତ ଜୟପୁର ରାଜ୍ୟରେ ଲକ୍ଷ ଲକ୍ଷ ଟଙ୍କାର ବିଭିନ୍ନ ପ୍ରକାର କଞ୍ଚାମାଲ ଥିବା ସତ୍ତ୍ୱେ ଏପର୍ଯ୍ୟନ୍ତ ସେଗୁଡ଼ିକର ସଦ୍‌ବ୍ୟବହାର ନିମନ୍ତେ କୌଣସି ଶିଳ୍ପାଗାରମାନ ସ୍ଥାପିତ ହୋଇ ନ ଥିବାରୁ, ଅନନ୍ୟୋପାୟ ହୋଇ ଏଇ ରାଜ୍ୟର ପ୍ରାୟ ୫ । ୬ ହଜାର ଅଧମ ପ୍ରଜା ପ୍ରତିବର୍ଷ ଆସାମ ଯାଇ ସେଠାର ଚା ବଗିଚାରେ କୁଲି କାମ କରନ୍ତି । ଏହି କାରଣରୁ ଏଠାର ଲୋକସଂଖ୍ୟା ବର୍ଷକୁ ବର୍ଷ କମି ଯାଉଛି । ସହସ୍ରାଧିକ ତେଲୁଗୁ, ତାମିଲ ଓ କାନାଡ଼ି ପ୍ରଭୃତି ଦେଶର ଲୋକମାନେ ଆସି ଏଠାରେ ବ୍ୟବସାୟ ବାଣିଜ୍ୟ କରି ଜୀବିକାର୍ଜନ କରୁଥିବା ସତ୍ତ୍ୱେ ସ୍ଥାନୀୟ ଅଧିବାସୀମାନେ ନିଜର ଅନ୍ନକଷ୍ଟ ଦୂର କରିବା ପାଇଁ କୌଣସି ସୁବିଧା ନ ପାଇବାରୁ ପିଲା ମାଇପଙ୍କୁ ଧରି ସୁଦୂର ଆସାମ ଯାଆନ୍ତି । ଏ ଦୃଶ୍ୟ ପ୍ରକୃତରେ ମର୍ମାନ୍ତିକ ଦେଖାଯାଏ ।

ଦେଶର ଏଇ ଅକର୍ମୀମାନଙ୍କୁ କାମ ଯୋଗାଇ ଏଠା ଜଙ୍ଗଲ୍‌ରେ ମିଳୁଥିବା କଞ୍ଚା ମାଲଗୁଡ଼ିକର ସଦ୍‌ବ୍ୟବହାର କରିବା ନିମନ୍ତେ ଏଇ ରାଜ୍ୟର ସ୍ଥାନେ ସ୍ଥାନେ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ସ୍ଥାପନ କରିବାକୁ ହେବ । *

---

* ସୁଖର ବିଷୟ, ଜୟପୁରର ନବୀନ ରାଜା ମହୋଦୟ ଏ ଦିଗରେ ବିଶେଷ ଯତ୍ନ ନେବା ପାଇଁ ଇଚ୍ଛା ପ୍ରକାଶ କରି ଏ ଲେଖକଙ୍କ ପାଖ ପତ୍ର ଖଣ୍ଡିଏ ଦେଇଥିଲେ । ନିକଟରେ ଜୟପୁରରେ ବିଭିନ୍ନ ପ୍ରକାର କୁଟୀର ଶିଳ୍ପର ଯୋଗାଡ଼ କରାଯାଉଥିବା ଭାବୀ ଓଡ଼ିଶା ପକ୍ଷେ ଗୋଟିଏ ଶୁଭ ଲକ୍ଷଣ ।

୨ୟ-ଗଞ୍ଜାମ—ଗଞ୍ଜାମ ଜିଲ୍ଲାର ନିମ୍ନ ସ୍ଥାନଗୁଡ଼ିକରେ ନାନା ପ୍ରକାର କାରୁଶିଳ୍ପ ହୁଏ । ଏହି କାର୍ଯ୍ୟ କରି ଶତ ଶତ ଲୋକ ଜୀବିକାର୍ଜନ କରନ୍ତି; କିନ୍ତୁ ଦେଶର ଅର୍ଥିକ ଦୁଃସ୍ଥିତି ଓ ଅକର୍ମୀଙ୍କ ସଂଖ୍ୟା କମ୍ କରିବା ପାଇଁ ଏହି ଶିଳ୍ପଗୁଡ଼ିକର ବହୁଳ ପ୍ରସାର କରିବାକୁ ହେବ । ଚେଷ୍ଟା କଲେ ଏହି ଶିଳ୍ପଗୁଡ଼ିକୁ ଶତଗୁଣ ବୃଦ୍ଧି କରାଯାଇ ପାରେ ଏବଂ ଏହି ଶିଳ୍ପଦ୍ୱାରା ପ୍ରସ୍ତୁତ ଦେଶୀ ଜିନିଷଗୁଡ଼ିକ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ କିମ୍ବା ଭାରତର ବଭିନ୍ନାଞ୍ଚଳରେ ବିକ୍ରୀ କରି ଧନୋପାର୍ଜନ କରାଯାଇ ପାରେ ।

(କ) ପାରଳାଖେମୁଣ୍ଡି—ଏହା ଗଞ୍ଜାମ ଜିଲ୍ଲାର ଗୋଟିଏ ଅତି ବଡ ଓ ପ୍ରସିଦ୍ଧ ରାଜଧାନୀ । ଏଠାରେ ନିମ୍ନ ପଦାର୍ଥର ଶିଳ୍ପଗୁଡ଼ିକ ହୁଏ :—

(୧) ଜାଇକାଠି— ଏହା ଗୋଟିଏ ଅତି ଶ୍ରେଷ୍ଠ ଜଙ୍ଗଲୀ ବୃକ୍ଷରୁ ଅଦାୟ ହୁଏ । ସେହି ଗଛ ଦେଖିବାକୁ ବେତ ବା ସରୁ ବାଉଁଶ ଗଛପରି ଦେଖାଯାଏ । ଏହାର ଉପର ଖୋଳ ବା ଚୋପା ଦେଖିବାକୁ ଯେପରି ଅତି ଚିକ୍କଣ, ସେହିପରି ନରମ ଓ ସୁନ୍ଦର । ଏଠାରେ କେତେକ ନିମ୍ନ ଜାତିର ଲୋକ ଏହି କାଠିର ଚୋପା କାଢ଼ି ତହିଁରେ ପେଡ଼ି, ଡାଲି, ପାଛିଆ, ଫୁଲଡ଼ାଲି, କୁଣ୍ଡା ପ୍ରସ୍ତୁତ ତିଆରି କରନ୍ତି । ଜାଇକାଠିର ପେଡ଼ି ଦେଖିବାକୁ ଅଧୁନିକ 'ସୁଟ୍‌କେସ୍' (Suit case) ପରି ଦେଖାଯାଏ । ପ୍ରଥମେ ବାଉଁଶ ପାତିଆରେ ପେଡ଼ିଟିଏ ତିଆରି କରି ତା ଉପରେ ପୁଣି ଏହି ଜାଇକାଠିର ଗୋଟିଏ ଖୋଳ ଦିଆଯାଏ । ଏହି ପେଡ଼ି ଅତି ସୁନ୍ଦର ଓ ମଜବୁତ ଦେଖାଯାଏ । ଏହାର ତଳ ଚାରି କୋଣରେ ସାମାନ୍ୟ ଚମଡ଼ା ବନ୍ଧାଇ ଦେଲେ ଏହି ପେଡ଼ି ୮ । ୧୦ ବର୍ଷ ବା ତତୋଧିକ କାଳ ଅକ୍ଷୁଣ୍ଣ ରହେ । ଯେଉଁମାନେ ରେଳରେ ବାରମ୍ବାର ଯା ଆସ କରନ୍ତି ସେମାନଙ୍କ ପାଇଁ ଏହି ପେଡ଼ି ଖଣ୍ଡିଏ ଅତି ଉପାଦେୟ ଥିବାର ଏ ଲେଖକ ଜାଣନ୍ତି । ଏହି ପେଡ଼ିର ବିସ୍ତୃତ ପ୍ରଚାର ହେଲେ ଆମ ଦେଶର ଶିକ୍ଷିତ ସମାଜ ଅଧିକ ମୂଲ୍ୟର ସୁଟ୍‌କେସ୍ ଛାଡ଼ି ଏହି ଦେଶୀ ଜିନିଷଗୁଡ଼ିକୁ ପ୍ରଚୁର ବ୍ୟବହାର କରନ୍ତେ ।

(୨) ଶିଙ୍ଘକାମ—ଗାଈ ଗୋରୁ ଏବଂ ହରିଣ ଓ ସମ୍ବର ପ୍ରଭୃତିର ଶିଙ୍ଘରେ ନାନା ପ୍ରକାର ପାନିଆ, କଲମକାଠି, ଛଡ଼ି, ଖେଳନା ଏବଂ ଲୁଗା ରଖିବା ପାଇଁ 'ର୍‌କ୍'(Rock) ପ୍ରଭୃତି ଏଠାରେ ତିଆରି ହୁଏ । ପ୍ରତିଦିନ ଏଠା ରେଳ ଷ୍ଟେସନରେ ଯାତ୍ରୀମାନେ ଏହି ଶିଳ୍ପ କାର୍ଯ୍ୟ ଗୁଡ଼ିକୁ କିଣି ନିଅନ୍ତି । ଏ ଦିଗରେ ଆହୁରି ଅଧିକ କାର୍ଯ୍ୟ କରିବା ପାଇଁ ଏଠାରେ କେତୋଟି ଶିଳ୍ପାଗାର ସ୍ଥାପନ କରିବାକୁ ହେବ ।

(୩) **ଗଞ୍ଜପାସାର** ( Playing Cards ) "ଗଞ୍ଜପା"ସାର ପାଇଁ ପାରଳାଖେମୁଣ୍ଡି ଖୁବ୍ ପ୍ରସିଦ୍ଧ । ଏଠାରେ 'ଚିତ୍ରକର'ମାନେ ଏହି ଶିଳ୍ପ କରନ୍ତି । ଛିଣ୍ଡାକନା, ରଦ୍ଦି କାଗଜ ଓ ଅପୂର୍ଣ୍ଣ ଅଠାରେ ଏହି ସାର ତିଆରି ହୁଏ । ଅଠାରେ ଅତି ବଡ ବଡ ପଟି ତିଆରି କରି ତହିଁରୁ ଚକ୍କା କାଟି ସେହି ଚକ୍କା ଗୁଡ଼ିକରେ ସାରର ବିଭିନ୍ନ ଚିତ୍ର ଚିତ୍ରିତ କରି ଗଞ୍ଜପା ତିଆରି କରନ୍ତି । ଏହି ସାର ଗୁଡ଼ିକ ଓଡ଼ିଶା ଓ ମାନ୍ଦ୍ରାଜର ବିଭିନ୍ନାଞ୍ଚଳକୁ ରପ୍ତାନୀ ହୁଏ ।

ଆମ ଦେଶର ନବ୍ୟ ଶିକ୍ଷିତ ବାବୁମାନେ ବିଦେଶୀ ତାସ ( Playing Cards ) କୁ ବେଶୀ ଆଦର କରି, ଅଧିକ ମୂଲ୍ୟ ଦେଇ ସେହି ତାସ କିଣୁଥିବାରୁ ଆମର ଏହି ଜାତୀୟ ଶିଳ୍ପର ଅବନତି ଘଟିଛି । ତଥାପି ଉତ୍ସାହ ପାଇଲେ ଏଠାରେ ଚିତ୍ରକରମାନେ ଏ ଦିଗରେ ଆହୁରି ଅଧିକ ସଚେଷ୍ଟ ହେବେ, ସନ୍ଦେହ ନାହିଁ । ଏହି କାର୍ଯ୍ୟ ଏ ଜାତିର ସ୍ତ୍ରୀ ଓ ପୁରୁଷ ସମସ୍ତେ କରନ୍ତି । ଏହି ଶିଳ୍ପକୁ ଉନ୍ନତି କରାଇଲେ ଅନେକ ଗରିବ ସ୍ତ୍ରୀ ପୁରୁଷ ପେଟପୁରା ଖାଇ ପାଇବେ ।

(୪) **କଣ୍ଢେଇ** — ଗୋବର, ଛିଣ୍ଡା କନା ଓ ଅପୂର୍ଣ୍ଣ ଅଠାରେ ଏଠାର ଚିତ୍ରକର-ମାନେ ପିଲାମାନଙ୍କ ପାଇଁ ଅତି ସୁନ୍ଦର ଖେଳନା କଣ୍ଢେଇ କରି ପାରନ୍ତି । ଏହି କଣ୍ଢେଇ ଗୁଡ଼ିକ ଦେଖିବାକୁ ଯେପରି ସୁନ୍ଦର, ସେହିପରି ମଜବୁତ ରହେ । ପାଳଧୂଆ କାଠ ଓ ସୋଲରେ ମଧ୍ୟ ଅନେକ ଗୁଡ଼ିଏ କଣ୍ଢେଇ, ଠାକୁର ପ୍ରତିମା ଓ ଅନ୍ୟାନ୍ୟ ରୂପ ଗୁଡ଼ିକ ଏମାନେ ତିଆରି କରନ୍ତି । ଏକା ଗଞ୍ଜାମ କାହିଁକି, ମାନ୍ଦ୍ରାଜର ଅନେକ ସ୍ଥଳରେ ଏହି ରୂପ ଓ କଣ୍ଢେଇର ଆଦର ଦେଖାଯାଏ । ପର୍ବ ପର୍ବାଣୀରେ ଯେଉଁ ନାଗ ନାଗଣୀ, ରଜା ରାଣୀ, ସାପ ସାପୁଆ ରାବଣ, ମାଙ୍କଡ, ହାତୀ ଘୋଡା ପ୍ରଭୃତି ବହୁରୂପ ବାହାରେ, ସେଗୁଡ଼ିକ ମଧ୍ୟ ଏଠା ଚିତ୍ରକରମାନେ ତିଆରି କରନ୍ତି । ଓଡ଼ିଶାର ରାଜା ମହାରାଜା ବା ଧନୀ ବ୍ୟକ୍ତିମାନଙ୍କର ବିବାହ ବ୍ରତ ସମୟରେ ସୁଦୂର କଲିକତା ଓ ମାନ୍ଦ୍ରାଜରୁ ଯେଉଁ ଚିତ୍ରବିଚିତ୍ର ଛବିମାନ ଅଧିକ ମୂଲ୍ୟ ଦେଇ କିଣାଯାଏ, ତା ଅପେକ୍ଷା ଏଠା ଚିତ୍ରକରମାନଙ୍କୁ ଉତ୍ସାହ ଦେଲେ ଏହି ଜାତୀୟ ଶିଳ୍ପର ବହୁତ ଉନ୍ନତି ହେବା ସଙ୍ଗେ ସଙ୍ଗେ ଏଠାର ଗରିବ ଚିତ୍ରକରମାନେ ଅତି ସୁନ୍ଦର ରୂପେ ଜୀବିକାର୍ଜନ କରନ୍ତେ ।

(୫) ଓଡ଼ିଶାର ତନ୍ତୀ ଓ ଗୌନ୍ତ୍ରିଆଙ୍କ ପରି ଏଠାରେ 'ପାଇଣ୍ଡା'ନାମକ ଏକ ଜାତିର ଲୋକ ବାସ କରନ୍ତି । ଏମାନେ ଅତି ସୁନ୍ଦର ମୋଟା ଟୋଲିଆ (Towels) ଓ ଚାଦର ତିଆରି କରନ୍ତି । 'କାଭିଲ ବୁଣା" ( Double Twisted ) ଟୋଲିଆ, ବିଛଣା ଚାଦର ପ୍ରଭୃତି

ଏମାନେ ଏପରି ସୁନ୍ଦର ଭାବରେ ବୁଣନ୍ତି ଯେ, ଏ ଗୁଡ଼ିକ ଅତି ଚିକ୍କଣ ଓ ମସୃଣ ଦେଖାଯାଏ । ଗଞ୍ଜାମର ଅନେକ ଧନୀ ଓ ଶିକ୍ଷିତ ଲୋକମାନେ ଏଠା ତୌଲିଆ ଓ ଗୁଦଡ଼ି ବିଶେଷରୂପେ ବ୍ୟବହାର କରନ୍ତି । ବିଦେଶୀ ( Turkish Bath Towels ) ତୌଲିଆ ଅପେକ୍ଷା ଏ ଗୁଡ଼ିକ କୌଣସି ଗୁଣରେ ନ୍ୟୂନ ନ ଥିବା ସ୍ଥଳେ ଦେଶର ଶିକ୍ଷିତବୃନ୍ଦ ଏହି ତୌଲିଆ ଗୁଡ଼ିକୁ ବ୍ୟବହାର କରି ଏହାର ବହୁଳ ପ୍ରଚାର କଲେ ଏହି ଶିଳ୍ପ ଯେ ଅଚିରେ ଉନ୍ନତି ଲାଭ କରନ୍ତା, କହିବା ବାହୁଲ୍ୟ ମାତ୍ର ।

(ଖ) ଓ (ଗ) **ଟିକ୍କାଲି ଓ ମଞ୍ଜୁଷା**—ଗଞ୍ଜାମର ଦୁଇଟି ଅତି ପ୍ରାଚୀନ ଓ ପ୍ରସିଦ୍ଧ ରାଜବଂଶର ବଂଶଧରମାନେ ଏଠାରେ ରାଜତ୍ୱ କରନ୍ତି । ପ୍ରାୟ ୧୬୦ ବର୍ଷ ହେଲା ଗଞ୍ଜାମ ଜିଲ୍ଲା ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ରହିଛି । ଇତିମଧ୍ୟରେ ଓଡ଼ିଆ-ଇତର (Non-oriyas)ମାନଙ୍କ ଦ୍ୱାରା ଏହି ଅଞ୍ଚଳର ସରକାରୀ କଚେରି ପ୍ରଭୃତି ଚାଳିତ ହେଉଥିବାରୁ ସ୍ଥାନୀୟ ଓଡ଼ିଆମାନଙ୍କର ଆର୍ଥିକ, ସାମାଜିକ ଓ ଶିଳ୍ପକଳାଦିର କୌଣସି ଉନ୍ନତି ହୋଇପାରି ନାହିଁ । ଏହି ସୁଯୋଗରେ ଗତ ସୀମା-ନିର୍ଦ୍ଦେଶ କମିଟି ଏ ଦୁଇଟି ରାଜ୍ୟକୁ ଓଡ଼ିଶାରୁ ଅଲଗା କରି ରଖିବା ପାଇଁ ମତ ଦେଇ ଅଛନ୍ତି । ଓଡ଼ିଆଙ୍କ ପକ୍ଷରେ ଏହାଠାରୁ ବଳି ଅତି ଦୁଃଖର ବିଷୟ ଆଉ କଣ ଥାଇପାରେ । ଯାହା ହେଉ, ଅଦୂର ଭବିଷ୍ୟତରେ ଏ ଦୁଇଟି ଖାଣ୍ଟି ଓଡ଼ିଆ ପ୍ରଦେଶ ଓଡ଼ିଶା ସଙ୍ଗେ ମିଶିବାର ଆଶା କରାଯାଏ । ସେ ଦିଗରେ ସ୍ଥାନୀୟ ଓଡ଼ିଆ ଯୁବକ ଓ ଶିକ୍ଷିତବୃନ୍ଦ ଆଜଠୁଁ ସଚେଷ୍ଟ ରହିବେ ବୋଲି 'ଆଶାକରୁ' ।

ଟିକ୍କାଲିରେ ଅତି ଉତ୍କୃଷ୍ଟ 'କାଠ'ର ଶିଳ୍ପ କାର୍ଯ୍ୟମାନ ହୁଏ । କାଠର ପାନିଆ, ପେଡ଼ି, ପିଲାଙ୍କପାଇଁ ଘୋଡ଼ା, ହାତୀ, ଓଚ ପ୍ରଭୃତି ଖେଳନା କଣ୍ଢେଇ ଗୁଡ଼ିକ ସବୁ କାଠରେ ତିଆରି ହୁଏ ।

ମଞ୍ଜୁଷାରେ ଶିଙ୍ଘର ନାନାପ୍ରକାର ଶିଳ୍ପ କାମ ହୁଏ । ପର୍ବ ପର୍ବାଣିରେ ଯେଉଁ ଚନ୍ଦ୍ର ବଦନ ଓ ବହୁରୂପୀ ମୁଣ୍ଡମାନ ପ୍ରଦର୍ଶିତ ହୁଏ, ସେପରି ଅନେକ ବର୍ଣ୍ଣ ଓ ଧରଣର ରୂପ ଗୁଡ଼ିଏ ଏଠାରେ ତିଆରି ହୁଏ । ଅତି ପ୍ରାଚୀନ କାଳରୁ କେବଳ ଉତ୍କୃଷ୍ଟ ଶିଳ୍ପ କଳା ପାଇଁ ଏହି ସ୍ଥାନ ପ୍ରଖ୍ୟାତ ପାଇଥିବାରୁ ଏହାର ନାମ 'ମଞ୍ଜୁଷା' ହୋଇଥିବାର ଜଣାଯାଏ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ବାହାରେ ରହିଲେହେଁ ଏ ଦୁଇଟି ରାଜ୍ୟର ଶିଳ୍ପ କଳା-ଗୁଡ଼ିକୁ ଅଧିକ ଉନ୍ନତ କରି ସ୍ଥାନୀୟ ଓଡ଼ିଆମାନଙ୍କର ପରାକାଷ୍ଠା ସଜୀବ ରଖିବା ନିମନ୍ତେ

ଏଠାରେ କେତୋଟି ଶିଳ୍ପ-ସଦନ ସ୍ଥାପନ କରିବାକୁ ହେବ । ଓଡ଼ିଆମାନଙ୍କର ଏଇ ଶିଳ୍ପ-କଳା ଯୋଗୁଁ ଏ ଦେଶଗୁଡ଼ିକ ଓଡ଼ିଶାର ବୋଲି ପରିଚୟ ଦେଉଥିବ । *

(ଘ) **ବ୍ରହ୍ମପୁର**—ଭଲ ପାଟ ପାଇଁ ଗଞ୍ଜାମ ବ୍ରହ୍ମପୁର ଚିର-ପ୍ରସିଦ୍ଧ । ଏଠାର ତନ୍ତୀ ଓ ସାଲିଆ ( ତେଲୁଗୁ ପାଟ ସାଲିଆ ) ମାନେ ଅତିସୁନ୍ଦର ପାଟ ଶାଢ଼ୀ ଓ ପାଟ ଯଥା ପ୍ରଭୃତି ତିଆରି କରନ୍ତି । ପ୍ରତିବର୍ଷ ହାରାହାରି ୮ । ୧୦ ଲକ୍ଷ ଟଙ୍କାର ପାଟ ଏଠାରେ ତିଆରି ହୋଇ ଦକ୍ଷିଣ ଭାରତ, ଓଡ଼ିଶା ଓ ବଙ୍ଗଦେଶକୁ ରପ୍ତାନୀ ହୁଏ । ବ୍ରହ୍ମପୁରରେ 'ପାଟପୋକ' କିମ୍ବା 'ପାଟଖୋଷା' ମିଳେ ନାହିଁ । ଏଠା ବ୍ୟବସାୟୀମାନେ ଦକ୍ଷିଣ ମହୀଶୂର ରାଜଧାନୀ ବାଙ୍ଗାଲୋର ( Bangalore ) କିମ୍ବା କଲିକତାର ଢାକା ( Dacca ) ରୁ ପାଟ-ଖୋଷା ମଗାଇ ପାଟ ବୁଣନ୍ତି । ଓଡ଼ିଶା ଗଡ଼ଜାତରେ ଲକ୍ଷ ଲକ୍ଷ ଟଙ୍କାର ପାଟ ଖୋଷା ପ୍ରସ୍ତୁତ ହୁଏ; କିନ୍ତୁ ସେ ସବୁ ବିଦେଶୀ ମହାଜନମାନଙ୍କୁ ନିଲାମ କରି ଦେଉଥିବାରୁ ସେଇ ଖୋଷାର ସଦ୍‌ବ୍ୟବହାର ଓଡ଼ିଶା କିମ୍ବା ଗଞ୍ଜାମରେ ହୁଏ ନାହିଁ । ନିଜ ଦେଶର ଖୋଷା-ଗୁଡ଼ିକୁ ବିଦେଶୀ ମହାଜନଙ୍କୁ ବିକି କରୁଥିବାରୁ ଏଠାର ଶିଳ୍ପୀମାନେ ଅଧିକ ମୂଲ୍ୟ ଦେଇ ବିଦେଶରୁ ପାଟଖୋଷା ଆଣନ୍ତି । ଏଇ କାରଣରୁ ଏଠାର ପାଟ ଅଧିକ ମୂଲ୍ୟରେ ବିକ୍ରୀ ହୁଏ । ଜାତୀୟ ଶିଳ୍ପର ଉନ୍ନତି କରିବା ପାଇଁ ଓଡ଼ିଶା ଗଡ଼ଜାତରେ ମିଳୁଥିବା ପାଟଖୋଷାଗୁଡ଼ିକୁ ଏଠାରେ ରଖାଇ ଏଇ ଶିଳ୍ପୀମାନଙ୍କଦ୍ୱାରା ପାଟ ତିଆରି କଲେ ଏଇ ଶିଳ୍ପ ଦ୍ୱାରା ଅଞ୍ଚଳର ଅନେକ ଲୋକ ସୁଖରେ ଜୀବିକାର୍ଜନ କରନ୍ତେ ।

ପାଟ ବ୍ୟତୀତ ଏଠାରେ ଅତି ସରୁସୂତାର ଶାଢ଼ୀ, ପିନ୍ଧା ଓ ଯଥା ପ୍ରଭୃତି ତିଆରି ହୁଏ । ସହରର ଶିକ୍ଷିତ ବାବୁମାନଙ୍କ ମଧ୍ୟରେ ବିଲାତି ଲୁଗାର ବହୁଳ ପ୍ରଚାର ଥିବାରୁ ଏଠା ତନ୍ତୀମାନେ ସରୁ ବିଲାତି ସୂତା ଆଣି ଅତି ସୂକ୍ଷ୍ମଲୁଗା ତିଆରି କରନ୍ତି । ଦେଶୀ

---

* ମଞ୍ଜୁଷାର 'ଶିଳ୍ପକଳା ବିଶାରଦ' ଶ୍ରୀ ଦାଶରଥି ମହାରଣା ଓ 'ଶିଶୁ ଚିତ୍ରକର' ଶ୍ରୀମାନ୍ ହରିଶରଣ ମହାପାତ୍ରଙ୍କର କାର୍ଯ୍ୟ ଦେଖିଲେ ଯେ କୌଣସି ଉତ୍କଳୀୟ ନିଜକୁ ଗୌରବାନ୍ୱିତ ମନେ କରନ୍ତି । ଦାଶରଥି ମହାରଣା ମଞ୍ଜୁଷାର ସ୍ୱର୍ଗତ ରାଜା ଶ୍ରୀନିବାସ ରାଜମଣି ଦେବଙ୍କ ପୃଷ୍ଠପୋଷକତାରୁ ଶିଳ୍ପର ଯେଉଁ ଉତ୍କୃଷ୍ଟ କାର୍ଯ୍ୟମାନ ଶିକ୍ଷା କରିଅଛନ୍ତି, ତହିଁର ଯଥେଷ୍ଟ ପ୍ରମାଣ ବର୍ତ୍ତମାନ ମଞ୍ଜୁଷା ଗଡ଼ରେ ଦେଖିପାରୁ । ମହାରଣା ହାତୀ ଦାନ୍ତର କାର୍ଯ୍ୟ, ତୈଳଚିତ୍ର, ଧାତୁ ପ୍ରତିମା ଗଠନ ଓ 'ବ୍ଲକ' ତିଆରି ପ୍ରଭୃତି କରି ପାରନ୍ତି । ଶିଶୁ ହରିଶରଣ ଦୁଇହାତ ଓ ଦୁଇ ଗୋଡ଼ରେ ଯେଉଁ ଅଦ୍ଭୁତ ଚିତ୍ର-ବିଦ୍ୟା ଦେଖାଏ, ତା ଦେଖିଲେ ବିସ୍ମିତ ହେବାକୁ ହୁଏ ।

ଅବସ୍ଥରେ ତିଆରି ସରୁ ସୂତା ପାଇଲେ ଏମାନେ ପୂର୍ବ ଭାବ ମଲ୍ଲକନ୍ଦା ତାହାଠାରୁ ଅଧିକ ଉନ୍ନତ ଧରଣର ଲୁଗା ଯେ ତିଆରି କରିପାରନ୍ତେ, ସନ୍ଦେହ ନାହିଁ । ବର୍ତ୍ତମାନ ଦେଶୀ ଲୁଗାର ବ୍ୟବହାର ଦେଶବାସୀଙ୍କ ମଧ୍ୟରେ ବଢ଼ିଥିବାରୁ ସରୁ ସୂତା ତିଆରି କରିବା ପାଇଁ ଏଠାରେ ଗୋଟିଏ ଦୁଇଟି ଶିଳ୍ପାଗାର ସ୍ଥାପନ କଲେ ସ୍ଥାନୀୟ ତନ୍ତୀମାନଙ୍କର ଅବସ୍ଥା ଅଧିକ ଭଲ ହେବ ।

(ଙ) ବ୍ରହ୍ମପୁର ନିକଟବର୍ତ୍ତୀ ବେଲଗୁଣ୍ଠା ଓ ବୈରାଣୀ ପ୍ରଭୃତି ସ୍ଥାନରେ କଂସା ଓ ପିତଳ ବାସନ, ଗରା, ଢାଲ ପ୍ରଭୃତି ତିଆରି ହୁଏ । ଏହି ବାସନଗୁଡ଼ିକୁ ଏ ଅଞ୍ଚଳର ପ୍ରତ୍ୟେକ ଓଡ଼ିଆ ବ୍ୟବହାର କରନ୍ତି । ସମୟ ସମୟରେ ଏଠାରୁ ବାସନ ଓଡ଼ିଶା ଓ ଓଡ଼ିଶା-ଗଡ଼ଜାତକୁ ମଧ୍ୟ ରପ୍ତାନୀ ହୁଏ । ବେଲଗୁଣ୍ଠାରେ ତିଆରି ହେବା ପିତଳ ଓ ରୁପାର ମଗର, ଶେଉଳ ପ୍ରଭୃତି କୃତ୍ରିମ ମାଛ ( Artificial fish ) ଗୁଡ଼ିକ ସୁଦୂର ମାନ୍ଦ୍ରାଜ ଓ କଲିକତା ଅଧିବାସୀଙ୍କ ମଧ୍ୟରେ ବିଶେଷରୂପେ ଆଦୃତ ହୁଏ । ଏହି ମାଛ ଦେଖିବାକୁ ଯେପରି ସୁନ୍ଦର, ଠିକ୍ ସେହିପରି ମଜବୁତ । ଆଜିକାଲି ଯେଉଁମାନେ ଅଧିକ ମୂଲ୍ୟ ଦେଇ ବିଦେଶରୁ ବିଭିନ୍ନ ପ୍ରକାର 'କାରଖଣ୍ଡ' ଲୌହ ଚକ ପ୍ରଭୃତି କିଣି ଅଫିସ ଟେବୁଲ ଉପରେ 'କାଗଜ ଚପା' ( Paper weight ) ପାଇଁ ବ୍ୟବହାର କରନ୍ତି, ସେମାନେ ଏହି 'ମାଛ' ଗୁଡ଼ିକୁ କିଣିବା ଉଚିତ ମନେକରୁ । ଟେବୁଲ ଉପରେ ଏ ଗୁଡ଼ିକ ରଖାଗଲେ ନିଜର ସାମୟିକ ଇଚ୍ଛାପୂରଣ ହେବା ସଙ୍ଗେ ସଙ୍ଗେ ଗୋଟିଏ ଜାତୀୟ ଶିଳ୍ପର ଉନ୍ନତି କରି-ଯାଇପାରେ ।

(ଚ) ରସୁଲକୁଣ୍ଡା (ଘୁମୁସର) ଅଞ୍ଚଳରେ "ବରଡ଼ ପଟି" ନାମକ ଏକ ପ୍ରକାର ସୋପପଟି ତିଆରି ହୁଏ । ଏଗୁଡ଼ିକୁ ସ୍ଥାନୀୟ ଅଧମ ଅଧିବାସୀ (କନ୍ଧ, ସୌରା ପ୍ରଭୃତି ଜାତିର ଲୋକମାନେ) ମାନେ ତିଆରି କରନ୍ତି । ଏ ଗୁଡ଼ିକ 'ସୋପ' ମଣିଣା ପରି ବେଶ୍ ଶକ୍ତ ଓ ଅନେକ ଦିନ ଯାଏ ରହେ ।

ଉପର୍ଯ୍ୟୁକ୍ତ ପ୍ରଧାନ ସ୍ଥାନର ଶିଳ୍ପ ବ୍ୟତୀତ ଗଞ୍ଜାମର ବିଭିନ୍ନାଞ୍ଚଳରେ କେତେକ ସ୍ଥାନୀୟ ଶିଳ୍ପ ପାଇଁ ପ୍ରଚୁର କଞ୍ଚା ମାଲ ମିଳେ । ଏ ଗୁଡ଼ିକୁ ସଂଗ୍ରହ କରି ସ୍ଥାନେ ସ୍ଥାନେ ଶିଳ୍ପାଗାରମାନ ସ୍ଥାପନ କଲେ ଏଠାରେ ଜିଲ୍ଲାର ଅକର୍ମୀ ଓ ପାଟକ ଜାତିର ଲୋକମାନେ କାର୍ଯ୍ୟ କରି ପାରିବେ । ବ୍ରହ୍ମପୁର ଗଞ୍ଜାମ ଜିଲ୍ଲାର ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର । କେବଳ ବାଣିଜ୍ୟ ବ୍ୟବସାୟ ନେଇ ସହସ୍ରାଧିକ ଲୋକ ଅନ୍ୟାନ୍ୟ ସ୍ଥାନରୁ ଆସି ଏଠାରେ ସବୁଦ୍ଧାର କରି ରହନ୍ତି । ଗଞ୍ଜାମ ମାଲ (ଘୁମୁସର) ସଙ୍ଗେ ଓଡ଼ିଶାଗଡ଼ଜାତ ଓ ଅନୁଗୁଳ

ମିଶିଥିବାରୁ ଏବଂ ଆଜିକାଲି ସେହି ମାଲ ଅଞ୍ଚଳରେ ମୋଟରର ସୁବିଧା ଥିବାରୁ ଗଡ଼ଜାତରୁ ଲକ୍ଷ ଲକ୍ଷ ଟଙ୍କାର କଞ୍ଚାମାଲ ଏହି ବ୍ରହ୍ମପୁର ଦେଇ ମାନ୍ଦ୍ରାଜ ଓ କଲିକତା ଅଞ୍ଚଳକୁ ରପ୍ତାନୀ ହେଉଛି । ନିକଟରେ ବିଶାଖାପାଟଣାର ନୂତନ ବନ୍ଦର ବାଣିଜ୍ୟ ବ୍ୟବସାୟ ପାଇଁ ପ୍ରସ୍ତୁତ ହେବମାତ୍ରେ ଏହି କଞ୍ଚାମାଲର ରପ୍ତାନୀ ଅଧିକ ବୃଦ୍ଧି ଲାଭ କରିବ । ଘୁମୁସର ଓ ଓଡ଼ିଶାଗଡ଼ଜାତରୁ କଞ୍ଚାମାଲ ସବୁ ଦେଶ ବିଦେଶକୁ ରପ୍ତାନୀ କରି ଅଳ୍ପ କେତୋଟି ମହାଜନ—ବିଶେଷତଃ ତେଲୁଗୁ, ମୁସଲମାନ ଓ ତାମିଲ ମହାଜନ—ବିଶେଷରୂପେ ଲାଭବାନ୍ ହୋଇ ପାରନ୍ତି । । ତଦ୍ଦ୍ୱାରା ଆମ ଦେଶର ଲକ୍ଷ ଲକ୍ଷ ଅକର୍ମୀଙ୍କ ଭାଗ୍ୟ-ପରିବର୍ତ୍ତନ ହେବା ବଡ଼ ବିଡ଼ମ୍ବନା ମାତ୍ର । ଲକ୍ଷ ଲକ୍ଷ ଟଙ୍କାର କଞ୍ଚାମାଲ ରପ୍ତାନୀ ହେଉଥିବାରୁ ଏବଂ ଏଠାରେ ସେ ଗୁଡ଼ିକୁ ରଖି କୌଣସି ଶିଳ୍ପାଗାର ସ୍ଥାପନର ବ୍ୟବସ୍ଥା ଏପର୍ଯ୍ୟନ୍ତ ହୋଇ ନ ଥିବାରୁ ଆମ ଦେଶର ଅର୍ଥିକ ଦୁଃସ୍ଥିତି ଦିନନ୍ଦିନ ବୃଦ୍ଧିଲାଭ କରୁଛି । ସଙ୍ଗେ ସଙ୍ଗେ ଆମ ଦେଶର ହଜାର ହଜାର ଲୋକ ବିଦେଶ ଯାଇ କୁଲି କାମ କରୁଛନ୍ତି । ଦେଶର ଭିତ୍ତି-ଅର୍ଥିକ ଅବସ୍ଥା ବଦଳାଇବା ନିମନ୍ତେ ଏବଂ ପ୍ରବାସୀ ଓଡ଼ିଆଙ୍କୁ ଆଣି ଏଠାରେ ସେମାନଙ୍କର ଅନ୍ନକଷ୍ଟ ଦୂର କରିବା ନିମନ୍ତେ ବିଭିନ୍ନ ପ୍ରକାର ଶିଳ୍ପାଗାର ସ୍ଥାପନ କରିବା ପାଇଁ ଆଜଠୁଁ ଦେଶର ନେତାମାନେ ଯୋଗାଡ଼ କରିବାକୁ ହେବ । ତା ନ ହେଲେ ଏ ଦେଶର ଅର୍ଥିକ ଦୁଃସ୍ଥିତି ଅଧିକ ଶୋଚନୀୟ ହେବ ।

୩ୟ **ପୁରୀ ଜିଲା**— ନିମ୍ନ କେତୋଟି ପ୍ରଧାନ ଶିଳ୍ପ ନେଇ ପୁରୀଜିଲା ଚିରପ୍ରସିଦ୍ଧ । କିନ୍ତୁ ଏ ପର୍ଯ୍ୟନ୍ତ କୌଣସି ଶିଳ୍ପକୁ କୁଟୀର ଶିଳ୍ପାକାରରେ ବ୍ୟବହାର କରାଯାଇ ନାହିଁ । ଜିଲାର ପ୍ରତ୍ୟେକ ପ୍ରଧାନ ସ୍ଥାନରେ, ଏପରିକି ପ୍ରତ୍ୟେକ ଥାନାରେ ଗୋଟିଏ ଦୁଇଟି କୁଟୀର ଶିଳ୍ପାଗାର ସ୍ଥାପନ କରି ଏହି ଶିଳ୍ପଗୁଡ଼ିକର କ୍ରମୋନ୍ନତି ଦିଗରେ ବିଶେଷ ଚେଷ୍ଟା କଲେ ଏ ଗୁଡ଼ିକ ଯେ ଅଧିକ ଉନ୍ନତି ଲାଭ କରିବ, କହିବା ବାହୁଲ୍ୟ ମାତ୍ର । ଏହି ବ୍ୟବସାୟଗୁଡ଼ିକ ଦ୍ୱାରା ଏ ଜିଲାର ଲକ୍ଷ ଲକ୍ଷ ଲୋକ ସୁବିଧାରେ କାର୍ଯ୍ୟ ପାଇ ପାରନ୍ତି ଓ ତଦ୍ଦ୍ୱାରା ସେମାନଙ୍କର ଅନ୍ନକଷ୍ଟ ଦୂର ହୋଇ ପାରନ୍ତା । ବର୍ତ୍ତମାନ ସେହି ଶିଳ୍ପଗୁଡ଼ିକ ସମ୍ବନ୍ଧରେ ବିସ୍ତୃତ ବିବରଣୀ ନିମ୍ନରେ ଦିଆଯିବ —

( ୧ ) **ଲୁଗା ବୁଣା**—ପୁରୀ ଜିଲାର ଅନେକ ସ୍ଥାନରେ ଅତି ସୂକ୍ଷ୍ମ ଓ ସୁନ୍ଦର ଲୁଗା ବୁଣାହୁଏ । ଓଡ଼ିଶାର ଅନ୍ୟାନ୍ୟ ଜିଲା ଅପେକ୍ଷା ପୁରୀ ଜିଲାର ସଦର ସବ୍‌ଡିଭିଜନ 'ବନ୍ୟାର' ଗୋଟିଏ ପ୍ରଧାନ କେନ୍ଦ୍ର ଥିବାରୁ ଏଠାର ବନ୍ୟାପ୍ରପୀଡ଼ିତ ଲୋକମାନେ ଅରଟରେ ସୂତା

ଜାତି ଜୀବିକାର୍ଜନ କରନ୍ତି । ଗତ ୮।୧୦ ବର୍ଷ ମଧ୍ୟରେ ଅର୍ଥାତ୍ ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ ପ୍ରଚଳିତ ହେବା ଦିନୁ ଏହି ଶିଳ୍ପ ଅନେକ ଉନ୍ନତି କରିଛି ସତ୍ୟ; କିନ୍ତୁ ଏହାକୁ କୌଣସି ଲୋକ "କୁଟୀର ଶିଳ୍ପ" କରିବାପାଇଁ ଚେଷ୍ଟା କରି ନାହାନ୍ତି । ତା ହେଲେ ଏହି ଶିଳ୍ପର ପ୍ରସାର ଅଭାବ ବୃଦ୍ଧି ଲାଭ କରନ୍ତା । ଏହି ଜିଲ୍ଲାର ବୋଲଗଡ଼, କାକଟପୁର, ଗୋପ, ସତ୍ୟବାଦୀ ଓ ଓଳସିଂହ ପ୍ରଭୃତି ସ୍ଥାନରେ ଅତି ସୁନ୍ଦର ଓ ସୂକ୍ଷ୍ମ ଲୁଗା, ଚଦର, ଧୋତି, ଗାମୁଛା ପ୍ରଭୃତି ବୁଣାହୁଏ । ଉତ୍ସାହ ପାଇଲେ ସ୍ଥାନୀୟ ଅଧିବାସୀମାନେ ଯେ ସୂତାକଟା ଓ ଲୁଗାବୁଣା ଘରେ ଘରେ କରନ୍ତେ, ସନ୍ଦେହ ନାହିଁ ।

ଇଂରାଜୀ ରାଜତ୍ୱରେ ଓଡ଼ିଶାବାସୀ କେବଳ ବିଦେଶୀ ଲୁଗାକୁ ଆଦର କରିଥିବାରୁ ଏହି ଜିଲ୍ଲାର ତନ୍ତୀମାନେ ସ୍ୱବୃତ୍ତି ଛାଡ଼ି କୃଷି କରିବାକୁ ବାଧ୍ୟ ହୋଇଛନ୍ତି । ତଥାପି ଏହି କେତେ ବର୍ଷ ହେଲା ବିଦେଶୀ ବହିଷ୍କାର ପ୍ରଚଳିତ ହେବାଯୋଗୁଁ ଏଠାର ଲୁଗା-ବୁଣାଳୀଙ୍କ ସଂଖ୍ୟା ବୃଦ୍ଧିଲାଭ କରିଥିବା ଜଣାଯାଏ । ପ୍ରଚୁର ପରିମାଣରେ ତୂଳା ମିଳିଲେ ମଧ୍ୟ ଏହି ସଂଖ୍ୟା ବୃଦ୍ଧି ହୁଏ । * ଏଠା ତନ୍ତୀମାନେ ମଧ୍ୟ ଲୁଗାବୁଣାକୁ ଗୋଟିଏ "ସଂଗଠିତ ଶିଳ୍ପ" (Organised Industry) ବୋଲି ମନେ କରନ୍ତି ନାହିଁ । କୃଷି ଓ ଅନ୍ୟାନ୍ୟ ବ୍ୟବସାୟ କରୁ କରୁ ଘରେ ପିଲମାଇପେ ତନ୍ତର ସମସ୍ତ ଉପକରଣମାନ ଠିକ୍ କରିଦେଇଥିଲେ କିଛିକ୍ଷଣ ତନ୍ତ ପାଖରେ ବସି ଲୁଗା ବୁଣନ୍ତି । ଏହା ବୁଣିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ନ ଥାଏ । ଯେ କୌଣସି ସମୟ ସୁବିଧା ହେଲା ତ ସେତିକିଣି କିଛି ଲୁଗା ବୁଣା ହେଲା । ଏହି ଉଦାସୀନତା ସତ୍ତ୍ୱେ ଗୋଟିଏ ତନ୍ତୀ ପରିବାର ଦିନକୁ ହାରାହାରି ୫ ° ୍/, ୫ ୦ ୍ ପଇସା ରୋଜଗାର କରିପାରେ । ଯଦି ଏହି ଶିଳ୍ପକୁ ସେମାନେ ଜୀବିକାର୍ଜନର ଗୋଟିଏ ପ୍ରଧାନ ବ୍ୟବସାୟ ମନେ କରି ସେ ଦିଗରେ କାର୍ଯ୍ୟ କରନ୍ତେ, ତେବେ ଅନେକ ଅଧିକ ଲାଭବାନ୍ ହୁଅନ୍ତେ । ବନ୍ୟାପ୍ରପୀଡ଼ିତ ଓ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ଥିବା ୧୧୦୦୦ ତନ୍ତୀଙ୍କ ପାଇଁ "ସୂତାକଟା ଓ ଲୁଗା ବୁଣା"କୁ ଗୋଟିଏ ପ୍ରଧାନ କୁଟୀର ଶିଳ୍ପ କରି ଏ ଦିଗରେ

* "The number of cotton weavers has increased by 35% since 1901, and now with dependants stands at about 11000. This is partly caused by the attempted boycott of mill-made cloth, and is accompanied by an increase of about 30% in the import of raw cotton into Orissa." (*Puri Dt. Gazetteer. P. 03*)

ବିଶେଷ ଉତ୍ସାହ ଦେବାପାଇଁ ଏଇ କେତେ ବର୍ଷ ହେଲ ସ୍ଥାନୀୟ ସହଯୋଗ ସମିତିମାନ ଚେଷ୍ଟା କରୁଥିବା ସୁଖର ବିଷୟ । *

( ୨ ) **ଲୁଣ ପୋଲ୍ତାନ** ( Salt manufacture) ମନୁଷ୍ୟ ଖାଦ୍ୟର ପ୍ରଧାନ ଉପାଦାନ ମଧ୍ୟରୁ "ଲୁଣ" ଗୋଟିଏ । ମନୁଷ୍ୟ ବ୍ୟତୀତ ଗାଈଗୋରୁ ଓ ଗଛବୃକ୍ଷ ମଧ୍ୟ ଲୁଣ ବ୍ୟବହାର କରନ୍ତି । ଏଥିପାଇଁ ବୋଧହୁଏ, ଦୟାମୟ ଭଗବାନ ସମୁଦ୍ର ଓ ଚିଲିକା ପାଣିରେ ଏବଂ କେତେକ ପାର୍ବତ୍ୟ ବା ଖଣି ପ୍ରଦେଶରେ ଲୁଣ ସଞ୍ଚିତ କରିଅଛନ୍ତି । ଏଇ ଲୁଣ ସଂଗ୍ରହ କରି ଯେ କୌଣସି ଲୋକ ବ୍ୟବହାର କରି ପାରନ୍ତି । କିନ୍ତୁ ଦେଶର ସରକାର ନିଜ ଆୟ ବୃଦ୍ଧି ନିମନ୍ତେ ଏଇ ଐଶୀଦାନ ଉପରେ ମଧ୍ୟ ଟିକସ ବସାଇ ଏହାକୁ ଯେ କୌଣସି ଲୋକ ଯେପରି ସଂଗ୍ରହ କରି ନ ପାରେ ସେଥିପାଇଁ କଡ଼ା ଆଇନ ମଧ୍ୟ ଜାରି କରିଛନ୍ତି । ଲୋକମାନଙ୍କ ଖାଦ୍ୟର ପ୍ରଧାନ ଉପାଦାନ ଏଇ 'ଲୁଣ' ସଂଗ୍ରହ କରିବା ପାଇଁ ଶାସକ ଓ ଶାସିତଙ୍କ ମଧ୍ୟରେ ଏକାଧିକ ବାର ମତାନ୍ତର ଘଟିଯାଇଛି; ତଥାପି କେହି ତାହାର ଦାବୀ ଛାଡ଼ି ନାହାନ୍ତି ।

ଆମ ଓଡ଼ିଶାର ଚିଲିକା ଓ ସମୁଦ୍ର ଉପକୂଳରେ ପ୍ରଚୁର ଲୁଣ ମିଳେ । ଭାରତର ଅତି ଉତ୍କୃଷ୍ଟ ଲୁଣ ଓଡ଼ିଶାର ଅପନ୍ତରା ସମୁଦ୍ର କୂଳରେ ମିଳୁଥିବାର ସରକାରୀ ରିପୋର୍ଟରୁ ଜଣାଯାଏ । ଶତାଧିକ ବର୍ଷ ପୂର୍ବେ ଓଡ଼ିଶାର ଜଣେ କମିସନର ଏ ସମ୍ବନ୍ଧେ ଲେଖିଛନ୍ତି—

"The finest salt of all India was manufactured in the wild inhospitable tract along the sea board of Orissa." ( Vide, Stirling's Account of Orissa. )

ଏଇ ଲୁଣ ବ୍ୟବସାୟରୁ "ଇଷ୍ଟଇଣ୍ଡିଆ କମ୍ପାନୀ" ବାର୍ଷିକ ହାରାହାରି ୧୮୦୦୦୦୦ ଟଙ୍କା ରାଜସ୍ୱ ଅଦାୟ କରୁଥିଲେ ଏବଂ ୧୮୯୬-୯୭ ଖ୍ରୀଷ୍ଟାବ୍ଦରେ ଚିଲିକା ଓ ପୁରୀ ଉପକୂଳରୁ

---

* There is no regular system and no fixed hours of work. * * It is estimated that a family which uses the ordinary type of loom earns on average from ten to twelve annas a day. * * attempts have been made to encourage the use of the fly-shuttle loom as well as to increase the local growing of cotton by the Co-operative Societies. ( *P. 203. P. D. G.* )

ପ୍ରାୟ ୧୯୬୫୦୦୦ ମହଣ ଲୁଣ ଆଦାୟ ହୋଇଥିଲା । ଏହି ବ୍ୟବସାୟ ଦ୍ୱାରା ଏ ଜିଲ୍ଲାର ପ୍ରାୟ ୧୨।୦୨ ଲକ୍ଷ ଲୋକ ସୁଖରେ ଜୀବିକାର୍ଜନ କରୁଥିଲେ । କିନ୍ତୁ ଓଡ଼ିଶାରେ ଇଂରାଜୀ ରାଜତ୍ୱ ସ୍ଥାପିତ ହେବା ପରେ ମାନ୍ଦ୍ରାଜ ଓ ବିଲାତ ଲୁଣ ଆସି ଓଡ଼ିଶା ବଜାରରେ ଅତି ଶସ୍ତାରେ ବିକ୍ରୀ ହେବାରୁ ସ୍ଥାନୀୟ ଅଧିବାସୀ ନିଜର ଜାତୀୟ ବ୍ୟବସାୟ ଛାଡ଼ି ଦେବାକୁ ବାଧ୍ୟ ହେଲେ । ବିଦେଶୀ ଲୁଣ ଆମଦାନୀ କରିବା ସଙ୍ଗେ ସଙ୍ଗେ ୧୯୦୦ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଲୁଣ ବ୍ୟବସାୟ ବନ୍ଦ କରିଦେବାରୁ ଏଠାର ଲକ୍ଷାଧିକ ଲୋକ ଅକର୍ମା ହେଲେ । *

ଗତ ୧୯୩୧ ଖ୍ରୀଷ୍ଟାବ୍ଦରେ ମହାତ୍ମା ଗାନ୍ଧି ଓ ଭାରତ ବଡ଼ଲାଟ ଲର୍ଡ ଇରୁଇନଙ୍କ ମଧ୍ୟରେ ଯେଉଁ ସନ୍ଧି ହୋଇଥିଲା, ସେହି ସନ୍ଧି ସରତ ଅନୁସାରେ ଭାରତବାସୀ କେବଳ ନିଜ ଖର୍ଚ୍ଚ ନିମନ୍ତେ ଲୁଣ ପୋକ୍ତାନ କରି ପାରିବେ ବୋଲି ସ୍ଥିର ହୋଇଥିଲା । * ସେହି ସରତ ଅନୁସାରେ ଭାରତର ସମୁଦ୍ର ଉପକୂଳବାସୀ ସମୁଦ୍ର ପାଣି କିମ୍ବା ସମୁଦ୍ର ମାଟି ଆଣି "ଫଣା" ଲୁଣ ତିଆରି କରନ୍ତି । ଏହି ଲୁଣ ଦେଖିବାକୁ ଯେପରି ସଫା ଓ ଶୁକ୍ଳ, ସେହି ପରି ସ୍ୱାଦୁ ଲାଗେ । ବ୍ୟବସାୟ ପାଇଁ ପ୍ରଚୁର ପରିମାଣରେ ତିଆରି କରିବା ସୁବିଧା ନ ଥିଲେ ସୁଦ୍ଧା ନିଜ ନିଜ ଖର୍ଚ୍ଚ ପାଇଁ ପ୍ରତ୍ୟେକ ଲୋକ ଏହି ବ୍ୟବସାୟ ( ଶିଳ୍ପ ) କରି ପାରନ୍ତି । ତଦ୍ୱାରା ନିଜର ଆବଶ୍ୟକୀୟ ପରିମାଣ ଲୁଣ ଆଦାୟ ହେବ, ଗୋଟିଏ ପ୍ରାଚୀନ ଶିଳ୍ପର ପୁନରୁଦ୍ଧାର ହେବ ଏବଂ ଲୋକମାନଙ୍କର ଗୋଟିଏ ପ୍ରଧାନ ଖାଦ୍ୟର ଅଭାବ ମଧ୍ୟ ଦୂର ହେବ । ଏହି ଶିଳ୍ପ କରିବା ପାଇଁ ବିଶେଷ ଜ୍ଞାନ କିମ୍ବା ପରିଶ୍ରମ ଦରକାର ନାହିଁ । ଗ୍ରୀଷ୍ମ ଦିନରେ ଚିଲିକା ବା ସମୁଦ୍ର ପାଣି କୂଳରୁ ଛାଡ଼ିଯାଏ । ସେହି ଶୁଖିଲା ସ୍ଥାନରୁ କିଛି ମାଟି ଆଣିବାକୁ ହେବ । ଗୋଟିଏ ମାଠିଆରେ ସେହି ମାଟି ଓ କିଛି ପାଣି ପୁରାଇ କିଛି ସମୟ ରଖିବା ପରେ ତାକୁ ଛାଣି ଦେଇ ସେହି ଛଣା ପାଣିକୁ ଚୂଲିରେ ରଖି ଗରମ କରିବ । ହାଣ୍ଡିର ପାଣି ଫୁଟିବା ସମୟରେ ତହିଁରୁ ଲୁଣ ବାହାରେ । ସେହି ଲୁଣକୁ କାଢ଼ି ଖଣ୍ଡିଏ ଗାମୁଛାରେ ପୁଡ଼ିଆ ବାନ୍ଧି ୨।୪ ଦିନ ପାଉଁଶ ଗଦାରେ ପୋତିଦେବ । ସେପରି ପୋତିବା

---

* "The manufacture ( salt manufacture ) was finally stoped in 1899-1900, and *with it died an indigenous industry which supported a large number of people.*" ( *P. Dt. Gazetteer P. 203* )

* Vide Article 20 of "Gandhi-Irwin Pact" ( Delhi Pact )

ଏହି ସନ୍ଧିର ବିସ୍ତୃତ ବିବରଣୀ ନିମନ୍ତେ "ପଲ୍ଲୀମଙ୍ଗଳ"ର ୮ମ ଭାଗ, ୬ଷ୍ଠ ସଂଖ୍ୟା ଦେଖନ୍ତୁ ।

ଲୁଣରୁ ମଇଳା ପାଣି ବାହାରି ଯାଇଥିବାରୁ ସେ ଲୁଣ ବେଶ୍ ପରିଷ୍କୃତ ହେବ । ୪ ଦିନ ପରେ କାଢ଼ି ସେ ଲୁଣକୁ ଖାଇବ । ଏହା କରିବା ପାଇଁ ଅଳ୍ପ କେତେକ କାଠ ବା ଜାଳ ଓ ୨।୪ ଟି ହାଣ୍ଡି ହେଲେ ଯଥେଷ୍ଟ । ଚିଲିକା ଓ ସମୁଦ୍ର ଉପକୂଳର କେତେକ ପ୍ରଜା ଏହି ପ୍ରଣାଳୀରେ ଲୁଣ ମାରି ଖାଆନ୍ତି; କିନ୍ତୁ ଏହି ଜିଲ୍ଲାର ଅର୍ଦ୍ଧାଧିକ ଲୋକ ନିଜର ଉଦାସୀନତା ଯୋଗୁଁ କିମ୍ବା ବିଦେଶୀ ଲୁଣର ମୋହ ଛାଡ଼ି ନ ପାରି ଅଧିକ ପଇସା ଦେଇ ସେହି ବିଦେଶୀ ଲୁଣ କିଣନ୍ତି; ଅଥଚ ନିଜର ଏହି ଜାତୀୟ ଶିଳ୍ପକୁ ପୁନର୍ଜୀବିତ କରିବାପାଇଁ ଏ ଦିଗରେ ବିଶେଷ ଚେଷ୍ଟା କରାଯାଏ ନାହିଁ । ଏହି ଶିଳ୍ପ ପ୍ରତ୍ୟେକ ଲୋକ, ସ୍ତ୍ରୀପୁରୁଷ, ନିଜ ନିଜର ଘରେ କରି ପାରନ୍ତି । ତଦ୍ଦ୍ୱାରା ଆର୍ଥିକ ଉନ୍ନତି ହେବା ସଙ୍ଗେ ସଙ୍ଗେ ଗୋଟିଏ ପ୍ରଧାନ ଶିଳ୍ପ ସଜୀବ ହେବ ।

( ୩ ) **ମାଛ ଓ ଶୁଖୁଆ** :— ଏ ଜିଲ୍ଲାର ପ୍ରାୟ ୧୫ । ୨୦ ହଜାର ଲୋକ ମତ୍ସ୍ୟ-ବ୍ୟବସାୟ କରି ବଞ୍ଚନ୍ତି । ନଦ, ନଦୀ, ଚିଲିକା ଓ ସମୁଦ୍ରରୁ ମାଛ ମାରି ସେହି ମାଛକୁ ଦେଶବିଦେଶରେ ବିକ୍ରୀ କରନ୍ତି । ଏକା ଚିଲିକା ହ୍ରଦରୁ ପ୍ରତିବର୍ଷ ୪।୫ ଲକ୍ଷ ଟଙ୍କାର ମାଛ ଆଦାୟ ହୁଏ । ଏଥିରୁ ଅର୍ଦ୍ଧାଧିକ ମାଛ କଲିକତା, ବ୍ରହ୍ମଦେଶ ଓ ଓଡ଼ିଶା ଗଡ଼ଜାତକୁ ରପ୍ତାନୀ ହୁଏ । ଅବଶିଷ୍ଟ ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ବିକ୍ରି ହୁଏ ଏବଂ ମତ୍ସ୍ୟଜୀବୀମାନେ ଖାଆନ୍ତି । ଉନ୍ନତ ଉପାୟ ଦ୍ୱାରା ଏହି ମାଛଗୁଡ଼ିକୁ ମାରି ବିଦେଶରେ ବିକ୍ରି କରିବା ବ୍ୟତୀତ ଏହି ମାଛଗୁଡ଼ିକର ବଂଶ କିପରି ବୃଦ୍ଧି ହେବ ଓ କିପରି ଦେଶର ବିଭିନ୍ନ ସ୍ଥାନରେ ମତ୍ସ୍ୟଶିଳ୍ପ ବା "ମତ୍ସ୍ୟପାଳନ"ର (Pisci Culture) ଉନ୍ନତି ହେବ,ସେ ଦିଗରେ ଏପର୍ଯ୍ୟନ୍ତ କୌଣସି ଚେଷ୍ଟା କରାଯାଇ ନାହିଁ । "ମତ୍ସ୍ୟଶିଳ୍ପ" ଅଭାବରେ ପ୍ରତିବର୍ଷ ଏ ଦେଶରୁ କୋଟି କୋଟି ମହଣ ମାଛ ମରାଯାଇ ବିଦେଶରେ ବିକ୍ରି ହେଲେ ଏଠା ନଦୀ, ପୋଖରୀ ଓ ଚିଲିକା ପ୍ରଭୃତିରେ ଥିବା ମାଛ ଯେ ଏକବାର ଲୋପ ହେବ, ସନ୍ଦେହ ନାହିଁ । ଏ ବିଷୟରେ ଜଣେ ଜିଲ୍ଲା ହାକିମ ଲେଖିଥିଲେ —

"The introduction of any improved methods of capture without anything being done to increase the supply, *would probably lead to the speedy depletion of the waters.*"*

ବଙ୍ଗ ଦେଶରେ ପ୍ରାୟ ପ୍ରତ୍ୟେକ ଭଦ୍ରଲୋକର ବାଡ଼ି ହତା କିମ୍ବା ବଗିଚାରେ ଗୋଟିଏ ଦିଟା ଗାଡ଼ିଆ ( Pond ) ଥାଏ । ଏହି ଗାଡ଼ିଆରେ ଭଲ ଭଲ ମାଛ ମଞ୍ଜି ଆଣି

* Puri Dt. Gazatteer, P. 205.

ରଖାଯାଏ । ୧୨ ବର୍ଷ ମଧ୍ୟରେ ଏହି ଗାଡ଼ିଆରେ ଥିବା ମାଛ ସେହି ଘରର ଖର୍ଚ୍ଚ ପାଇଁ ବ୍ୟବହାର କରନ୍ତି । ଓଡ଼ିଶାବାସୀ ପ୍ରାୟ ସମସ୍ତେ ମାଛ ଖାନ୍ତି । ମାଛ ଗୋଟିଏ ପୁଷ୍ଟିକର ଖାଦ୍ୟ । ଦୁର୍ବଳ ଓ ଶିର ରୁଗ୍ଣ ବ୍ୟକ୍ତିମାନେ ପରିମିତ ପରିମାଣ ମାଛ ପ୍ରତିଦିନ ଖାଇଲେ ବେଶୀ ହୃଷ୍ଟପୁଷ୍ଟ ହୁଅନ୍ତି । ମାଛ ଖାଇଲେ ଦେହର ଚର୍ବିବୃଦ୍ଧି ହୁଏ ଓ ସ୍ୱାସ୍ଥ୍ୟ ଭଲ ରହେ । ସମୁଦ୍ର ବା ଚିଲିକାମାଛ ଠାରୁ ଭଲ ପାଣି ( ମଧୁର ପାଣି ) ମାଛ ରୋଗୀମାନଙ୍କ ପକ୍ଷେ ଗୋଟିଏ ସୁମିଷ୍ଟ ଖାଦ୍ୟ । ଏହି ମାଛ ରୋଗୀମାନଙ୍କୁ ପଥ୍ୟ ପାଇଁ ଦିଆଯାଏ । ଓଡ଼ିଶାରେ ଖାଲ, ଗାଡ଼ିଆ ବା ଛୋଟ ଛୋଟ 'ପୋଖରୀ' (Pond) କରିବା ପାଇଁ ଯଥେଷ୍ଟ ସ୍ଥାନ ଅଛି । ଏହି ସ୍ଥାନ-ଗୁଡ଼ିକରେ ବର୍ଷାଦିନର ପାଣି ଅଟକ ରଖି ସେଠାରେ "ମାଛଚାଷ" ବା ମତ୍ସ୍ୟପାଳନ କରାଯାଇ ପାରେ । ତଦ୍ଦ୍ୱାରା ନିଜର ଖାଦ୍ୟ ଖର୍ଚ୍ଚ ଚଳିବା ସଙ୍ଗେ ସଙ୍ଗେ ଅଧିକ ମାଛକୁ ବିକ୍ରି କରି ଧନୋପାର୍ଜନ କରାଯାଇ ପାରେ । ଏପରି ପୋଷିବା ମାଛ ପାଇଁ ବିଶେଷ କିଛି ଖାଦ୍ୟ ଦରକାର ନାହିଁ । କେବଳ ଦଳ ପଙ୍କ ଓ କୁଣ୍ଡା, ଖୁଦ ପ୍ରଭୃତି ହେଲେ ଯଥେଷ୍ଟ ହେବ ।

ପୁରୀ ଜିଲ୍ଲାରୁ ପ୍ରତିବର୍ଷ ହଜାର ହଜାର ମହଣ ଶୁଖୁଆ ଓଡ଼ିଶା ଗଡ଼ଜାତ, କଲିକତା ଓ ବ୍ରହ୍ମଦେଶକୁ ରପ୍ତାନୀ ହୁଏ । ଚିଲିକାରେ ଶୁଖୁଆ ବ୍ୟବସାୟ କରି ଏକାଧିକ ବଙ୍ଗାଳୀ, ତେଲିଙ୍ଗୀ ଓ ପଠାଣ ହଜାର ହଜାର ଟଙ୍କାର ସମ୍ପତ୍ତି ଲାଭ କରିଛନ୍ତି । ଓଡ଼ିଶାରେ ଏଡ଼େ ବଡ଼ ଧନୋପାର୍ଜନର ସୁବିଧା ଥିବା ସତ୍ତ୍ୱେ କୌଣସି ଓଡ଼ିଆ ପୁଅ ଏପର୍ଯ୍ୟନ୍ତ ଏ ଦିଗରେ ବିଶେଷ ଚେଷ୍ଟା କରି ନାହାନ୍ତି ।

(୪) **ନଡ଼ିଆ**—ନଡ଼ିଆ ପୁରୀଜିଲ୍ଲାର ଗୋଟିଏ ପ୍ରଧାନ ଫସଲ । ଏ ଜିଲ୍ଲାର ଅର୍ଦ୍ଧାଧିକ ପ୍ରଦେଶରେ ନଡ଼ିଆ ଗଛ ହୁଏ । ଏ ଜିଲ୍ଲାର ବନ୍ୟା ବା "ଧୋଇଆ" ଅଞ୍ଚଳ ଓ ବ୍ରାହ୍ମଣ ଶାସନଗୁଡ଼ିକ ନଡ଼ିଆ ଗଛରେ ପୂରି ରହିଛି । ପଇଡ଼ ଓ ନଡ଼ିଆ ଖାଇବା ଏବଂ ଏ ଗଛର ପତ୍ର, ବାହୁଙ୍ଗା ପ୍ରଭୃତି ଜାଳ କରିବା ବ୍ୟତୀତ ଏଠାର କୌଣସି ଲୋକ ଏହି ଗଛର ବିଶେଷ ସଦ୍‌ବ୍ୟବହାର କରନ୍ତି ନାହିଁ । ପ୍ରାୟ ୪୫୦୦ ଲୋକ ନଡ଼ିଆ କତାର ଦଉଡ଼ି ବଳନ୍ତି ବୋଲି ଗତ ୧୯୨୧ ଖ୍ରୀଷ୍ଟାବ୍ଦ ଜନସୁମାରି ରିପୋର୍ଟରୁ ଜଣାଯାଏ । କିନ୍ତୁ ଏହି ୪୫୦୦ ଲୋକ ମଧ୍ୟରୁ ପ୍ରାୟ ସମସ୍ତେ ମାନ୍ଦ୍ରାଜ ଅଞ୍ଚଳର ତେଲୁଗୁ ଜାତିର; ମାତ୍ର ଆମ ଓଡ଼ିଆମାନଙ୍କ ମଧ୍ୟରୁ ଅତି କମ୍ ଲୋକ ନଡ଼ିଆ ଗଛ ପଇଡ଼, ନଡ଼ିଆ, କତା ଓ ବାହୁଙ୍ଗା ପ୍ରଭୃତିର କୁଟୀର ଶିଳ୍ପ କରନ୍ତି ।

ନଡ଼ିଆ ଗଛରୁ ପାଣି, ଖାଦ୍ୟ, ତେଲ, ଜାଳ, ଛପା ( ପୁଞ୍ଜିଣା ) ଓ ଦଉଡ଼ି ପ୍ରଭୃତି ଅଦାୟ ହୁଏ * । ନଡ଼ିଆ କତାରେ ଅତି ଉତ୍କୃଷ୍ଟ ରକମ ଦଉଡ଼ି ଓ ବାଣି ତିଆରି ହୁଏ । ଚିଲିକା, ସମୁଦ୍ର ଓ ନଦୀ ଗୁଡ଼ିକରେ ଯେଉଁ ଡଙ୍ଗା ବା ନାହା ଚାଲେ, ସେଇ ନାହା ଓ ଡଙ୍ଗା ପ୍ରଭୃତି ତିଆରି ହେବା ସମୟରେ ପ୍ରଚୁର ପରିମାଣ କତା ଦଉଡ଼ି ଦରକାର ହୁଏ । ଅନେକ ସ୍ଥାନରେ ଘର ଛପର ଓ ବାଡ଼ ବା ଘମୁଣ୍ଡିଅ ପ୍ରଭୃତି ବାନ୍ଧିବା ପାଇଁ କତାଦଉଡ଼ି ଦରକାର ହୁଏ । ବ୍ରାହ୍ମଣ ଶାସନଗୁଡ଼ିକରେ ପ୍ରତିଦିନ ଯେଉଁ ଶହ ଶହ ପଇଡ଼ ଛଡା ହୁଏ, ସେଇ ପଇଡ଼ର କତାଗୁଡ଼ିକ ସେଇପରି ମାଟିରେ ମିଶିଯାଏ; ଅତି କମ୍ ଲୋକ ଏଗୁଡ଼ିକୁ ସଂଗ୍ରହ କରି କତା ଦଉଡ଼ି କରନ୍ତି । କତା ଦଉଡ଼ି କରିବାପାଇଁ ବିଶେଷ କିଛି ଜ୍ଞାନ ବା ବୁଦ୍ଧି ବିଦ୍ୟା ଖର୍ଚ୍ଚ ହୁଏ ନାହିଁ । ଅବାଳବୃଦ୍ଧବନିତା ନିଜ ନିଜର ଫୁରସତ ସମୟରେ ସାଙ୍ଗ ସାଥିଙ୍କ ସଙ୍ଗେ ବସି ଗପ କଲା ସମୟରେ ମେଞ୍ଚାଏ କତା ରଖି ବାଣି ଦଉଡ଼ି ତିଆରି କରି ପାରନ୍ତି । ଜଣେ ଲୋକ ଏଇ ବ୍ୟବସାୟରେ ଦିନକୁ ହାରାହାରି ୩।୪ ଅଣା ପଇସା ରୋଜଗାର କରିପାରେ । ନଡ଼ିଆ କତାରେ ଅନେକ ପ୍ରକାର ଶିଳ୍ପକାର୍ଯ୍ୟ କରାଯାଇ ପାରେ । ନଡ଼ିଆ କତାରେ ଶେଯ ତକିଆ, ଖୁସ୍ ଖୁସ୍ ( Khus Khus ) ଓ 'ପା' ପୋଛ, ରୋଗୀମାନଙ୍କ ପାଇଁ ଗଦି ପ୍ରଭୃତି ତିଆରି କରାଯାଇ ପାରେ ।

ନଡ଼ିଆ ଶସରୁ ଅତି ଭଲ ତେଲ ଓ ପିଡ଼ିଆ ହୁଏ । ନଡ଼ିଆ ପିଡ଼ିଆ ଲୋକମାନେ ଖାଆନ୍ତି ଏବଂ ତହିଁରେ ଅତି ଉତ୍କୃଷ୍ଟ ସାର (ଖତ) ହୁଏ । ଏଇ ତେଲରୁ ଭଲ ସାବୁନ୍ ମଧ୍ୟ ତିଆରି ହୁଏ କିମ୍ବା ମହମବତି ( Candle ) ମଧ୍ୟ କରାଯାଏ । ନଡ଼ିଆ ତେଲରେ କେତେ ପ୍ରକାର ସୁଗନ୍ଧ ଦ୍ରବ୍ୟ ମିଶାଇ ଉତ୍ତମ "କେଶତୈଳ" ମଧ୍ୟ କରନ୍ତି । ଏଇ ଶସରେ ଖଜା, ପିଠା ପ୍ରଭୃତି ମଧ୍ୟ ହୁଏ ।

ନଡ଼ିଆ ପତ୍ରରେ ତାଟି ବା ଗୁଞ୍ଜ ତିଆରି ହୁଏ । ଏ ଗୁଡ଼ିକ ଗ୍ରୀଷ୍ମଦିନରେ ଶୋଇବା ପାଇଁ କିମ୍ବା ବାଡ଼ ବାନ୍ଧିବା ପାଇଁ ବ୍ୟବହାର କରାଯାଏ । ନଡ଼ିଆ ପତ୍ରର ଶିରା ଖଡ଼ିକା କାଢ଼ି ତହିଁରେ ଝାଡ଼ୁଣି, ଲୁଅ ବା ମୁଢ଼ିଭାଜିବା ପାଇଁ 'ଖଡ଼ିକାମୂଠା' ପ୍ରସ୍ତୁତ ହୁଏ ଏବଂ ଏଇ କାଠିକୁ ସରୁ ସରୁ କରି ତଦ୍ଦ୍ୱାରା ଖେଳପତ୍ର ସିଲାଇ କରନ୍ତି । ଶୁଖିଲା ଗଛ ବାହୁଙ୍ଗା ଓ ନଡ଼ିଆ ସଢ଼େଇ ପ୍ରଭୃତି ଭଲ ଜାଳ ହୁଏ । ପଇଡ଼, ନଡ଼ିଆ ଓ ନଡ଼ିଆ ଗଛର ଅନ୍ୟାନ୍ୟ ଅଂଶ ନେଇ ଯେଉଁ ଶିଳ୍ପ କରାଯାଇପାରେ ସେଥିପାଇଁ ପୁରୀଜିଲ୍ଲାର ୧୬ ଶାସନରୁ ପ୍ରତ୍ୟେକ ଶାସନରେ ଏକାଧିକ ଶିଳ୍ପାଗାର ସ୍ଥାପନ କଲେ ଏଠାରେ ସ୍ଥାନୀୟ ଅକର୍ମୀମାନେ କାର୍ଯ୍ୟ କରି ସୁଖରେ ରହନ୍ତେ ।

* The tree provides drink, food, oil, fuel, matting and rope"

( ୫ ) **ପ୍ରସ୍ତର ଶିଳ୍ପ** —ପ୍ରସ୍ତର ଶିଳ୍ପ ପାଇଁ ପୁରୀ ଜିଲ୍ଲା ଚିର ପ୍ରସିଦ୍ଧ । ଓଡ଼ିଶାର ସ୍ୱାଧୀନ ରାଜାମାନଙ୍କ ସମୟରେ ଏହି ଶିଳ୍ପ ତାର ଚରମ ସୀମାରେ ପହଞ୍ଚିଥିଲା । * ତା ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୧ଶ ଶତ ବର୍ଷ ଆଗରୁ ମଧ୍ୟ ପୁରୀ ଜିଲ୍ଲାରେ ପ୍ରସ୍ତର ଶିଳ୍ପର ବିଶେଷତ୍ୱ ଥିଲା । ତହିଁର ପ୍ରଧାନ ନିଦର୍ଶନ ଧଉଳିର "ଅଶ୍ୱଥାମା" ପାହାଡ଼ରେ ଖୋଳା ହୋଇଥିବା ହାତୀ, ନଗ୍ରଜ ପାହାଡ଼ରେ ଥିବା ବୌଦ୍ଧଲିପି ଏବଂ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ପ୍ରଭୃତି । ଧଉଳିର ଅଶ୍ୱଥାମା ପାହାଡ଼ରେ ଖୋଳା ଯାଇଥିବା 'ହାତୀ' ଏକା ଓଡ଼ିଶାରେ ନୁହେ, ସମଗ୍ର ଭାରତରେ ତାହାହିଁ ଅତି ପ୍ରାଚୀନ 'ପ୍ରସ୍ତର ଶିଳ୍ପ' ବୋଲି ପଣ୍ଡିତମାନେ କହନ୍ତି—"This ( the Elephant ) is one of the oldest carvings in India." ( Mr. Kitto's Report on the Dhauli Inscriptions ) ଉପର୍ଯ୍ୟୁକ୍ତ ଘଟଣାରୁ ପ୍ରସ୍ତର ଶିଳ୍ପ ଲାଗି ଓଡ଼ିଶାର ଶିଳ୍ପୀମାନେ କେତେଦୂର ଦକ୍ଷତା ଓ ପ୍ରଶଂସା ଲାଭ କରିଥିଲେ ସ୍ପଷ୍ଟ ଅନୁମିତ ହୁଏ । ପରବର୍ତ୍ତୀ କାଳରେ ଏହି ଶିଳ୍ପର ପରାକାଷ୍ଠା ଭୁବନେଶ୍ୱର ଓ କୋଣାର୍କ ମନ୍ଦିରରେ ଦେଖା ଯାଉଛି । କିନ୍ତୁ ଆଜି ସେହି ଶିଳ୍ପର ବିଶେଷ ଆଦର ନ ଥିବାରୁ ଏହି ଶିଳ୍ପୀମାନେ ହୁଏ ତ ସ୍ୱବୃତ୍ତି ଛାଡ଼ି କୃଷି କରନ୍ତି କିମ୍ବା ବିଦେଶ ଯାଇ କୁଲି କାମ କରନ୍ତି । ଅଳ୍ପ କେତେଜଣ କାରିଗର ଭୁବନେଶ୍ୱର ଓ ପୁରୀରେ ରହି ଏହି ଶିଳ୍ପର ସାମାନ୍ୟ ସ୍ମୃତି ଜାଗ୍ରତ କରୁଛନ୍ତି ।

ଦୀର୍ଘ ୩।୪ ଶତ ବର୍ଷ ହେଲା, ଅର୍ଥାତ୍ ଓଡ଼ିଶାରୁ ସ୍ୱାଧୀନତା ଲୋପ ହେବା ଦିନରୁ (୧୫୬୮) ଓଡ଼ିଶାର ପ୍ରସ୍ତର ଶିଳ୍ପୀମାନେ ଶାସକମାନଙ୍କଠାରୁ କୌଣସି ଉତ୍ସାହ ନ ପାଇ ସ୍ୱବୃତ୍ତି ଛାଡ଼ୁଛନ୍ତି । ତଥାପି, ସମୟ ସମୟରେ ଏମାନଙ୍କ ଦ୍ୱାରା ତିଆରି ହେବା ପ୍ରସ୍ତର ମୂର୍ତ୍ତି, ମନ୍ଦିର ଓ ଅନ୍ୟାନ୍ୟ କାରୁକାର୍ଯ୍ୟପୂର୍ଣ୍ଣ ଶିଳ୍ପଗୁଡ଼ିକ ଦେଶ ବିଦେଶର ପଣ୍ଡିତମାନଙ୍କ ଦ୍ୱାରା ପ୍ରଶଂସିତ ହେଉଥିବାର ଜଣାଯାଏ । ଗଡ଼ଜାତ ନୀଳଗିରିର କଳାମୁଗୁନି ପଥର, ଡୋମପଡ଼ାର କୁଣ୍ଡା ପଥର ଓ ଖୋରଧା ଅଞ୍ଚଳରୁ ସଂଗ୍ରହ କରାଯାଇ ଥିବା ପ୍ରସ୍ତରରେ ଏଠା କାରିଗରମାନେ

* "Puri is one of the few districts in the province in which stone-carving of any merit can be found. × × × It is practically only in Orissa, under the flourishing native dynasties first established in the early centuries of the x'n era, that a great style of stone architecture and stone carving has developed."
( *Vide. Mr. E. B. Havell's "Stone-carving in Bengal" 1906* )

ଯେଉଁ ପ୍ରତିମୂର୍ତ୍ତିଗୁଡ଼ିକୁ ତିଆରି କରନ୍ତି, ସେଗୁଡ଼ିକୁ ୟୁରୋପ ଓ ଆମେରିକାବାସୀ ମଧ୍ୟ ସମୟ ସମୟରେ କିଣି ନିଅନ୍ତି । ବର୍ତ୍ତମାନ ସୁଦ୍ଧା ଏହି ଶିଳ୍ପର କ୍ରମୋନ୍ନତି କରିବାପାଇଁ କେତୋଟି ଶିଳ୍ପାଗାର ସ୍ଥାପନ କଲେ ଓଡ଼ିଶାର ଏହି ପ୍ରାଚୀନ ଶିଳ୍ପ ମୃତ୍ୟୁ ଠେକ ଜଟିବ ଓ ଅସଂଖ୍ୟ କାରିଗର କାର୍ଯ୍ୟ କରିବାପାଇଁ ବାହାରିବେ ।

ସୂକ୍ଷ୍ମ ଓ କାରୁକାର୍ଯ୍ୟପୂର୍ଣ୍ଣ ପ୍ରସ୍ତର ଶିଳ୍ପ ବ୍ୟତୀତ ପୁରୀ ଜିଲ୍ଲାର ଖଣ୍ଡଗିରି, କୁହୁଡ଼ି, ଓଲସିଂହ ନିକଟବର୍ତ୍ତୀ ବଉଲମାଳା, ନୈରି, କାଳୁପଡ଼ା ଓ ଭୁବନେଶ୍ୱରରେ ମାକଡ଼ା ପଥରର କୁଅନଳ, ଗାଈକୁଣ୍ଡ, ପଥୁରି, ଭାଙ୍ଗକୁଣ୍ଡ, ଚନ୍ଦନପେଡ଼ା ପ୍ରଭୃତି ମଧ୍ୟ ତିଆରି ହୁଏ । ଏହି ମାକଡ଼ା ପଥରକୁ ସୁନ୍ଦରରୂପେ ଚିକ୍କଣ କରି କାଟି ଏ ଅଞ୍ଚଳର ଅନେକ ଲୋକ ପକ୍କାଘର, ଖମାର ଘର ପ୍ରଭୃତି କରନ୍ତି । ଏହି ଦେଶୀ ଶିଳ୍ପକୁ ଆଦର କରି ଏଠା ଶିଳ୍ପୀମାନଙ୍କୁ ଉତ୍ସାହ ଦେଲେ ଏହି ଶିଳ୍ପ ଯେ ପୁଣି ପୁନର୍ଜୀବିତ ହେବ, ସନ୍ଦେହ ନାହିଁ ।

( ୬ ) **ଚିତ୍ରଶିଳ୍ପ**— ପ୍ରସ୍ତର ଶିଳ୍ପ ପରି ଚିତ୍ରଶିଳ୍ପ ଦିଗରେ ମଧ୍ୟ ପୁରୀ ଜିଲ୍ଲାର ଶିଳ୍ପୀମାନେ ବିଶେଷ ଦକ୍ଷତା ଲାଭ କରିଥିଲେ ଓ ବର୍ତ୍ତମାନ ସୁଦ୍ଧା ପୁରୀର 'ଚିତ୍ରକର'ମାନେ ଏହି ଶିଳ୍ପକୁ ବଞ୍ଚାଇ ରଖିଛନ୍ତି । ପ୍ରତିବର୍ଷ ପୁରୀର ବିଭିନ୍ନ ଯାତ୍ରା ଓ ପର୍ବ ପର୍ବାଣୀ ସମୟରେ ଏଠାର ଚିତ୍ରକରମାନେ ଯେଉଁ ଚିତ୍ରଶିଳ୍ପର 'ପ୍ରଦର୍ଶନୀ'ମାନ ଦେଖାନ୍ତି, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ଏହି ଶିଳ୍ପ ଆଦୌ ପୁରୀରୁ ଲୋପ ପାଇ ନାହିଁ । ଉତ୍ସାହ ପାଇଲେ ସେମାନେ ଏ ଦିଗରେ ଆହୁରି ଉନ୍ନତି କରିପାରନ୍ତି ।

ପ୍ରତିବର୍ଷ ଏହି ଚିତ୍ରକରମାନଙ୍କଦ୍ୱାରା ତିଆରି ହୋଇଥିବା ଜଗନ୍ନାଥ ପଟି ବା ମହାପ୍ରଭୁ ପଟି ସହସ୍ରାଧିକ ସଂଖ୍ୟାରେ ବିକ୍ରି ହୁଏ । ଆଜିକାଲି କଲିକତା ଓ ବୋମ୍ବାଇର କେତେକ ବ୍ୟବସାୟୀ ଏହି ଚିତ୍ରପଟିଗୁଡ଼ିକୁ ମେସିନ୍ ଯନ୍ତ୍ରରେ ଛପାଇ କରି ବିକ୍ରି କରୁଥିବାରୁ ଏଠାର ଦେଶୀ ଶିଳ୍ପ କ୍ରମଶଃ କମ୍ ହେଉଅଛି ।

ଚିତ୍ରପଟି ସଙ୍ଗେ ସଙ୍ଗେ ଏଠାରେ ବିଭିନ୍ନ ପ୍ରକାର ଖଡ଼ିମୂର୍ତ୍ତିମାନ ମଧ୍ୟ ବିକ୍ରି ହୁଏ । ପୁରୀର "ପଥୁରିଆ ସାହି"ରେ ଶତ ଶତ ଲୋକ କେବଳ ଏହି ବ୍ୟବସାୟ ଦ୍ୱାରା ଜୀବିକାର୍ଜନ କରନ୍ତି । ଜାତୀୟ ଶିଳ୍ପର ପୁନରୁଦ୍ଧାର କରିବା ନିମନ୍ତେ ଏହି ଚିତ୍ରଶିଳ୍ପର କେତୋଟି ଶିଳ୍ପାଗାର ପୁରୀ, ସତ୍ୟବାଦୀ ଓ ଭୁବନେଶ୍ୱର ପ୍ରଭୃତି ସ୍ଥାନରେ ସ୍ଥାପନ କରିବାକୁ ହେବ । ତଦ୍ଦ୍ୱାରା ସ୍ଥାନୀୟ ଶିଳ୍ପୀମାନେ ନିଜର ପୂର୍ବ ବ୍ୟବସାୟ କରି ଧନୋପାର୍ଜନ କରିପାରିବେ ।

( ୭ ) **ଅନ୍ୟାନ୍ୟ ଶିଳ୍ପ**— ଉପର୍ଯ୍ୟୁକ୍ତ ବିଭିନ୍ନ ଶିଳ୍ପ ବ୍ୟତୀତ ଏହି ଜିଲ୍ଲାରେ କଂସା, ପିତ୍ତଳ ଓ ତମ୍ବାର ବାସନ, ପ୍ରତିମୂର୍ତ୍ତି ଓ ଛୋଟ ପିଲାମାନଙ୍କର ଖେଳନା ମଧ୍ୟ ତିଆରି

ହୁଏ । ଏହି ଜିନଷଗୁଡ଼କ ଓଡ଼ଶା ଗଡ଼ଜାତରେ ଏବଂ ପୁରୀ ଯାତ୍ରୀମାନଙ୍କ ମଧ୍ୟରେ ବିଶେଷ ବିକ୍ରି ହୁଏ । ପୁରୀକୁ ଆସିବା ପଶ୍ଚିମ ଓ ଉତ୍ତର ଭାରତର ଯାତ୍ରୀମାନେ ଏଠାର କଂସା, ପିତ୍ତଳ ବାସନ ପ୍ରଭୃତି ନେବାପାଇଁ ବିଶେଷ ଆଗ୍ରହ ଦେଖାନ୍ତି । ଏହି କେତେ ବର୍ଷ ହେଲା ୟୁରୋପରୁ "ଜର୍ମାନ୍ ସିଲ୍‌ଭର"ରେ ତିଆରି ହେବା ବାସନଗୁଡ଼କ ଆମ ଦେଶରେ ଅତି ଶସ୍ତାରେ ମିଳୁଥିବାରୁ ଲୋକମାନେ ସେହି ଶସ୍ତା ମାଲର ପ୍ରଲୋଭନରେ ପଡ଼ି ଆମ ଦେଶୀ ଶିଳ୍ପର ବିଶେଷ ଆଦର କରନ୍ତି ନାହିଁ । କିନ୍ତୁ ବର୍ତ୍ତମାନ ଦେଶରେ ଯେପରି "ସ୍ୱଦେଶୀ" ଜିନଷର ବିଶେଷ ପ୍ରଚାର ଚାଲିଛି, ଏପରି ସମୟରେ ଆମ ଦେଶର ଏହି କଂସା, ପିତ୍ତଳ ବାସନର ଶିଳ୍ପୀମାନଙ୍କୁ ବିଶେଷ ଉତ୍ସାହିତ କଲେ ଏମାନେ ଯେ ଅଦ୍ଭୁତ ଉନ୍ନତି କରନ୍ତେ, ସନ୍ଦେହ ନାହିଁ ।

୪ର୍ଥ-**କଟକ ଜିଲା** — ୩।୪ ଶତ ବର୍ଷ ପୂର୍ବରୁ ଏହି ଜିଲା ସୂକ୍ଷ୍ମ ବସ୍ତ୍ର ଓ ସୁନା ରୁପାର ତାରକସି କାମ ( **Filigree** ) ପାଇଁ ପ୍ରସିଦ୍ଧି ଲାଭ କରିଛି । ଏହି ଜିଲାର ଜଗତସିଂହପୁର ( ହରିହରପୁର ), ବାଲିକୁଦା ଓ ମାଛଗାଁ ପ୍ରଭୃତି ପ୍ରାଚୀନ ବାଣିଜ୍ୟର ପ୍ରଧାନ କେନ୍ଦ୍ର ଥିଲା । ଏହି ସ୍ଥାନଗୁଡ଼କରୁ ପ୍ରଚୁର ପରିମାଣ ପଣ୍ୟ ଜିନଷଗୁଡ଼କ ଦେଶ-ବିଦେଶକୁ ରପ୍ତାନୀ ହେଉଥିବାରୁ ଇଂରାଜ ବଣିକମାନେ (ଓଡ଼ଶା ଅଧିକାର କରିବା ପୂର୍ବରୁ) ପ୍ରଥମେ ଏହିଠାରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ । ମାଛଗାଁ ଦେବୀ ନଦୀ-କୂଳରେ ଥିବାରୁ ସେ କାଳରେ ତାହା ଗୋଟିଏ ପ୍ରଧାନ ବନ୍ଦର ହୋଇଥିଲା । କଟକ ଜିଲାର ଏହି ମାଛଗାଁ ଓ ଧାମରା ବନ୍ଦର ଦେଇ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଶିଳ୍ପ ଦ୍ରବ୍ୟ ଇଂରାଜୀ, ଡଚ ଓ ଦିନାମାର ବଣିକମାନେ ୟୁରୋପକୁ ନେଉଥିଲେ । ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ଶା ଇଂରାଜମାନଙ୍କ ହାତକୁ ଯିବା ମାତ୍ରେ ଏହି ବାଣିଜ୍ୟର ଗତି ବନ୍ଦହେଲା । ସଙ୍ଗେ ସଙ୍ଗେ ଜଗତସିଂହପୁର, ବାଲିକୁଦା ଓ ମାଛଗାଁ ପ୍ରଭୃତି ସ୍ଥାନର ବିଶେଷତ୍ୱ କମିଗଲା ।

ଏହି ଜିଲାର କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍ "ଗୁଲନଗର"ର ସୂକ୍ଷ୍ମ ଲୁଗା ଇତିହାସ-ପ୍ରସିଦ୍ଧ । ଏଠାର ତନ୍ତୀମାନେ ଯେଉଁ ଲୁଗା ବୁଣନ୍ତି, ସେଗୁଡ଼କ ଅଳ୍ପ ସୁଦ୍ଧା ଓଡ଼ଶା-ବାସୀଙ୍କ ଦ୍ୱାରା ଆଦୃତ ହୁଏ ।

ସୁନା ରୁପାର ଅତି ସୂକ୍ଷ୍ମ ଅଲଙ୍କାର ଏବଂ କାଠ, ଶିଙ୍ଗ ଓ କଂସା, ପିତ୍ତଳର ଜିନଷ-ମାନ ଏହି ଜିଲାର ବିଭିନ୍ନ ସ୍ଥାନରେ ତିଆରି ହୁଏ । ଚମଡ଼ା, ଝୋଟ ଓ ଅନ୍ୟାନ୍ୟ ସାଧାରଣ ଶିଳ୍ପ ମଧ୍ୟ ଏଠାରେ କରିବା ପାଇଁ ବିଶେଷ ସୁବିଧା ଅଛି । ଓଡ଼ଶାର କେନ୍ଦ୍ର ସ୍ଥାନ ଥିବାରୁ ଗଡ଼ଜାତ ତଥା ଓଡ଼ଶାର ବିଭିନ୍ନ ଅଞ୍ଚଳରୁ ନାନାପ୍ରକାର କଞ୍ଚାମାଲ ଏଠାକୁ ଆସିବା ସୁବିଧା

ଅଛୁ । ଏପରି ଅବସ୍ଥାରେ ଏଠାରେ ଯେ କୌଣସି ବଡ଼ ଧରଣର ଶିଳ୍ପାଗାରମାନ ସ୍ଥାପନ କଲେ ଏଠା ଅକର୍ମଙ୍କ ସଂଖ୍ୟା କମ୍ ହେବ ଏବଂ ଦେଶର ଆର୍ଥିକ ଦୁଃସ୍ଥିତି ଦୂର ହେବ ।

ଭଲ ଚକ୍କଣ ଓ ପାଲିସ୍ ପୂର୍ଣ୍ଣ କାଠର ଚୌକି, ଟେବୁଲ, ଆଲମାରି ପ୍ରଭୃତି କରିବା ପାଇଁ ଏଠାରେ ଅନେକ ଶିଳ୍ପୀ ଅଛନ୍ତି । ଏମାନଙ୍କ ଦ୍ୱାରା ତିଆରି ହେବା ଅଫିସ ଓ ଘରର ଉପକରଣମାନ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତର ବଡ଼ବଡ଼ ଲୋକ, ରଜା ମହାରଜାମାନେ ବ୍ୟବହାର କରନ୍ତି । ଅଧିକ ମୂଲ୍ୟ ଦେଇ କଲିକତା ବା ମାନ୍ଦ୍ରାଜର ସାହେବୀ ଦୋକାନରୁ କୌଣସି ଉପକରଣ ଆଣିବା ଅପେକ୍ଷା ଏଠା କାରିଗରମାନଙ୍କୁ ବରାଦ ଦେଲେ ଅଳ୍ପ ସମୟରେ ଅତି ସୁନ୍ଦର ଉପକରଣମାନ ପାଇପାରୁ । ଏହି ଶିଳ୍ପର ସମୋଚିତ ସକାଶେ ଏଠା ଶିଳ୍ପୀଙ୍କୁ ଉତ୍ସାହ ଦେବାପାଇଁ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କୁ ଚେଷ୍ଟା କରିବାକୁ ହେବ ।

ଏହି ଜିଲ୍ଲାରେ ପ୍ରଚୁର ପରିମାଣ ଝୋଟ (Jute) କୃଷି ହୁଏ । ଝୋଟରୁ ଉତ୍କୃଷ୍ଟ ସୂତା ବାଣି ତିଆରି ହୁଏ । ଏହି ସୂତାରେ ଅଖା, ମୋଟା ଦଉଡ଼ି, ବାଣି ପ୍ରଭୃତି ତିଆରି ହୁଏ । କିନ୍ତୁ ଏହି ଶିଳ୍ପର ଉନ୍ନତି କରିବାପାଇଁ ଏପର୍ଯ୍ୟନ୍ତ ଏଠାରେ କୌଣସି ସୁବିଧା ନ ଥିବାରୁ ଏଠାର ସବୁ ଝୋଟ ବିଦେଶକୁ ରପ୍ତାନୀ ହୁଏ । ତଦ୍ଦ୍ୱାରା ଅଳ୍ପ କେତୋଟି ମହାଜନ ଧନବାନ୍ ହୁଅନ୍ତି ସତ; କିନ୍ତୁ ସ୍ଥାନୀୟ କୃଷକମାନଙ୍କର ଆଦୌ ଉନ୍ନତି ହୁଏ ନାହିଁ । ସବୁ ଝୋଟ ବିଦେଶକୁ ରପ୍ତାନୀ କରିବା ଅପେକ୍ଷା ଏଠାରେ ରଖି ତଦ୍ଦ୍ୱାରା ନାନା ପ୍ରକାର ଶିଳ୍ପ କାମ କରାଇଲେ ଏଠା ଗୃହୀ ଓ ଅକର୍ମଙ୍କ ଦୁର୍ଦ୍ଦଶା ଦୂର ହୁଅନ୍ତା ।

୫ମ-**ବାଲେଶ୍ୱର ଜିଲ୍ଲା**—ଓଡ଼ିଶା ଇଂରେଜମାନଙ୍କ ହାତକୁ ଯିବା ପୂର୍ବରୁ ବାଲେଶ୍ୱର ଜିଲ୍ଲା ଓଡ଼ିଶାର ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । ପୋର୍ତ୍ତୁଗୀଜ, ଦିନାମାର ଓ ଇଂରେଜ ପ୍ରଭୃତି ୟୁରୋପୀୟ ବଣିକମାନେ ସର୍ବପ୍ରଥମେ ଏହି ଜିଲ୍ଲା ସଙ୍ଗେ ବାଣିଜ୍ୟ କରି ଏହିଠାରେହିଁ ସେମାନଙ୍କର ବାଣିଜ୍ୟ କୋଠିମାନ ସ୍ଥାପନ କଲେ । ଏଠାର 'ପିପ୍ପିଲି' ବନ୍ଦର ଇତିହାସପ୍ରସିଦ୍ଧ । ବୈଦେଶିକ ବାଣିଜ୍ୟ ଯୋଗୁଁ ଏଠାର ତତ୍କାଳୀନ ଶିଳ୍ପକଳା ବେଶୀ ଉନ୍ନତିଲାଭ କରିଥିଲା । ସୂକ୍ଷ୍ମ ଲୁଗା, ମଛ, କଂସା ପିତ୍ତଳ ବାସନ ଓ ମୁଗୁନି ପଥରର ଶିଳ୍ପକାମମାନ ଏବଂ "ସପ ମଣିଷା" ପାଇଁ ଏହି ଜିଲ୍ଲା ପ୍ରସିଦ୍ଧି ଲାଭ କରିଥିଲା ।

ପୁରୀଜିଲ୍ଲା ପରି ବାଲେଶ୍ୱର ମଧ୍ୟ ଗୋଟିଏ ବନ୍ୟା-ପ୍ରପୀଡ଼ିତ ଜିଲ୍ଲା ଥିବାରୁ ଅନନ୍ୟୋପାୟ ହୋଇ ଏଠା କୃଷକ ଓ ଅନ୍ୟାନ୍ୟ ଅଶିକ୍ଷିତ ଲୋକମାନେ ଏ ଜିଲ୍ଲା ଛାଡ଼ି ବିଦେଶ ଯାଇ କୁଲିକାମ କରନ୍ତି । ପ୍ରତିବର୍ଷ ହଜାର ହଜାର ଲୋକ ପ୍ରବାସରେ ଯାଇ ରହୁଥିବାରୁ

ଏଠା ପଲ୍ଲୀଗୁଡ଼ିକ ଜନଶୂନ୍ୟ ହେଉଛି । ଦେଶର ଏହି ଲୋକକ୍ଷୟ କମାଇ ଓଡ଼ିଶାବାସୀଙ୍କର ଅନ୍ନକଷ୍ଟ ଦୂର କରାଇବା ପାଇଁ ଏଠାର ସ୍ଥାନେ ସ୍ଥାନେ ପୂର୍ବ ଶିଳ୍ପର ପୁନରୁଦ୍ଧାର କରିବାକୁ ହେବ ।

ଏହି ଜିଲାରେ ପ୍ରଚୁର ପରିମାଣ ସପ ମଶିଣା ତିଆରି ହୁଏ । ସପଘାସ ଏଠା ନଦୀ ମୁହାଣ ନିକଟବର୍ତ୍ତୀ ପ୍ରଦେଶଗୁଡ଼ିକରେ ଜାତହୁଏ । ଏହି ଘାସ ସଂଗ୍ରହ କରି ସ୍ଥାନୀୟ ଲୋକମାନେ ମଶିଣା ବୁଣନ୍ତି । ସପ ମଶିଣା ( ଚକୁଣ ପଟି ) ଓଡ଼ିଶା ତଥା ଗଞ୍ଜାମ ଓ ବଙ୍ଗଳା ଅଧିବାସୀଙ୍କଦ୍ୱାରା ବିଶେଷ ଭାବରେ ଆଦୃତ ହୁଏ । ପୁରୀ ଓ କଟକ ପରି ସହର ସ୍ଥାନରେ ଏହି ମଶିଣାଗୁଡ଼ିକ ପ୍ରଚୁର ପରିମାଣରେ ବିକ୍ରୟ ହୁଏ । ଏହି ଶିଳ୍ପ ଯେପରି ଏଠା ଅଧିବାସୀମାନେ ଘରେ ଘରେ କରନ୍ତି, ତହିଁର ବିଶେଷ ଯୋଗାଡ଼ କରିବାକୁ ହେବ । ଏହା କରିବାପାଇଁ କେବଳ ସପଘାସ ଓ ବାଣି ଦଉଡ଼ି ଦରକାର ହୁଏ । ଏହା କରିବାପାଇଁ ବିଶେଷ ବୁଦ୍ଧି ବିଦ୍ୟା ଖର୍ଚ୍ଚ କରିବା ଦରକାର ନାହିଁ । ଯେ କୌଣସି ଲୋକ —ସ୍ତ୍ରୀ ପୁରୁଷ— ଏହା ବୁଣି ପାରନ୍ତି । ଉତ୍ସାହ ପାଇଲେ ଏହି ଶିଳ୍ପ ଯେ ପ୍ରତ୍ୟେକ ଘରେ କରି ଯାଇପାରେ, ସନ୍ଦେହ ନାହିଁ ।

ଗଡ଼ଜାତର ନୀଳଗିରି ରାଜ୍ୟ ଏହି ଜିଲାର ନିକଟବର୍ତ୍ତୀ ଥିବାରୁ ଏଠାରେ କଳା ମୁଗୁନି ପଥରର ବାସନ, ପ୍ରତିମୂର୍ତ୍ତି ପ୍ରଭୃତି ମଧ୍ୟ ହୁଏ । କେତେକ ସ୍ଥାନରେ କଂସାବାସନ ମଧ୍ୟ ତିଆରି କରନ୍ତି । ଏହି ଜିଲାର 'ରେମୁଣା' ଗ୍ରାମ ଅତି ସୁନ୍ଦର ଓ ସୂକ୍ଷ୍ମ ବାସନପାଇଁ ଶତପ୍ରସିଦ୍ଧ । ଏଠାରେ ଖୋଦେଇ ମଧ୍ୟ ପ୍ରଚୁର ହୁଏ । କିନ୍ତୁ ଲୋକମାନଙ୍କର ଆର୍ଥିକ ଦୁଃସ୍ଥିତି ଏବଂ ବାରମ୍ବାର ବନ୍ୟା ଓ ଦୁର୍ଭିକ୍ଷରେ ହନ୍ତସନ୍ତ ହେଉଥିବାରୁ ଏଠାର ଶିଳ୍ପୀମାନେ ସ୍ୱତଃ ମୁଣ୍ଡ ଟେକିପାରୁ ନାହାନ୍ତି । ବାହ୍ୟ ଉତ୍ସାହ ପାଇଲେ ବିଶେଷତଃ ପ୍ରାଚୀନ ଶିଳ୍ପଗୁଡ଼ିକର ପୁନରୁଦ୍ଧାର କଲେ ଏଠାର ଅସଂଖ୍ୟ ଶିଳ୍ପୀ ଓ ଅକର୍ମା କାର୍ଯ୍ୟ ପାଇ ସୁଖରେ ଜୀବିକା ଅର୍ଜନ କରନ୍ତେ ।

ବାଲେଶ୍ୱରର ପିପ୍ପିଲି ବନ୍ଦର ଦେଇ ପ୍ରଥମେ ୟୁରୋପ ଓ ଆମେରିକାରୁ ଓଡ଼ିଶାକୁ ଧୂଆଁପତ୍ର ଆମଦାନୀ ହୋଇଥିଲା । ସେଥିପାଇଁ ଏ ଦେଶରେ ଧୂଆଁପତ୍ରକୁ 'ବାଲେଶ୍ୱରୀ ଧୂଆଁପତ୍ର' ବୋଲି କହନ୍ତି । ଆଜିକାଲି ଓଡ଼ିଶାର ବିଭିନ୍ନାଞ୍ଚଳରେ ଧୂଆଁପତ୍ରର ଚାଷ ହୁଏ । ଏହି ଜିଲାରେ ମଧ୍ୟ ଏଗୁଡ଼ିକ ପ୍ରଚୁର ମିଳେ । ଧୂଆଁପତ୍ରରୁ ପିକା, ନାସ, ମଶଲା, ଗୁଣ୍ଡି ପ୍ରଭୃତି ତିଆରି ହୁଏ । ଦେଶରେ ପ୍ରଚୁର ପରିମାଣରେ ଧୂଆଁପତ୍ର ଚାଷ ହେଉଥିବା ସମୟରେ

ଏଇ ସବଦ୍ରାବ୍ୟ ଯେଉଁ ଯେଉଁ ପଦାର୍ଥମାନ କରାଯାଇ ପାରେ, ତାହାର ଶିଳ୍ପ କରିବା ପାଇଁ ଚେଷ୍ଟା କରିବାକୁ ହେବ ।

ଏହି ଜିଲ୍ଲାର ସ୍ଥାନେ ସ୍ଥାନେ ପ୍ରଚୁର ପରିମାଣରେ ତାଳଗଛ ଦେଖାଯାଏ । ମାନ୍ଦ୍ରାଜର ଏକାଧିକ ଜିଲ୍ଲାରେ ଥିବା ତାଳଗଛର ପ୍ରତ୍ୟେକ ଅଂଶକୁ ସେଠା ଅଧିବାସୀମାନେ ଯେପରି ସଦ୍‌ବ୍ୟବହାର କରନ୍ତି, ଠିକ୍ ସେହିପରି ଏହି ଜିଲ୍ଲାରେ ମଧ୍ୟ ତାଳପତ୍ର, ବାହୁଙ୍ଗା ଓ ଲିଅ ପ୍ରଭୃତିର ଶିଳ୍ପକାର୍ଯ୍ୟମାନ କରାଯାଇପାରେ ।

**୬୪-ସମ୍ବଲପୁର ଜିଲା**— ଅତି ପ୍ରାଚୀନ କାଳରୁ କେବଳ 'ହୀରା' (Diamond) ପାଇଁ ସମ୍ବଲପୁର ଜିଲା ସମଗ୍ର ଓଡ଼ିଶା ଓ ବଙ୍ଗ ଦେଶରେ ପ୍ରସିଦ୍ଧି ଲାଭ କରିଥିଲା । ଏଠାରେ ଅତି ମୂଲ୍ୟବାନ୍ ହୀରା ମିଳୁଥିବାରୁ କଲିକତାରେ ଥିବା " ଇଷ୍ଟ ଇଣ୍ଡିଆ କମ୍ପାନୀ" ( East-India Company )ର ସଭ୍ୟମାନେ ଏହି ହୀରା ସଂଗ୍ରହ କରିବା ପାଇଁ ମିଃ ମୋଟି ନାମକ ସାହେବଙ୍କୁ ୧୭୬୬ ଖ୍ରୀଷ୍ଟାବ୍ଦରେ ସମ୍ବଲପୁରକୁ ପଠାଇଥିଲେ * । ଏଠା ହୀରା ସମ୍ବନ୍ଧରେ ଜଣେ ଫରାସୀ ପର୍ଯ୍ୟଟକ ମାଃ ଟାଭର୍ଣ୍ଣିଅର ଲେଖିଥିଲେ—

"ସମ୍ବଲପୁରରେ ହୀରା ପ୍ରଚୁର ମିଳେ । ଭାରତ ମଧ୍ୟରେ ସର୍ବାପେକ୍ଷା ପ୍ରାଚୀନତମ ହୀରାଖଣି ସମ୍ବଲପୁରରେ ଅଛି । ଏଠା ହୀରାର ଆକାର ମଧ୍ୟ କ୍ଷୁଦ୍ର ନ ଥିଲା । × ×"

ଆଜିକାଲି ସମ୍ବଲପୁରର ଅବସ୍ଥା ଏତେ ଶୋଚନୀୟ ହୋଇଛି ଯେ, ଦିନେ ଏଠାରେ ପୃଥିବୀର ଅତି ବଡ଼ ହୀରାଖଣି ଥିଲା ବୋଲି ସ୍ଥାନୀୟ ଅଧିବାସୀମାନଙ୍କର ମଧ୍ୟ ବିଶ୍ୱାସ ହୁଏ ନାହିଁ ।

ପୂର୍ବେ ମଧ୍ୟ ପ୍ରଦେଶ ଓ ଉତ୍କଳ ବାଣିଜ୍ୟର ସମ୍ବଲପୁର କେନ୍ଦ୍ରସ୍ଥଳ ଥିଲା । ଉତ୍କଳ ବଣିକମାନେ ଲୁଣ,ନଡ଼ିଆ,ତୁଳା,ଲୁଗା, ମସଲା, ପିତ୍ତଳ ଜିନିଷମାନ ମହାନଦୀ ବକ୍ଷରେ ସମ୍ବଲ-ପୁର ନେଇ ମଧ୍ୟ ପ୍ରଦେଶର ବଣିକମାନଙ୍କଠାରୁ ଗହମ, ବୁଟ, ଲାଖ, ସୁନା ଏବଂ ହୀରା ବିନିମୟରେ ଆଣୁଥିଲେ । କଟକ, ଭଦ୍ରଖ, ନାଗପୁର, ଭୁପାଳ, ଛତିଶଗଡ଼ ଏବଂ ସରଗୁଜାର ବଣିକମାନେ ସମ୍ବଲପୁରରେ ଏକତ୍ରିତ ହେଉଥିଲେ ।" ✠

---

* Vide Mr. T. Motte's Narrative of a Journey to the Diamond Mines at Sambhulpoor. ( Annual Register (1799) of the Asiatic Society of Bengal)

✠ "ଉତ୍କଳ-ଇତିହାସ" ୧୭୪ ପୃଷ୍ଠା

ବର୍ତ୍ତମାନ ସମ୍ବଲପୁରର ସେ ପୂର୍ବ ଶିଳ୍ପ ବାଣିଜ୍ୟ ବା ବୈଭବ ନାହିଁ । ଓଡ଼ିଶା ଇଂରେଜମାନଙ୍କ ଅଧିକାରଭୁକ୍ତ ହେବା ପରେ, ବିଶେଷତଃ ଓଡ଼ିଶାରେ ରେଲ୍‌ଲାଇନ୍ ଖୋଲିବା ପରେ ଅନ୍ୟାନ୍ୟ ଜିଲ୍ଲାର ଶିଳ୍ପକଳା ଓ ବ୍ୟବସାୟ ବାଣିଜ୍ୟ ଯେପରି ଲୋପ ପାଇଛି, ଏହି ଜିଲ୍ଲାର ମଧ୍ୟ ସେହି ଦଶା ଘଟିଛି । ବର୍ତ୍ତମାନ ଏଠାରେ ଅତି ଉତ୍କୃଷ୍ଟ ରକମ ମଠା ଓ ବାଣ୍ଡିଆ ତିଆରି ହୁଏ । ଏହି ଜିଲ୍ଲାର "ବରପାଲି"ରେ ଯେଉଁ ମଠା ତିଆରି ହୁଏ, ତା ସମଗ୍ର ଓଡ଼ିଶା ଓ ଗଞ୍ଜାମରେ ବିଶେଷ ଆଦୃତ ହୁଏ । ପୁଣି ଏଠାର ଶୌଣ୍ଡିଆମାନେ ଯେଉଁ ସରୁ ଲୁଗା, ଶାଢ଼ି ପ୍ରଭୃତି ବୁଣନ୍ତି, ତା ମଧ୍ୟ ବିଶେଷ ପ୍ରସିଦ୍ଧି ଲାଭ କରିଛି । ତଥାପି ଏହି ଶିଳ୍ପର ବିଶେଷ ଉନ୍ନତି କରିବାକୁ ହେବ ।

ଅଳ୍ପକାଳ ଏଠାର କେତେକ ସ୍ଥାନରେ କାର୍ପାସ, କପା, ଧୂଆଁପତ୍ର, ଟସର ଓ ମଠା ପ୍ରଭୃତି ବିଶେଷ ଉତ୍ପନ୍ନ ହୁଏ; କିନ୍ତୁ ଏହି କଞ୍ଚା ମାଲ୍‌କୁ ନେଇ କୌଣସିଠାରେ କୁଟୀର ଶିଳ୍ପ ହୋଇ ନ ଥିବାରୁ ଏଗୁଡ଼ିକ ବିଦେଶକୁ ରପ୍ତାନୀ ହୁଏ । ସ୍ଥାନେ ସ୍ଥାନେ ଏକାଧିକ କୁଟୀର ଶିଳ୍ପାଗାର ସ୍ଥାପନ କଲେ ଏହି କଞ୍ଚା ମାଲଗୁଡ଼ିକର ଏଠାରେ ସଦ୍‌ବ୍ୟବହାର ହୁଅନ୍ତା ।

ସମ୍ବଲପୁରର କେତେକ ସ୍ଥାନରେ ଅତି ଉତ୍କୃଷ୍ଟ ମାଟିକାମ (Pottery) ହୁଏ । ଏ ଦିଗରେ ଅଧିକ ଉନ୍ନତି କରିବାକୁ ହେବ ।

ମଠା, ଟସର, ଏଣ୍ଡି ଓ କପା ସୂତାରେ ଅନେକ ପ୍ରକାର ଅତି ସୂକ୍ଷ୍ମ ଓ ସରୁ ଲୁଗାମାନ ଏଠାରେ ତିଆରି ହୁଏ । ଏଠାର କେତେକ ଜାତିର ଲୋକମାନଙ୍କ ମଧ୍ୟରେ ଏପରି ଗୋଟିଏ ନିୟମ ଅଛି ଯେ, ଝିଅ ଶାଶୁଘରକୁ ଯିବା ପୂର୍ବରୁ ଅତି ସରୁ ସୂତା କାଟିବ ଓ ସେହି ସୂତାର ଲୁଗା ଶାଶୁଘରକୁ 'ଯୌତୁକ' ବା ଉପହାର ସ୍ୱରୂପେ ନେବ । ଏପରି ପ୍ରଥା ଦ୍ୱାରା ଘରର ବୋହୂ ଓ ଝିଅମାନେ ଗୋଟିଏ ପ୍ରଧାନ ଶିଳ୍ପ ଶିକ୍ଷା କରି ନିଜର ଯୋଗ୍ୟତା ଅର୍ଜନ କରନ୍ତି, ସନ୍ଦେହ ନାହିଁ ।

୭ମ-**ଅନୁଗୁଳ ଜିଲ୍ଲା**—ଓଡ଼ିଶାର ଶେଷ ଜିଲ୍ଲା ଅନୁଗୁଳ ଗୋଟିଏ ଜଙ୍ଗଲମୟ ପ୍ରଦେଶ । ଏହାର ଚତୁର୍ଦ୍ଦିଗରେ ଗଡ଼ଜାତ ରାଜ୍ୟଗୁଡ଼ିକ ଥିବାରୁ ଏଠାକୁ ଗଡ଼ଜାତ ଜଙ୍ଗଲ ଜିନିଷଗୁଡ଼ିକ ପ୍ରଚୁର ଆସେ । କିନ୍ତୁ ସ୍ଥାନୀୟ ଲୋକମାନଙ୍କ ନିମନ୍ତେ ସେପରି କୌଣସି ସୁବିଧାଜନକ ଶିଳ୍ପାଗାର ଏଠାରେ ନ ଥିବାରୁ ପୁଣି ଏଠାରୁ ମହାନଦୀ ଦେଇ କଟକ ଓ କଲିକତା ଯିବା ପାଇଁ ବିଶେଷ ସୁବିଧା ନ ଥିବାରୁ ଏଠାର ସବୁ ଜିନିଷଗୁଡ଼ିକ ବିଦେଶକୁ

ରପ୍ତାନୀ ହୁଏ । ସେହି କାରଣରୁ ଅନନ୍ୟୋପାୟ ହୋଇ ଏଠାର ଆଦମ ଲୋକମାନେ ସୁଦୂର ଆସାମ ଯାଇ ସେଠା ଚା ବଗିଚାରେ କୁଲି କାମ କରନ୍ତି । ଏଠାରେ ମିଳୁଥିବା କାଠ, ଶିଙ୍ଘ, ହାତଦାନ୍ତ, ଖଲି ପତ୍ର, ଝସର, ହାଡ, ଚମଡା, ହଳଦୀ ଓ ମହଣ, ପାଳଗୁଣ୍ଡି ପ୍ରଭୃତିର ବିଶେଷ ସଦ୍‌ବ୍ୟବହାର କରିବାପାଇଁ ସ୍ଥାନେ ସ୍ଥାନେ ଅସଂଖ୍ୟ ଶିଳ୍ପସଦନମାନ ସ୍ଥାପନ କଲେ ପ୍ରବାସରେ ଥିବା ଆଦମ ଓଡ଼ିଆ ଏବଂ ଅସଂଖ୍ୟ ଅକର୍ମୀ ଏଠାରେ ରହି ଏହି ଶିଳ୍ପକାମମାନ କରି ଜୀବିକାର୍ଜ୍ଜନ କରନ୍ତେ ।



## (ଗ) ସମଗ୍ର ଉତ୍କଳପ୍ରଦେଶ ପାଇଁ ସାଧାରଣ "କୁଟୀର ଶିଳ୍ପ"

ଓଡ଼ିଶା ଗଡ଼ଜାତ ଓ ପ୍ରତ୍ୟେକ ଜିଲ୍ଲାରେ କି କି ପ୍ରକାର କଞ୍ଚା ମାଲ ମିଳେ ଓ ସେହି ଜିନିଷଗୁଡ଼ିକୁ ନେଇ କି କି ପ୍ରକାର 'କୁଟୀର ଶିଳ୍ପ' କରାଯାଇ ପାରେ, ତାହାର ବିସ୍ତୃତ ବିବରଣୀ ପୂର୍ବ ଦୁଇଟି ପରିଚ୍ଛେଦରେ ଦିଆଯାଇଛି । ବର୍ତ୍ତମାନ ସମଗ୍ର ଉତ୍କଳ ( ମୋଗଲ-ବନ୍ଦି ଓ ଗଡ଼ଜାତ ମିଶି ) ରେ ଆଉ କି କି ରକମ ସାଧାରଣ ଶିଳ୍ପ କରାଯାଇ ପାରେ, ସେ କଥା ଏଠାରେ ବର୍ଣ୍ଣିତ ହେବ—

୧ । ଏଣ୍ଡି ଚାଷ ( Ere culture )—"ଏଣ୍ଡିଚାଷ" ଗୋଟିଏ ଅତି ସୁବିଧା ଓ ଲାଭଜନକ କୁଟୀର ଶିଳ୍ପ । ଏହା କରିବାପାଇଁ ବିଶେଷ କିଛି ଅସୁବିଧା ନାହିଁ କି ଅଧିକ ଖର୍ଚ୍ଚାନ୍ତ ହେବାର ଆଶଙ୍କା ମଧ୍ୟ ନାହିଁ । ଆବାଳବୃଦ୍ଧବନିତା ଏହି ଶିଳ୍ପ ଘରେ ଘରେ କରି-ପାରନ୍ତି । କେବଳ କେତୋଟି 'ଏଣ୍ଡିପୋକ' ବା 'ଡିମ୍ବ' ଏବଂ କେତୋଟି ଗଛ ( ଡାଳ ) ଗଛ ହେଲେ ଏହି ବ୍ୟବସାୟ କରାଯାଇ ପାରେ । ପରିଶ୍ରମ ଓ ସମୟ ନାଶ ତୁଳନାରେ ଏଣ୍ଡି ଚାଷ ଦ୍ୱାରା ଶତଗୁଣ ଲାଭବାନ୍ ହେବାକୁ ହୁଏ । ଏପରି ଗୋଟିଏ କୁଟିର ଶିଳ୍ପ ଦ୍ୱାରା ଆସାମ ଓ ପୂର୍ବ ବଙ୍ଗର ହଜାର ହଜାର ସ୍ତ୍ରୀ ପୁରୁଷ ଅତି ସୁନ୍ଦରରୂପେ ନିଜର ଜୀବିକାର୍ଜ୍ଜନ କରନ୍ତି; ଆମ ଓଡ଼ିଶାରେ ମଧ୍ୟ ସ୍ଥାନେ ସ୍ଥାନେ ଏହାର ପ୍ରସାର ବଢିଛି । ଗଞ୍ଜାମ ରସୁଲକୋଣ୍ଡା ନିବାସୀ ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଦାସ ଏବଂ କଟକର ଓକିଲ "ରାୟ ସାହେବ" ଭିକାରିଚରଣ ପଟ୍ଟନାୟକ ବି. ଏଲ୍. ଓଡ଼ିଶାରେ ଏଣ୍ଡି ଚାଷର ଯେଉଁ ଆଦର୍ଶ ଦେଖାଇଛନ୍ତି, ତାହା ଯେ କୌଣସି ଲୋକର ଅନୁକରଣୀୟ ହେବ, ସନ୍ଦେହ ନାହିଁ । ଲେଖକ ନିଜେ ନିଜର ଅନ୍ୟାନ୍ୟ ଦୈନିକ କାର୍ଯ୍ୟରେ ବ୍ୟସ୍ତ ଥାଇ ସୁଦ୍ଧା ସାମାନ୍ୟ ରକମର ଏଣ୍ଡି ଚାଷ କରି ବୁଝିପାରିଛି ଯେ,

ଦିନକୁ ଅନ୍ତତଃ ଏକଘଣ୍ଟା ପରିଶ୍ରମ କଲେ ଯେ କୌଣସି ଲୋକ ସୁବିଧାରେ ମାସିକ ଅନ୍ୟୂନ ୧୦।୧୫ ଟଙ୍କା ରୋଜଗାର କରିପାରେ । ଏଣ୍ଡି ଗୃଦର, କୋଟ, କାମିଜ ଓ ବିଛଣା ପ୍ରଭୃତି ଆଜିକାଲି ଯେପରି ଲୋକମାନଙ୍କ ମଧ୍ୟରେ ଆଦୃତ ହେଉଛି, ଏପରି ଅବସ୍ଥାରେ ସମଗ୍ର ଜଙ୍ଗଲରେ ଏହି ଶିଳ୍ପ ଯେପରି କରାଯିବ, ତହିଁର ବିଶେଷ ଯୋଗାଡ଼ କରିବାକୁ ହେବ ।

ଏଣ୍ଡି ଗୃଷ ପରି ଟସର, ମୁଗା ଓ ପାଟ ପ୍ରଭୃତିର ପୋକ ଆଣି ଗୃଷ କରାଯାଇ ପାରେ । କିନ୍ତୁ ସେହି ପୋକଗୁଡ଼ିକ ଏଣ୍ଡି ପୋକ ପରି ସବୁ ସ୍ଥାନରେ ଓ ସବୁ ଜଳବାୟୁରେ ବଢ଼ି ଖୋଷା ଦେଇପାରନ୍ତି ନାହିଁ । ପୁଣି ପରିଶ୍ରମ ତୁଳନାରେ ସେହି ସେହି ପୋକ ପ୍ରଚୁର ପରିମାଣରେ ଖୋଷା ଦିଅନ୍ତି ନାହିଁ । ଅତଏବ ଯେଉଁ ସ୍ଥାନରେ ଟସର, ମୁଗା ଓ ପାଟ ପୋକଗୁଡ଼ିକ ସୁବିଧା ଓ ସହଜରେ ବଢ଼ିପାରିବେ ଏବଂ ଯେଉଁଠାରେ ସେମାନଙ୍କ ପାଇଁ ପ୍ରଚୁର ପରିମାଣ ଖାଦ୍ୟ ମିଳିପାରେ (ଓଡ଼ିଶାର କେତୋଟି ଗଡ଼ଜାତରେ), ସେଇଠାରେ ସେଇ ସେଇ ଶିଳ୍ପ କରି ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ "ଏଣ୍ଡିଗୃଷ" କରିବା ବିଧେୟ । *

**୨ । ସୂତାକଟା ଓ ଲୁଗାବୁଣା**—ଏହି ଦୁଇଟି ଶିଳ୍ପ ଓଡ଼ିଶାର ଯେ କୌଣସି ସ୍ଥାନରେ କରାଯାଇ ପାରେ । ଏଥିପାଇଁ ଖଣ୍ଡିଏ ଅରଟ, କପା, ଏଣ୍ଡି, ମୁଗା, ଟସର ବା ପାଟଖୋଷା ଏବଂ ତନ୍ତ ଦରକାର । ଲୁଗା ବୁଣିବାପାଇଁ ଓଡ଼ିଶାରେ ଦେବାଙ୍ଗ, ସାଲିଆ, ତନ୍ତୀ, ପାଇଣ୍ଡା ଓ ଗଜାନ୍ତିଆ ପ୍ରଭୃତି ଜାତିର ଲୋକମାନେ ଅଛନ୍ତି । କିନ୍ତୁ ପ୍ରଚୁର ପରିମାଣ ଉପକରଣ (କଞ୍ଚାମାଲ ପ୍ରଭୃତି) ନ ମିଳିବାରୁ ଏବଂ ଆମ ଦେଶର ନବ୍ୟଶିକ୍ଷିତ ବାବୁମାନେ କେବଳ ବିଦେଶୀ ଲୁଗା ପ୍ରତି ଅନୁରକ୍ତ ଥିବାରୁ ଏଇ ବ୍ୟବସାୟୀମାନେ ସ୍ୱସ୍ୱ ବ୍ୟବସାୟ ତ୍ୟାଗ କରି କୃଷି କରନ୍ତି ବା ବିଦେଶ ଯାଇ କୁଲି କାମ କରନ୍ତି । ଓଡ଼ିଶାରେ ଇଂରେଜୀ ରାଜତ୍ୱ ସ୍ଥାପିତ ହେବା ପରେ ମଧ୍ୟ ବହୁବର୍ଷ ପର୍ଯ୍ୟନ୍ତ ଏଠାର ତନ୍ତୀମାନେ ଅତି ସୁନ୍ଦର ଲୁଗା ତିଆରି କରୁଥିଲେ । ଦେଶର କୃଷକମାନେ ଯେଉଁ କପା ଗୃଷ କରୁଥିଲେ, ସେ ସବୁ ପ୍ରତ୍ୟେକ ଗୃହୀ ସଂଗ୍ରହ କରି ତଦ୍ଦ୍ୱାରା ନିଜ ନିଜର ଲୁଗା ତିଆରି କରୁଥିଲେ । ଅତଏବ ସେମାନଙ୍କ ମଧ୍ୟରେ ବିଦେଶୀ ଲୁଗା ଆଦୌ ବ୍ୟବହାର କରାଯାଇ ନ ଥିଲା । ଏଇ ଦେଶୀ ଲୁଗା ଅତି ମଜବୁତ ଥିଲା ଓ ବିଳାତୀ

---

* "ଏଣ୍ଡିଗୃଷ" ସମ୍ବନ୍ଧରେ ବିଶେଷ ବିବରଣୀ ଜାଣିବା ନିମନ୍ତେ ଶ୍ରୀଯୁକ୍ତ ଭିକାରିଚରଣ ପଟ୍ଟନାୟକ ବି. ଏଲ୍.ଙ୍କ ପ୍ରଣୀତ "ଏଣ୍ଡିଗୃଷ" ପୁସ୍ତକ ଦେଖନ୍ତୁ । ମୂଲ୍ୟ ଚାରିଅଣା ମାତ୍ର ।

ଲୁଗାଠାରୁ ବେଶୀ ଦିନ ବ୍ୟବହାର କରି ହେଉଥିଲା । * କିନ୍ତୁ ଆଜି ସେ ସବୁ ଓଲଟା ହୋଇଛି । ଦେଶର ଶିକ୍ଷିତ ବାବୁମାନଙ୍କ ମଧ୍ୟରେ ବିଦେଶୀ ଲୁଗାର ବ୍ୟବହାର ବଢ଼ିଥିବାରୁ ସ୍ୱଦେଶୀ ଲୁଗାର କାରବାର ଏକାବେଳେ ବନ୍ଦ ହୋଇଛି ।

ବର୍ତ୍ତମାନ ଦେଶରେ ସ୍ୱଦେଶୀ ଲୁଗାର ବ୍ୟବହାର ଦିନକୁଦିନ ବୃଦ୍ଧିଲାଭ କରୁଛି । ଦେଶର ପ୍ରସିଦ୍ଧ ନେତାମାନେ ଏହାର ବହୁଳ ପ୍ରଚାର ନିମନ୍ତେ ସ୍ଥାନେ ସ୍ଥାନେ ସଭାସମିତି-ମାନ କରି ଲୋକମାନଙ୍କୁ ଉତ୍ସାହିତ କରୁଛନ୍ତି । ସେ ଦିନ ଉତ୍କଳ ପ୍ରାଦେଶିକ ସମ୍ମିଳନୀର ବାର୍ଷିକ ବୈଠକରେ ସଭାପତି ବଙ୍ଗଦେଶର ସୁପ୍ରସିଦ୍ଧ ନେତା ସର୍ ପ୍ରଫୁଲ୍ଲଚନ୍ଦ୍ର ରାୟ କହିଥିଲେ—

"But I do hope that in this conference you will sit together, and device means how you can best arrange for growing and storing your cotton, how you can best approach the spinners, help them to card and spin and how you may weave the yarn into strong and beautiful fabric, course but homogeneous, how you can best make the spinners, the weavers, the villagers and townsmen wear Khadi." ‡

ସେହି ସମ୍ମିଳନୀ ପରେ ଓଡ଼ିଶାର ଘରେ ଘରେ 'ସୂତାକଟା ଓ ଲୁଗାବୁଣା' ଯେପରି ହେବ, ସେ ଦିଗରେ ବିଶେଷ ଚେଷ୍ଟା କରି ଯାଇଥିଲା । ପୁରୀର ବନ୍ୟା ଅଞ୍ଚଳରେ 'ଉତ୍କଳମଣି' ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ଏହି ଶିଳ୍ପର ବହୁଳ ପ୍ରଚାର କରି ଓଡ଼ିଶାର "ଦରିଦ୍ର ନାରାୟଣ ସୂତା କେନ୍ଦ୍ର"ର ପ୍ରଥମ ପ୍ରତିଷ୍ଠା କରିଥିଲେ । ତାଙ୍କର ସେ କାର୍ଯ୍ୟ ଆଜିଯାଏ ଜୀବିତ ଅଛି; ତଥାପି ଏ ଦିଗରେ ଅଧିକ ଉନ୍ନତି କରି ଏହି ଶିଳ୍ପକୁ ଘରେ ଘରେ ଚଳାଇବାକୁ ହେବ ।

ଅବଶ୍ୟ କମ୍ପା ଡାକୁଣରେ ସୂତା କାଟିବା ଅଦୌ କଷ୍ଟକର ନୁହେ । ବାଟର ବାଜୋଇ, ଦୋକାନୀ, ସ୍କୁଲଛାତ୍ର, ଅଫିସର କର୍ମଚାରୀ, ଦାଣ୍ଡର ମୂଲିଆ ଏବଂ ଘରର ଭୁଆସୁଣୀ

* "Individual families gain a livelihood by making up the peasant's cotton into cloth—a good, substantial, unbleached fabric which wears five times as long as the Manchester goods."
(Hunter's Orissa Vol. II )

‡ "Presidential address of Sir P. C. Ray of Culcutta at the Utkal Provincial Conference." 28th. June, 1924. P. 13

ବୋହୂ ମଧ୍ୟ ଫୁରସତ୍ ସମୟରେ ତାକୁଣ୍ଡ କିମ୍ବା ଅରଟରେ ସୂତା କାଟି ପାରନ୍ତି । ଏହି ଶିଳ୍ପ ଏତେ ସହଜ ଯେ, ଏହା ଶିକ୍ଷା କରିବାକୁ ଏକ ମିନଟ ପୁଣ୍ଡା ଲାଗିବ ନାହିଁ । ଏଣୁ ଗୃହ ପରି ଓଡ଼ିଶାର ଆବାଳବୃଦ୍ଧବନିତା ଏହାକୁ ଅକ୍ଲେଶରେ ଶିକ୍ଷା କରିପାରନ୍ତି ।

୩ । କିଆଗଛ ଓ ପଟ—ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ କିଅଗଛ ହୁଏ । ଯେ କୌଣସି ପଡ଼ିଆ, ପଦର ବା ବାଲୁକାମୟ ପ୍ରାନ୍ତରରେ ଏଇ ଗଛ ଅପର୍ଯ୍ୟାପ୍ତ ହୁଏ । ବିଶେଷତଃ, ଓଡ଼ିଶାର ସମୁଦ୍ର ଉପକୂଳରେ ଏବଂ ଚିଲିକା ମଧ୍ୟସ୍ଥ ଦ୍ୱୀପଗୁଡ଼ିକରେ ଏଗୁଡ଼ିକର ସଂଖ୍ୟା ଗଣନାତୀତ । ବିନା କୃଷି ଓ ବିନା ଯତ୍ନରେ ଏଗୁଡ଼ିକ ଏପରି ଭାବରେ ଦେଖାଗଲେ ପୁଣ୍ଡା କିଅଗଛର ପ୍ରତ୍ୟେକ ଅଂଶ ଆମ୍ଭମାନଙ୍କର କୁଟୀରଶିଳ୍ପ ପାଇଁ ବ୍ୟବହାର କରିଯାଇ ପାରେ । କିଅଗଛରେ ଅତି ସୁବାସିତ ଫୁଲ (କିଆଫୁଲ) ଫୁଟେ । ନିକଟବର୍ତ୍ତୀ ଲୋକମାନେ ଏହି ଫୁଲ କାଟି ମୁଣ୍ଡରେ ପିନ୍ଧନ୍ତି । ଗଞ୍ଜାମ ଅଞ୍ଚଳରେ ଏଇ ଫୁଲ ଗ୍ରାମେ ଗ୍ରାମେ ବିକି ହୁଏ । ଏଇ ଫୁଲରୁ ଅତି ଉତ୍କୃଷ୍ଟ ଅତର (କିଆ ଅତର) ତିଆରି ହୁଏ । ଚିଲିକା-ମଧ୍ୟସ୍ଥ ପାରିକୁଦ, ମାଲୁଦ ଓ ବଜ୍ରକୋଟ ପ୍ରଭୃତି ସ୍ଥାନରେ ଥିବା ସହସ୍ରାଧିକ କିଅଫୁଲ କାଟି ଜଣେ ବିଦେଶୀ ମହାଜନ ତହିଁରୁ "କିଆ ଅତର" ତିଆରି କରନ୍ତି । ଏଇ ଅତର ତିଆରି କରିବା ପାଇଁ ସେଇ ମହାଜନ ସୁଦୂର କାଶୀ ଅଞ୍ଚଳରୁ ଏଠାକୁ ଆସୁଥିବା ଏ ଲେଖକ ଜାଣନ୍ତି ।

କିଅଗଛର ମୂଳରେ ଅତି ଲମ୍ବ ଲମ୍ବ ଚେର ( ପ୍ରାୟ ୨ । ୯ ହାତ ଲମ୍ବ ହେବ ) ବାହାରେ । ସ୍ଥାନୀୟ ଲୋକମାନେ ତାହାକୁ "ପଟ" କହନ୍ତି । ଏଇ ପଟରେ ଅତି ସୁନ୍ଦର ଓ ମଜବୁତ ଟୋକେଇ, ଡାଟି, ଡାଲା, ପାଛିଆ ପ୍ରଭୃତି ହୁଏ । ଏଇ ଟୋକେଇ ପ୍ରଭୃତି ବେତ ପରି ଅତି ଶକ୍ତ ଓ ଚିକ୍କଣ ଦିଶେ ଏବଂ ଏଗୁଡ଼ିକୁ ଉଇ କିମ୍ବା ଅନ୍ୟ କୌଣସି କୀଟ ସହଜରେ ନଷ୍ଟ କରିପାରନ୍ତି ନାହିଁ । କିଅ ପଟର ଟୋକେଇ ପ୍ରଭୃତି କରି ଏ ଅଞ୍ଚଳର ଶତାଧିକ ହାଡ଼ି ଜାତିର ସ୍ତ୍ରୀ ପୁରୁଷ ଜୀବିକାର୍ଜନ କରନ୍ତି । କିଅ ପତ୍ରରୁ ଭଲ ରକମ ସୂତା ବାହାରେ । ଏଇ ସୂତାରେ ପଘା, ପଲପ ପ୍ରଭୃତି ହୁଏ ।

କିଅଗଛର ମଝି ଗଣ୍ଡି ବା କାଠରେ ସ୍ଥାନୀୟ ଲୋକମାନେ ଘରର ଖୁଣ୍ଟ, ଶେଣି ପ୍ରଭୃତି କରନ୍ତି । ଏଗୁଡ଼ିକ ପାଣିରେ ନ ଭିଜିଲେ ଅନେକ ଦିନଯାଏ ଅକ୍ଷତ ରହେ ।

ଏଇ ଗଛର ପଟ, ପତ୍ର ଓ ଫୁଲର ବିଭିନ୍ନ ଶିଳ୍ପମାନ କଲେ ଅନେକ ଗରିବ ସ୍ତ୍ରୀ-ପୁରୁଷ ସେଇ ବ୍ୟବସାୟ ଦ୍ୱାରା ଜୀବିକାର୍ଜନ କରିପାରନ୍ତେ ।

**୪ । ବାଣି ଓ ବଜ୍‌ଡ଼ି**—ନିମ୍ନ କେତୋଟି କଞ୍ଚାମାଲ୍‌ରୁ ଉତ୍କୃଷ୍ଟ ଧରଣର ବାଣି ଓ ବାଜୁଡ ତିଆରି ହୋଇପାରେ ।

(୧) ସୋଲ (ନଳିତା)
(୨) କାଉଁଛଅ
(୩) କଅପଟ
(୪) କଅପଟ
(୫) ମୂରୁଗା
(୬) ନଡଅ କଡା
(୭) ଛଣି
(୮) ପେଷି
(୯) କଦଳୀ ପଟ
(୧୦) ଭେଣ୍ଡି
(୧୧) ସପୁର୍ଣ୍ଣ ପତ୍ର
(୧୨) ବାରମାସୀ (ସିଗ୍ରାଫଣି) ପତ୍ର
(୧୩) ଛାଲ ବାହୁଙ୍ଗା
(୧୪) ଅରଖ
(୧୫) ଧଣ୍ଡିଗ୍ରୁ
(୧୬) ବଙ୍ଗମୁଳ
(୧୭) ଶିଅର ଲଇ
(୧୮) ବଲ୍ଗା ଦଳ *

ଉପର୍ଯ୍ୟୁକ୍ତ ସବୁ ପ୍ରକାର ବାଣି, ବାଜୁଡର ଉପକରଣମାନ ଆମ ଦେଶରେ ମିଳେ; କିନ୍ତୁ ଏପର୍ଯ୍ୟନ୍ତ କୌଣସି ସ୍ଥାନରେ ସେଗୁଡ଼ିକର ସଦ୍‌ବ୍ୟବହାର କରିବାପାଇଁ ଶିଳ୍ପାଗାରମାନ ସ୍ଥାପିତ ହୋଇ ନାହିଁ । ଆମ ଦେଶର ଲୋକମାନେ ଏଗୁଡ଼ିକର ବିଶେଷ ସଦ୍‌ବ୍ୟବହାର କରୁ ନ ଥିବାରୁ ପ୍ରତି ବର୍ଷ ହଜାର ହଜାର ଟଙ୍କାର ଏଇ କଞ୍ଚା ମାଲଗୁଡ଼ିକ ବିଦେଶୀ ମହାଜନମାନେ କିଣି ନିଅନ୍ତି । ତଦ୍ଦ୍ୱାରା ସେମାନେ ବିଶେଷ ଲାଭବାନ୍ ହୁଅନ୍ତି ।

କେବଳ ସୋଲ ଓ ଛଣିକି ବାଦ୍ ଦେଲେ ଅନ୍ୟ କୌଣସି ଜିନିଷର ବିଶେଷ ବ୍ୟବହାର ଆମ ଦେଶବାସୀ ଜାଣନ୍ତି ନାହିଁ । ମୁରୁଗା ଓ ପେଷିରୁ ଯେଉଁ ସୂତା ବାହାରେ, ତାହା ଅତି ମୂଲ୍ୟବାନ୍ ଓ ଉତ୍କୃଷ୍ଟ ଅଟେ । ପେଷି ସୂତାରେ ଜାହାଜପାଲ, ବହୁମୂଲ୍ୟ ଶୀତବସ୍ତ୍ର

---

* ବଲ୍ଗା ଦଳରୁ ଅତି ଉତ୍କୃଷ୍ଟ ଧରଣର ଦ୍ରାବକ ବା ସ୍ପିରିଟ୍ (Spirit) ବାହାରୁଥିବାର ଜଣେ କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ କହନ୍ତି ।

Vide, Dr. H. K. Sen, Professor of Applied Chemistry, University College of Science, Calcutta's "Latest Chemical Experiment Water Hyacinth—capable of yielding Spirit."
(A. B. P. 22. 3. 33)

ଓ ଉତ୍ତମ କ୍ୟାନଭାସ ଲୁଗା ମଧ୍ୟ ତିଆର ହୁଏ । ୟୁରୋପରେ ଏହି ସୂତାର ମହଣ ପ୍ରାୟ ୧୦୦ ଟଙ୍କା ମୂଲ୍ୟରେ ବିକ୍ରି ହୁଏ । ସେହି ଗଛ କେବଳ ବାଲି ଜମିରେ ପ୍ରଚୁର ହୁଏ । ଓଡ଼ିଶାପରି ଗୋଟିଏ ବନ୍ୟାବିଶିଷ୍ଟ ଦେଶରେ ଏହି ଗଛର ଚାଷ କରି ସେହି ଚାଷ ଲବ୍ଧ ଜିନିଷ ନେଇ କୁଟୀର ଶିଳ୍ପାଗାରମାନ ସ୍ଥାନେ ସ୍ଥାନେ ସ୍ଥାପନ କରିବାକୁ ହେବ ।

ଛଣି, ଗାଲ ବାହୁଙ୍ଗାର ପଟ, କଆପଟ, କଦଳୀପଟ ପ୍ରଭୃତିରେ ଶଗଡର ସୋଲ, ଗାଈ ଗୋରୁଙ୍କ ପଘା, ପଲପ, ଦୌଡ଼ା ପ୍ରଭୃତି କରି ହୁଏ ଏବଂ ଶିଆଳି ଲଇରେ ରଥ ଦଉଡ଼ି, ଖଟିଆ ପ୍ରଭୃତି ପାଇଁ ବାଣି ଦଉଡ଼ି ହୁଏ । ଓଡ଼ିଶାରେ ଏହି ଜିନିଷଗୁଡ଼ିକ ପ୍ରଚୁର ପରିମାଣରେ ମିଳୁଥିବାରୁ ସ୍ଥାନେ ସ୍ଥାନେ ବାଣି ଓ ଦଉଡ଼ିର ଶିଳ୍ପ କାର୍ଯ୍ୟ କଲେ ଏଗୁଡ଼ିକର ସଦ୍‌ବ୍ୟବହାର ହୁଅନ୍ତା ।

୫ । **ଚେର, ମୂଳ ଓ ପତ୍ର**—ନିମ୍ନ କେତୋଟି ଚେର, ମୂଳ ଓ ପତ୍ରରେ ବିଭିନ୍ନ ପ୍ରକାର ଆବଶ୍ୟକ ଜିନିଷମାନ ତିଆରି କରି ଯାଇପାରେ । ଏଗୁଡ଼ିକ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ସ୍ଥାନରେ ମିଳେ । କେବଳ ସେଗୁଡ଼ିକର ସଦ୍‌ବ୍ୟବହାର କରିବା ଲୋକମାନେ ଜାଣି ନ ଥିବାରୁ ଆମ୍ଭେମାନେ ଏହି ଜିନିଷଗୁଡ଼ିକ ବଦଳରେ ନାନା ପ୍ରକାର ବିଦେଶୀ ଜିନିଷ ବ୍ୟବହାର କରୁ । ଏପରି କେତେକ ପଦାର୍ଥର ସଦ୍‌ବ୍ୟବହାର ହେଲେ ଆମ୍ଭମାନଙ୍କର କୌଣସି ସମୟରେ ବିଦେଶୀ ଜିନିଷର ଦରକାର ପଡ଼ିବ ନାହିଁ । ଏହି ପଦାର୍ଥଗୁଡ଼ିକର ସଦ୍‌ବ୍ୟବହାର ଦେଶରେ ଯେତେ ଶୀଘ୍ର ବଢ଼ିବ, ଆମ୍ଭେମାନେ ସେତେ ଶୀଘ୍ର ଆତ୍ମନିର୍ଭରଶୀଳ ହେବୁ ।

(କ) **ଗୁଣ୍ଡ୍ରୁରି** (ଖଡିକାଗଛ)—ଏହି ଗଛ ପ୍ରାୟ ସବୁ ପ୍ରଦେଶରେ ଓ ସବୁ ସ୍ଥାନରେ ହୁଏ । ଚାଷଜମି ବ୍ୟତୀତ ଅନ୍ୟାନ୍ୟ ପଦର ଓ ପଡିଆ ସ୍ଥାନରେ ଏଗୁଡ଼ିକ ଅପରିମିତ ହୁଏ । ଏହାର କାଠିରେ ଥିବା "ଶୁଙ୍କ" ଆମ୍ଭମାନଙ୍କ ଲୁଗାରେ ଓ ଦେହରେ ଲାଗି ଫୋଡ଼-ହୋଇଯାଏ । ଏହି ଗୁଣ୍ଡ୍ରୁରି ଗଛର କାଠିରେ ଲିଆ (ଜଳୁଡ଼ା) ଓ ମୂଢ଼ି ଭଜା "ଖଡ଼ିକାମୁଠା" ତିଆରି ହୁଏ ଏବଂ ଏହାକୁ ଗଞ୍ଜାମ ଅଞ୍ଚଳରେ ଘର ଝାଡୁଆ ଛାଞ୍ଚୁଣୀ କରନ୍ତି । ଏହି କାଠିର ପାତିଆରେ ଖଲପତ୍ର ମଧ୍ୟ ସିଲାଇ କରନ୍ତି ।

ଗୁଣ୍ଡ୍ରୁରି ଗଛର ଚେର ଅତି ଟାଣ ଥାଏ । ସେହି ଚେରରେ ତନ୍ତୀମାନଙ୍କର "କୁଞ୍ଚ" (Brush) ତିଆରି ହୁଏ ଏବଂ ଏହି ଚେରରେ ସୁନା, ରୁପା ଅଳଙ୍କାର ସଫା କରିବା ପାଇଁ ବ୍ରସ୍ (Brush) ମଧ୍ୟ ତିଆରି କରାଯାଇ ପାରେ ।

**(ଖ) ସୁରୁବୁଲି**—ସମୁଦ୍ର ଉପକୂଳ ପଡ଼ିଆ ସ୍ଥାନରେ ଜାତ ହେବା ଏକଜାତୀୟ କଣ୍ଟକବୃକ୍ଷର ଚେରରୁ "ସୁରୁବୁଲ୍" ଅଦାୟ ହୁଏ। ପୂର୍ବେ ଏହି ଚେରରୁ ଅତି ଉତ୍କୃଷ୍ଟ "ରଙ୍ଗ" ତିଆରି ହେଉଥିଲା। ବିଦେଶୀ ରଙ୍ଗଗୁଣ୍ଡ ଏ ଦେଶରେ ପ୍ରବେଶ କରିବାରୁ ଏହି ଜାତୀୟ ରଙ୍ଗକୁ କେହି ବ୍ୟବହାର କରୁ ନାହାନ୍ତି। ତଥାପି, ଏହାକୁ ସଂଗ୍ରହ କରି ତହିଁରୁ ରଙ୍ଗଗୁଣ୍ଡ ତିଆରି କଲେ ଦେଶରେ ଗୋଟିଏ ଜାତୀୟ ଜିନିଷର ପ୍ରସାର ବୃଦ୍ଧିଲାଭ କରନ୍ତା।

**(ଗ) କନକା**—ବେଣା ଜାତୀୟ ଏକ ଘାସର ମୂଳ ବା କନ୍ଦାକୁ "କନକା" କୁହାଯାଏ। ପୁରୀ ଜିଲାର ବିଭିନ୍ନ ସ୍ଥାନରେ ଗୁଷ ଜମି କିମ୍ବା ପଡ଼ିଆ ଜମିରେ ଏହା ଜାତ ହୁଏ। ଏ ଅଞ୍ଚଳରେ ଦୁର୍ଭିକ୍ଷ ହେଲେ ସ୍ଥାନୀୟ ଗରିବମାନେ ଏହି କନ୍ଦାକୁ ଖୋଳି, ସଫାକରି ତହିଁର ଚୂନାରେ ପିଠା, ଜାଉ, ଖିରି କରି ଖାନ୍ତି। ଏହି କନ୍ଦା ଓ ତହିଁର ଖିରି ପିଠା ପ୍ରଭୃତି ଖାଇବାକୁ ଅତି ମିଠା ଲାଗେ। କିନ୍ତୁ ତା ଅତି ଗରିଷ୍ଠ ବା ଗୁରୁପାକ ଖାଦ୍ୟ ଅଟେ। ଆମ ଦେଶର ଲୋକମାନେ କର୍ଫ୍ଲେ, ଗୃ, ବାର୍ଲି ଓ ସାଗୁ ପ୍ରଭୃତି ଖାଦ୍ୟ ଖାନ୍ତି। ଏହି ସବୁ ଜିନିଷଗୁଡ଼ିକ ଔଷଧ ବାହାରୁ କିମ୍ବା ୟୁରୋପ, ଆମେରିକା ପ୍ରଭୃତି ଦେଶରୁ ଏଠାକୁ ରପ୍ତାନୀ ହୁଏ। ସେହିପରି କୌଣସି ବିଦେଶୀ ଜିନିଷ ବ୍ୟବହାର କରିବା ଅପେକ୍ଷା ଆମ ଦେଶର ଏହି ଖାଦ୍ୟଗୁଡ଼ିକ ବ୍ୟବହାର କରିବା ଉଚିତ ମନେ କରୁ। ଏ ଦିଗରେ ବିଶେଷ ପ୍ରଚାର କରିବା ପାଇଁ କେତେକ ସ୍ଥାନରେ ଏହି 'କନ୍ଦା'ଗୁଡ଼ିକୁ ଅଦାୟ କରି ତହିଁରୁ ଚୂନା ବା ଗୁଣ୍ଡ ପ୍ରସ୍ତୁତ କରାଇବାକୁ ହେବ। ଗଡ଼ଜାତରେ ମିଳୁଥିବା "ପାଲୁଅଗୁଣ୍ଡ" ପରି କନକାଗୁଣ୍ଡ ମଧ୍ୟ ଓଡ଼ିଶା ଓ ଗଡ଼ଜାତବାସୀ ପ୍ରଚୁର ପରିମାଣ ବ୍ୟବହାର କରିପାରନ୍ତି।

**(ଘ) କୁରୁବେଲି ଓ ବେଣାଚେର**—ଏଗୁଡ଼ିକ ମଧ୍ୟ ଯେ କୌଣସି ପଦର ଜମିରେ ଜାତ ହୁଏ କିମ୍ବା ବହୁଳ ପରିମାଣରେ କୃଷି କରି ଯାଇପାରେ। ଏହି ଚେରରୁ ଗୋଟିଏ ସୁଗନ୍ଧ ବାସ ଜାତ ହୁଏ। ଏହି ଚେରରେ ସୁନ୍ଦର ବିଚଣା ( ପଙ୍ଖା ), ଖୁସ ଖୁସ ପଟି ( Khus khus mats ), ବ୍ରସ ପ୍ରଭୃତି ତିଆରି କରି ଯାଇପାରେ। କୁରୁବେଲ ଓ ବେଣାଚେରର ଗୁଣ୍ଡକୁ ସ୍ତ୍ରୀମାନେ ଅଁଳା ସଙ୍ଗେ ମିଶାଇ ମୁଣ୍ଡରେ ଲଗାନ୍ତି, ତେଲରେ ମିଳାଇ ଲଗାନ୍ତି ଏବଂ ଏହି ଗୁଣ୍ଡ ଧୂପ ପାଇଁ ବ୍ୟବହାର କରାଯାଇଥାଏ। ଏହି ଗଛର କୃଷି କରିବା ସଙ୍ଗେ ସଙ୍ଗେ ସେହି ଚେରର ବିଭିନ୍ନ ଶିଳ୍ପ କରିବାକୁ ହେବ।

**(ଙ) ନଡ଼ିଆ କତା ଓ ଛାଲଶିଳ୍ପ**—ନଡ଼ିଆ କତାରେ ଦଉଡ଼ି, ବ୍ରସ, ପାପୋଛ, ଗଦି, ତକିଆ, ଶେଯ ପ୍ରଭୃତି ହୁଏ ଏବଂ ମୋଟା ନଡ଼ିଆ କତା ଓ ଛାଲ

ବାହୁଙ୍ଗାର ଭଲା ଶିରା ( fibres ) ଗୁଡ଼ିକରେ ଉତ୍କୃଷ୍ଟ ଧରଣର ବ୍ରୁସ୍ ( Brush ) ହୁଏ। ମାନ୍ଦ୍ରାଜ ଅଞ୍ଚଳର ମାଲବାର ଦେଶରେ ଏଇ ତାଳଶିରାକୁ ଉତ୍ତମରୂପେ ସିଝାଇ ଦେଇ ନରମ କରି ତାହାକୁ ଡାକ୍ତରମାନଙ୍କର ଅସ୍ତ୍ରଚିକିତ୍ସା (Operation) ପରେ ସେଇ କଟା ସାକୁ ସିଲାଇ କରିବା ପାଇଁ ବ୍ୟବହାର କରନ୍ତି । ଆମ ଦେଶର ନଡ଼ିଆ ଓ ତାଳଶିରା-ଗୁଡ଼ିକୁ ଏଇପରି ସୁବିଧା କଲେ ଏ ଦେଶରେ ଗୋଟିଏ ଅତି ଲାଭଜନକ ଶିଳ୍ପ କରାଯାଇ ପାରନ୍ତା ।

(ଚ) **ଖାଟ, ଛତା, ଟୋକେଇ ପ୍ରଭୃତି**—ଓଡ଼ିଶାରେ ଅନେକ ପ୍ରକାର ଉପକରଣ ମିଳେ, ଯଦ୍ଦ୍ୱାରା କି ଛତା (ଛାଲେଇ), ଖାଟ (ଡାଲା), ଟୋକେଇ, ପଟି (ମଶିଣା ଓ ହେଂସ ) ପ୍ରଭୃତି ସୁନ୍ଦରରୂପେ ତିଆରି କରାଯାଇ ପାରେ । ଏଇ ଉପକରଣଗୁଡ଼ିକ ବିନା କୃଷିରେ ଯେ କୌଣସିଠାରେ ହୁଏ । ଅତଏବ ଏଗୁଡ଼ିକୁ ସଂଗ୍ରହ କରି ତଦ୍ଦ୍ୱାରା ବିଭିନ୍ନ ପ୍ରକାର ଶିଳ୍ପ କାର୍ଯ୍ୟମାନ କରାଯାଇପାରେ । ଖାଟ, ଛତା ଓ ଟୋକେଇ ପ୍ରଭୃତି ଏ ଦେଶର କି ଧନୀ କି ଗରିବ ସମସ୍ତେ ପ୍ରତିଦିନ ବ୍ୟବହାର କରନ୍ତି । ତେଣୁ ଏଇ ଶିଳ୍ପକାର୍ଯ୍ୟ ଆମ ଦେଶର ଗ୍ରାମେ ଗ୍ରାମେ ପ୍ରବର୍ତ୍ତିତ ହେଲେ ଏଥିଦ୍ୱାରା ବିଶେଷ ଲାଭବାନ୍ ହେବା ସଙ୍ଗେ ସଙ୍ଗେ ଅନେକ ଗରିବ ଓ ଅକର୍ମା ଲୋକ ଏହି କାର୍ଯ୍ୟ କରି ଧନୋପାର୍ଜନ କରନ୍ତେ । ଖାଟ, ଛତା ଓ ଟୋକେଇ ପ୍ରଭୃତି ନିମ୍ନ ଉପକରଣମାନଙ୍କ ଦ୍ୱାରା ତିଆରି ହୋଇପାରେ:—

(୧) **ଖଜୁରି ଗଛର ପତ୍ର**—ଖଜୁରି ଗଛକୁ କେହି ଲଗାନ୍ତି ନାହିଁ କିମ୍ବା ତାହାର କୃଷି କରନ୍ତି ନାହିଁ । ଏଇ ଗଛଗୁଡ଼ିକ ଯେ କୌଣସି ସ୍ଥାନରେ ହୁଏ । ଏଇ ଗଛର ପତ୍ରକୁ କାଟି ଅତି ସୁନ୍ଦର ଛତା ( ମଶିଣା ) କରାଯାଏ । ପତ୍ର ଠିକ୍ ପାକଲ ହେଲେ ଏଇ ମଶିଣାଗୁଡ଼ିକ ବେଶ୍ ମଜବୁତ ହୁଏ ଓ ବର୍ଷାଧିକ କାଳ ରହେ । ମାନ୍ଦ୍ରାଜ ଅଞ୍ଚଳରେ ତେଲା, ଘୁଷୁରିଆ ପ୍ରଭୃତି ଜାତିର ଲୋକମାନେ ନିଜ ନିଜ ଫୁରସତ ସମୟରେ ଏଇ ମଶିଣା ବୁଣି ବେଶ୍ ପଇସା ରୋଜଗାର କରନ୍ତି । ଆମ ଦେଶର ଗରିବମାନେ ଅଧିକ ମୂଲ୍ୟ ଦେଇ ସପ କିମ୍ବା ହେଂସ ମଶିଣା ନ କିଣି ଏଇଗୁଡ଼ିକୁ ଅଳ୍ପ ମୂଲ୍ୟରେ କିଣି ବ୍ୟବହାର କରିପାରନ୍ତି।

(୨) **ତାଳପତ୍ର**—ତାଳଗଛକୁ ମଧ୍ୟ କେହି ଯତ୍ନ କରି ଲଗାନ୍ତି ନାହିଁ । ଏ ଗଛଗୁଡ଼ିକ ଯେ କୌଣସି ସ୍ଥାନରେ ହୁଏ । ତାଳପତ୍ରରେ ଅତି ସୁନ୍ଦର ଛତା ( ମଶିଣା ), ଟୋକେଇ,

ଡ଼ାଲ୍ଲ, ପାଣଅ, ଛତା ଓ ରେକା * ତିଆର ହୁଏ । ମାନ୍ଦ୍ରାଜର ଏକାଧିକ ଜିଲ୍ଲାରେ ଏଇ ପତ୍ରରେ ତିଆର ହେବା ଟୋକେଇ, ଛତା ପ୍ରଭୃତି ସେଠା ଲୋକମାନେ ବ୍ୟବହାର କରନ୍ତି । ତାଳପତ୍ରର ଛତା, ତଲର ଓ ପଶିଆଗୁଡ଼ିକ କୃଷକମାନଙ୍କ ପାଇଁ ବେଶ୍ ସୁବିଧାକର ଜିନିଷ ଅଟେ । ସେ ଅଞ୍ଚଳର ପ୍ରାୟ ପ୍ରତ୍ୟେକ କୃଷକ ଓ ଗରିବ ଲୋକମାନେ ଏଗୁଡ଼ିକୁ ବ୍ୟବହାର କରନ୍ତି ।

(୩) **ନଳିଆ ପତ୍ର**—ଓଡ଼ିଶାର ବିଭିନ୍ନ ସ୍ଥାନରେ ବିଶେଷତଃ ପୁରୀ ଜିଲ୍ଲାରେ ନଳିଆ ଗଛ ପ୍ରଚୁର ହୁଏ । ଏଇ ଗଛର ପତ୍ରରେ ଭଲ ଡାଟି ବା ଗୁଣ୍ଠ ହୁଏ । ଏଇ ଗୁଣ୍ଠ ବାଡ଼ ଦେବାପାଇଁ ( Fencing ) କିମ୍ବା ତାହାଁ ଉପରେ ଶୋଇବା ପାଇଁ ଓ ଛାମୁଣ୍ଡିଆ ଉପରେ ଦେବାପାଇଁ ବ୍ୟବହାର କରି ଯାଇପାରେ । କେତେକ ଲୋକ ବିଶେଷତଃ ଗରିବ ଓ ମଧ୍ୟବିତ୍ତ ଲୋକମାନେ ଏଇ ଗୁଣ୍ଠକୁ ଘର ଛପର ପାଇଁ ବ୍ୟବହାର କରନ୍ତି । ନଡ଼ା ତଳେ କିମ୍ବା ନଡ଼ା ଉପରେ ଦେଲେ ଘର ଅତି ମଜବୁତ ହୁଏ ବୋଲି ସେମାନେ ଏଇ ଗୁଣ୍ଠ ବ୍ୟବହାର କରନ୍ତି ।

(୪) **ଶିଆଳୀପତ୍ର**—ଶିଆଳପତ୍ରରେ 'ଖଲି' ତିଆରି ହେଉଥିବା କଥା ପୂର୍ବେ କୁହାଯାଇଛି । ଖଲି ସଙ୍ଗେ ସଙ୍ଗେ ତଲର, ପଶିଆ, ଖଟିଆ ଓ ଶଗଡ଼ର ଉପର ଘୋଡ଼ (ଗୁଡ଼ ବା ଡାଟି) ପ୍ରଭୃତି ମଧ୍ୟ ଶିଆଳି ପତ୍ରରେ ତିଆରି କରିଯାଇ ପାରେ । ଜୟପୁର ଓ ଗଡ଼ଜାତର ଅନେକ ସ୍ଥାନରେ ଆଦିମବାସୀମାନେ ଏଗୁଡ଼ିକୁ ବିଶେଷରୂପେ ତିଆରି କରି ବ୍ୟବହାର କରନ୍ତି । ଏହି ଶିଳ୍ପର ଅଧିକ ଉନ୍ନତି କଲେ ତଲର ଓ ପଶିଆ ପ୍ରଭୃତି ଓଡ଼ିଶାର କୃଷକ ଓ ଗରିବମାନେ ମଧ୍ୟ ବ୍ୟବହାର କରିପାରନ୍ତେ । ତଦ୍ୱାରା ସେମାନେ ଅଳ୍ପ ମୂଲ୍ୟରେ ବେଶି ସୁବିଧା ପାନ୍ତେ ଏବଂ ଅଧିକ ମୂଲ୍ୟ ଦେଇ ବିଦେଶୀ 'କନାଛତା' ପ୍ରଭୃତି କିଣି ଖର୍ଚ୍ଚାନ୍ତ ହୁଅନ୍ତେ ନାହିଁ ।

(୫) **ବାଉଁଶ ପାଡିଆ**—ବାଉଁଶ ପାଡଆରେ ଛପା (ତଲେଇ), ଡାଟି, ଟୋକେଇ ଓ ଘରର ଅନ୍ୟାନ୍ୟ ସାଧାରଣ ଉପକରଣମାନ ତିଆରି କରିଯାଇପାରେ । ଗ୍ରୀଷ୍ମଦିନରେ ଆମ୍ବ, ପଣସ, କମଳା ପ୍ରଭୃତି ପାଚିଲା ଓ କଞ୍ଚା ଫଳଗୁଡ଼ିକ ଦୂରଦେଶକୁ ପଠାଇବା ପାଇ

---

* "ରେକା"—ଖଣ୍ଡିଏ ବା ଦୁଇ ଖଣ୍ଡି ଛୋଟ ତାଳପତ୍ରରେ ତିଆରି ହେବା ଏକପ୍ରକାର ଟୋକେଇ । ମାନ୍ଦ୍ରାଜର ଏକାଧିକ ଜିଲ୍ଲାରେ ଏଇ ରେକା ସାହାଯ୍ୟରେ ଲୋକମାନେ କୂଅରୁ ପାଣି କାଢ଼ନ୍ତି । ଗୋଟିଏ ରେକା ପ୍ରାୟ ୨।୪ ମାସ ପାଏ ବ୍ୟବହାର କରିପାଇପାରେ । ଏଥିର ମୂଲ୍ୟ ଗୋଟିକୁ ଏକ ବା ଦେଢ଼ ପଇସା ମାତ୍ର ।

ଯେଉଁ ପାଶଆ ବା ଟୋକେଇ ଦରକାର ହୁଏ, ସେ ସବୁ ବାଉଁଶ ପାତିଅରେ ତିଆର କରାଯାଇ ପାରେ । ଓଡ଼ିଶା ଓ ଗଡ଼ଜାତର ଅନେକ ସ୍ଥାନରେ ବାଉଁଶ ମିଳେ । ଏଇ ବାଉଁଶକୁ କାଟି ତଦ୍ଦ୍ୱାରା ଉପର୍ଯ୍ୟୁକ୍ତ ନାନାପ୍ରକାର ଗୃହୋପକରଣମାନ ତିଆର କରିବାକୁ ହେବ । ବାଉଁଶ ପାତିଅର କାମ ସାଧାରଣତଃ ଆମ ଦେଶର ହାଡ଼ି ଓ ମେଦରମାନେ କରନ୍ତି । ଗଡ଼ଜାତ ଓ ଜୟପୁରରେ କେତେକ ଅଦମ ଜାତର ଲୋକମାନେ ମଧ୍ୟ ଏଇ କାମ କରନ୍ତି । ଏଇ ଶିଳ୍ପଦ୍ୱାରା ସେଇ ଜାତର ଲୋକମାନେ ଯଥେଷ୍ଟ କାର୍ଯ୍ୟ ପାଇଁ ସୁଖରେ ଜୀବିକାର୍ଜ୍ଜନ କରନ୍ତେ ।

(୬) କାଇଁଶ —ଓଡ଼ିଶାର କେତେକ ସ୍ଥାନରେ "କାଇଁଶ" ନାମକ ଏକ ଜାତୀୟ ଘାସ ଗଛ ମିଳେ । ଏଇ ଘାସର ଉପର ଖୋଳ ଅତି ମୃଦୁ ଓ ଚିକ୍କଣ ରହେ । ଏଥି ଦ୍ୱାରା ବହୁଳ ପ୍ରକାର ପାଶଆ ଓ ଫୁଲଡାଲି ପ୍ରସ୍ତୁତ କରା ଯାଇପାରେ ।

(୭) ପଟି—ସପ, ସେନ୍ତରା ଓ ବେରୁଆଁ ପ୍ରସ୍ତୁତ ଘାସରେ ଅନେକ ପ୍ରକାର ପଟି (ମସିଣ) ତିଆର କରାଯାଇ ପାରେ । ଏହି ଘାସଗୁଡ଼ିକ ଓଡ଼ିଶାର ବହୁଳ ସ୍ଥାନରେ, ବିନା କୃଷିରେ ଜାତ ହୁଏ । ଏଗୁଡ଼ିକୁ ସଂଗ୍ରହ କରି ଦେଶର ଗରିବ ଲୋକମାନଙ୍କ ଦ୍ୱାରା ଏଇ ଶିଳ୍ପ କରାଇଲେ ସେମାନଙ୍କର ଆର୍ଥିକ ଦୁରବସ୍ଥା ଦୂର ହେବ ।

(୮) ଇଙ୍କରଛାଟି—ପାନ "ବରଜ" ପାଇଁ ଇଙ୍କର ପତ୍ରରେ ଅତି ଉତ୍କୃଷ୍ଟ ଛାଟି ତିଆର କରାଯାଏ ।

୬ । ଧାନକୁଟା—ଧାନକୁଟା ଆମ ଦେଶ ଗରିବ ଓ ମଧ୍ୟବିତ୍ତ ସ୍ତ୍ରୀମାନଙ୍କର ଗୋଟିଏ ପ୍ରଧାନ ଜୀବିକା । ଢିଙ୍କିରେ ଧାନ କୁଟି ଖାଇବା ପ୍ରଥା କେବଳ ଓଡ଼ିଶା ବ୍ୟତୀତ ଭାରତର ଅନ୍ୟାନ୍ୟ ପ୍ରଦେଶରେ କ୍ୱଚିତ୍ ଦେଖାଯାଏ । ଏଣୁ ଏହାକୁ ଓଡ଼ିଶାର ଗୋଟିଏ ପ୍ରଧାନ "ଜାତୀୟ ଶିଳ୍ପ" କହିଲେ ଅତ୍ୟୁକ୍ତି ହେବ ନାହିଁ ।

"କୁଟି ଖାଇବା
ଓ
କାଟି ପିନ୍ଧିବା"—

ଅତି ପ୍ରାଚୀନ କାଳରୁ ଓଡ଼ିଶାବାସୀଙ୍କର ଏହାହିଁ ପ୍ରଧାନ ଲକ୍ଷ୍ୟ ଥିଲା । ସେ କାଳରେ ଦେଶବାସୀଙ୍କର କାର୍ଯ୍ୟକଳାପଗୁଡ଼ିକୁ ନେଇ ଅନେକଗୁଡ଼ିଏ "ପ୍ରବଚନ" ଓ "ଢଗଢମାଳି" ସୃଷ୍ଟ ହୋଇଥିଲା । ବର୍ତ୍ତମାନ ଏ ଦେଶରେ ସେପରି କାର୍ଯ୍ୟକଳାପ ନାହିଁ କି ସେଇ ଢଗଢମାଳୀର ପ୍ରକୃତ ଅର୍ଥ ବୁଝିବା ଭଳି ଲୋକ ନାହାନ୍ତି । ନିଜ ଖାଦ୍ୟ

ପାଇଁ ନିଜେ ଧାନ କୁଟିବେ ଓ ନିଜର ପିନ୍ଧା ପାଇଁ ନିଜେ ସୂତା କାଟି ଲୁଗା ବୁଣାଇବେ — ଏ ଥିଲା ପ୍ରାଚୀନ ଓଡ଼ିଶାବାସୀଙ୍କର ଦୈନନ୍ଦିନ କର୍ତ୍ତବ୍ୟ । ସେ କାଳରେ ଲୋକମାନେ ମୋଟା ଖାଇ ମୋଟା ପିନ୍ଧୁଥିବାରୁ ପ୍ରାଚୀନ ଓଡ଼ିଶା(କଳିଙ୍ଗ)ବାସୀ ହୃଷ୍ଟପୁଷ୍ଟ ଥିଲେ ଓ ସେଇ କାରଣରୁ ସଂସ୍କୃତ ସାହିତ୍ୟରେ "କଳିଙ୍ଗାଃ ସାହସିକାଃ" ବୋଲି ଗୋଟିଏ ପ୍ରବଚନ ଲେଖା ଯାଇଥିଲା ।

ଆଜିକାଲି ଆମ ଦେଶର କି ଶିକ୍ଷିତ କି ଅଶିକ୍ଷିତ, ସମସ୍ତେ ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା, ଆଚାର ଓ ବ୍ୟବହାରର ପ୍ରଧାନ ଉପାସକ ହୋଇଥିବାରୁ ନିଜର ସମସ୍ତ ପ୍ରକାର ଦୈନନ୍ଦିନ କାର୍ଯ୍ୟକଳାପଗୁଡ଼ିକୁ ମଧ୍ୟ ସେହି ଢଙ୍ଗରେ ଗଢ଼ୁଅଛନ୍ତି । କେବଳ ସେହି କାରଣରୁ ସେମାନେ ପ୍ରାଚୀନ ନିୟମଗୁଡ଼ିକୁ ପାସୋରି ଦେଇଛନ୍ତି । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ଅନୁକରଣ କରିବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଦେଶର ଲୁଗାପଟା ବ୍ୟବହାର କରନ୍ତି ଏବଂ ପାଶ୍ଚାତ୍ୟ ରୀତି ଅନୁସାରେ ନିଜର ଖାଦ୍ୟପଦାର୍ଥଗୁଡ଼ିକୁ ମଧ୍ୟ ତିଆରି କରନ୍ତି । ଏହି ପାଶ୍ଚାତ୍ୟ ଆଦର୍ଶ ଯୋଗୁଁ ଆମ ଦେଶରେ ଅତି ପ୍ରାଚୀନ କାଳରୁ ଚାଲିଆସୁଥିବା ଜାତୀୟ ଶିଳ୍ପ – ଧାନକୁଟା—ଆମ ଦେଶବାସୀ ଏକାବେଳେ ଛାଡ଼ିଦେଇ ତା ବଦଳରେ କେବଳ ଯନ୍ତ୍ରଦ୍ୱାରା ପ୍ରସ୍ତୁତ ଚାଉଳ ( Milled Rice ) ଖାଆନ୍ତି । ଏଇ ଚାଉଳ ଦେଖିବାକୁ ସଫା ଦିଶେ; କିନ୍ତୁ ଯନ୍ତ୍ରଦ୍ୱାରା ପ୍ରସ୍ତୁତ ହେବାରୁ ଏହାର ପ୍ରଧାନ ଉପାଦାନ (Vitamine) ନଷ୍ଟ ହୋଇଥାଏ । ଭାରତର ଯେଉଁ ଯେଉଁ ପ୍ରଦେଶବାସୀ ଏଇ ଯନ୍ତ୍ରଦ୍ୱାରା ପ୍ରସ୍ତୁତ ଚାଉଳ ଖାଆନ୍ତି, ସେମାନଙ୍କ ମଧ୍ୟରେ ଏକପ୍ରକାର ସ୍ନାୟୁଜନିତ ରୋଗ (Beriberi) ଦେଖାଯାଏ । ତଥାପି, ଆମ ଦେଶବାସୀ ନିଜର ଅଜ୍ଞାନତାବଶତଃ ସେଇ ଚାଉଳ ଖାଆନ୍ତି । ଓଡ଼ିଶାବ୍ୟତୀତ ଭାରତର ଅନ୍ୟାନ୍ୟ ପ୍ରଧାନ ପ୍ରଦେଶଗୁଡ଼ିକରେ ଆଜିକାଲି ଧାନକୁଟା କଳମାନ (Rice Mills) ନିର୍ମିତ ହୋଇଛି । ତଦ୍ଦ୍ୱାରା ଏ ଦେଶର ଅନେକ ଗରିବ ବିଧବା ସ୍ତ୍ରୀ ନିଜର ପେଟପୋଷା ବ୍ୟବସାୟରୁ ବଞ୍ଚିତ ହୋଇଛନ୍ତି ସିନା । *

ସୁଖର ବିଷୟ, ଓଡ଼ିଶାବାସୀ ଏଇ ମିଲଚାଉଳର ପ୍ରଧାନ ଉପାସକ ହୋଇ ନାହାନ୍ତି । କେବଳ ଅଳ୍ପ କେତୋଟି ସହରିଆ ବାବୁଙ୍କୁ ବାଦ୍ ଦେଲେ ଆଜି ସବୁ ଲୋକ ସେହି ପୁରୁଣା

* "In India the erection of rice mills for husking paddy is turning out thousands and lakhs of poor widows who formerly earned their livelihood by husking paddy." (Dr. P. C. Ray's lecture at Rajahmandry. A. B. P.—18-7-32

ଯନ୍ତ୍ରରେ ଚାଉଳ ପ୍ରସ୍ତୁତ କରାଯାଉଛି । ତଥାପି ଏହି ଶିଳ୍ପର ଉନ୍ନତି ହୋଇ ପାରୁ ନାହିଁ । କେବଳ ଅଳ୍ପ କେତୋଟି ପଲ୍ଲୀବାସୀଙ୍କୁ ବାଦ୍ ଦେଲେ ଅନ୍ୟ କେହି ଲୋକ—ମଧ୍ୟବିତ୍ତ ଓ ଧନୀ ଘରର ଲୋକମାନେ—ଧାନକୁ ନିଜ ଘରେ କୁଟି ଚାଉଳ କରନ୍ତି ନାହିଁ । ସେମାନେ ହୁଏତ କୌଣସି ଗରିବ ଘରେ ନିଜର ଧାନ କୁଟାଇ ଆଣନ୍ତି କିମ୍ବା ଦୋକାନରୁ ଚାଉଳ କିଣନ୍ତି । ଆମ ଦେଶରେ ଦୋକାନୀମାନଙ୍କର ଯେପରି ଶୋଚନୀୟ ଅବସ୍ଥା ଦେଖାଯାଏ, ସେମାନେ ଯେ କେବଳ 'କୁଟା ଚାଉଳ' ଲୋକମାନଙ୍କୁ ଦିଅନ୍ତି, ବିଶ୍ୱାସ କରିହୁଏ ନାହିଁ । ଅନେକ ସମୟରେ ସେମାନେ (ଦୋକାନୀମାନେ) କଲିକତା, ବ୍ରହ୍ମଦେଶ ଓ ଅନ୍ୟାନ୍ୟ ସହରର କଲ ଚାଉଳ ମଗାଇ ବିକନ୍ତି । ଏହି ଚାଉଳଗୁଡ଼ିକ କେବଳ ମିଲ୍ ଦ୍ୱାରା ପ୍ରସ୍ତୁତ ହୋଇଥାଏ । ଅତଏବ ଦେଶରେ ଏହି ପ୍ରାଚୀନ ଶିଳ୍ପକୁ ପୁନରୁଦ୍ଧାର କରିବା ପାଇଁ ଏବଂ ଦେଶର ଗରିବ ସ୍ତ୍ରୀମାନଙ୍କ ଅନ୍ନକଷ୍ଟ ଦୂର କରିବା ପାଇଁ ପ୍ରତ୍ୟେକ ପଲ୍ଲୀ ଓ ସହରରେ ଧାନକୁଟାର ବ୍ୟବସ୍ଥା କରିବାକୁ ହେବ । କେବଳ ଏହି "ଶିଳ୍ପ" ଦ୍ୱାରା ଅନେକ ସ୍ତ୍ରୀ—ବିଶେଷତଃ ବିଧବା ସ୍ତ୍ରୀମାନେ ଦିନକୁ ୨।୪ ଅଣା ରୋଜଗାର କରିପାରିବେ ଓ ସଙ୍ଗେ ସଙ୍ଗେ ଦେଶବାସୀ ଅତି ସୁନ୍ଦର ଓ 'ସ୍ୱାସ୍ଥ୍ୟକର' ଚାଉଳ ପାଇପାରିବେ ।

ଧାନ କୁଟିବା ପାଇଁ ବିଶେଷ ବୁଦ୍ଧିବିଦ୍ୟା କିମ୍ବା ଯନ୍ତ୍ର ଦରକାର ନାହିଁ । ଖଣ୍ଡିଏ "ଢିଙ୍କି", ମାଲ୍, ସମା ପ୍ରସ୍ତୁତ ହେଲେ ଯଥେଷ୍ଟ । ଜଣେ ସ୍ତ୍ରୀ ଗୋଟିଏ ଦିନରେ ପ୍ରାୟ ଏକ ଭରଣ ଧାନର ଚାଉଳ କୁଟିପାରେ ; ସାହାଯ୍ୟ ପାଇଲେ ଆହୁରି ଅଧିକ ମଧ୍ୟ କୁଟିପାରେ । ଦେଶର ଘରେ ଘରେ ଧାନକୁଟା ହେଲେ ସେହି ଧାନରୁ ବାହାରିବା 'କୁଣ୍ଡା' ଗାଈଗୋରୁଙ୍କ ପାଇଁ ଖାଦ୍ୟ ହୋଇପାରେ । ତହିଁରୁ ବାହାରିବା 'ଖୁଦ' ସେହି ଗରିବ ସ୍ତ୍ରୀପୁରୁଷମାନଙ୍କର ଖାଦ୍ୟ ହୋଇପାରେ ଏବଂ ଦେଶବାସୀ ଭଲ ଚାଉଳ ପାଇପାରନ୍ତି । ଧାନର 'ଚଷୁ' ଜାଳିବା ପାଇଁ କିମ୍ବା ମାଟିକାନ୍ଥବାଡ଼ ଲେଶିବା ପାଇଁ ବ୍ୟବହାରରେ ଆସିପାରେ ।

**୭ । କଣେଇ ଓ ଖେଳନା ତିଆରି**—କାଠ, ମାଟି, ଗୋବର, ଛିଣ୍ଡାକନା ଓ ଛିଣ୍ଡାକାଗଜ ପ୍ରଭୃତିରେ ପିଲାମାନଙ୍କର ଅନେକପ୍ରକାର କଣେଇ ଓ ଖେଳନା ତିଆରି କରାଯାଇ ପାରେ । ଓଡ଼ିଶା ଓ ଗଞ୍ଜାମର ବିଭିନ୍ନ ସ୍ଥାନରେ ଅନେକ "ଚିତ୍ରକାର" କେବଳ ଏହି ଶିଳ୍ପଦ୍ୱାରା ନିଜର ଜୀବିକାର୍ଜନ କରନ୍ତି । ଆଜିକାଲି ଦେଶର ଶିକ୍ଷିତ ବାବୁମାନେ ଚୀନ, ଜାପାନ, ଜର୍ମାନୀ ଓ ଇଂଲଣ୍ଡ ପ୍ରଭୃତି ଦେଶରୁ ଆସିଥିବା ରବର, ମାଟି, କାଚ ଓ ପଥର ଖେଳନାଗୁଡ଼ିକୁ ଅଧିକ ମୂଲ୍ୟ ଦେଇ କିଣି ନିଜନିଜର ପିଲାପିଲିଙ୍କୁ ଦିଅନ୍ତି । ଏଗୁଡ଼ିକ ଅତି ସୁନ୍ଦର ଓ ମନୋମୁଗ୍ଧକର ଦେଖାଯାଏ ସତ୍ୟ; କିନ୍ତୁ ଏଗୁଡ଼ିକୁ ଅଧିକ ମୂଲ୍ୟ ଦେଇ କିଣିବା ଦ୍ୱାରା ଏ ଦେଶର

ଜାତୀୟ ଶିଳ୍ପ ନଷ୍ଟ ହେବା ସଙ୍ଗେ ସଙ୍ଗେ ଦେଶରୁ ପ୍ରଚୁର ଧନ ଯେ ବିଦେଶକୁ ଯାଉଛି, ଏ କଥା ଆମ ଦେଶର ବାବୁମାନେ ଆଦୌ ଭାବନ୍ତି ନାହିଁ ! ସେମାନଙ୍କର ଉଦାସୀନତାଯୋଗୁଁ ସିନା ଆମ ଦେଶର 'ଶଙ୍ଖାରି' ଓ ଅନ୍ୟାନ୍ୟ କାରିଗରମାନେ ସ୍ୱ ସ୍ୱ ବୃତ୍ତି ଛାଡ଼ି, ବିଦେଶ ଯାଇ କୁଲିକାମ କରନ୍ତି ? ଉତ୍ସାହ ପାଇଲେ ଆମ ଦେଶର ଶିଳ୍ପୀମାନେ ଯେ ଏଇ କଣ୍ଢେଇ ଓ ଖେଳନାଗୁଡ଼ିକୁ ଅଧିକ ସୁନ୍ଦର ଓ ସୁଦୃଢ଼ କରି ତିଆରି କରିପାରିବେ, ସନ୍ଦେହ ନାହିଁ ।

ସୁଖର ବିଷୟ, 'ଗତ ୨୪ ବର୍ଷ ହେଲା କଟକର ପ୍ରଧାନ ଓକିଲ ରାୟସାହେବ ଶ୍ରୀ ଭିକାରୀଚରଣ ପଟ୍ଟନାୟକ ବି. ଏଲ୍. ଯେଉଁ 'ଅଭଙ୍ଗା କଣ୍ଢେଇ' ତିଆରି କରିଛନ୍ତି, ସେଗୁଡ଼ିକ ଦେଶବିଦେଶର ଲୋକମାନଙ୍କଦ୍ୱାରା ବିଶେଷରୂପେ ଆଦୃତ ହୋଇଛି ! ଏ ଦିଗରେ ଅଧିକ ଚେଷ୍ଟା କଲେ ଏଇ ଶିଳ୍ପ ଯେ ଓଡ଼ିଶାରେ ଉନ୍ନତି କରିବ, ସନ୍ଦେହ ନାହିଁ ।

ଆମ ଦେଶର ଅନେକ ସ୍କୁଲଛାତ୍ର ଆଦର୍ଶ ଡ୍ରଇଂ (Model Drawing) ଲେଖି ବା ତିଆରି କରି ପୁରସ୍କାର ପାଆନ୍ତି । କେବଳ ପୁରସ୍କାର ପାଇବା ବ୍ୟତୀତ ଏମାନେ ଯେ ଏଇ ଶିଳ୍ପ ଦ୍ୱାରା ନିଜର ଭବିଷ୍ୟତ୍ ଜୀବିକାର୍ଜ୍ଜନ କରିପାରିବେ, ସେ ଦିଗରେ ସେମାନଙ୍କୁ କୌଣସି ପ୍ରକାର ଶିକ୍ଷା ଦିଆଯାଏ ନାହିଁ । ସେପରି ଶିକ୍ଷା ପାଉଥିଲେ ଆମ ଦେଶର ଅନେକ ଯୁବକ ଆଜି ଅକର୍ମା ହୋଇ ଘରେ ବସିରହନ୍ତେ ନାହିଁ ।

ଆମ ଦେଶର ସ୍କୁଲ କଲେଜ ପାଇଁ ପ୍ରତିବର୍ଷ ହଜାର ହଜାର ଟଙ୍କାର ମାଟି, କାଚ, କାଠ ଓ ପଥରର 'ଆଦର୍ଶ ଛବି' (Models) ଜର୍ମାନ, ଫ୍ରାନ୍ସ ଓ ଇଂଲଣ୍ଡ ପ୍ରଭୃତି ଦେଶରୁ ଆମଦାନୀ ହୁଏ । ଏଇ 'ଛବି'ଗୁଡ଼ିକୁ ସେ ଦେଶର ସ୍କୁଲ ଛାତ୍ର ଓ ଅନ୍ୟାନ୍ୟ କାରିଗରମାନେ ତିଆରି କରନ୍ତି । ଅଧିକାଂଶ 'ଛବି' ଯନ୍ତ୍ର ସାହାଯ୍ୟରେ ତିଆରି ହୋଇଥିବାରୁ ସେଗୁଡ଼ିକ ଅତି ସୁନ୍ଦର ଦିଶେ । କିନ୍ତୁ ସେପରି କାର୍ଯ୍ୟ କରିବାପାଇଁ ଆମ ଦେଶରେ ବିଶେଷ ସୁବିଧା ଥିବା ସତ୍ତ୍ୱେ ତାହାର କୌଣସି ସଦ୍ବ୍ୟବହାର ଏପର୍ଯ୍ୟନ୍ତ ହୋଇ ନାହିଁ । ଉପଯୁକ୍ତ ଶିକ୍ଷା ପାଇଲେ ଆମ ଦେଶର ଛାତ୍ର ଓ କାରିଗରମାନେ ଏଇ କାର୍ଯ୍ୟଗୁଡ଼ିକ ବେଶ୍ ସୁନ୍ଦର କରିପାରିବେ । ଏ ଦିଗରେ ଦେଶର ନେତାମାନଙ୍କୁ ବିଶେଷ ଦୃଷ୍ଟି ଦେବାକୁ ହେବ ।

ପ୍ରାୟ ସବୁ ସ୍କୁଲ (ଛୋଟ ଓ ବଡ଼) ଓ କଲେଜଗୁଡ଼ିକରେ ଏଇ ଆଦର୍ଶ (Model) ଛବି ଏବଂ ମାଟିର ମାନଚିତ୍ର (Relief Map) ବ୍ୟବହାର କରନ୍ତି । ଏଗୁଡ଼ିକ ଆମ ଦେଶର ସ୍କୁଲଛାତ୍ର, ଶିକ୍ଷକ ଓ କାରିଗରମାନେ କରି ପାରନ୍ତି । ବଡ଼ ସ୍କୁଲ ବା କଲେଜରେ ତିଆରି ହେବା ଏଇ ଛବି ଓ ମାନଚିତ୍ରଗୁଡ଼ିକୁ ଛୋଟ ଛୋଟ ସ୍କୁଲରେ ବ୍ୟବ-

ହାର କରାଯାଇ ପାରେ, ଅର୍ଥାତ୍ ଛୋଟ ସ୍କୁଲର କତିପୟ ପିଲାମାନେ ଏଥିରୁ କାମ ପାଆନ୍ତି । ତଦ୍ଦ୍ୱାରା ଦେଶୀୟ ଶିଳ୍ପର ଉନ୍ନତ ହେବା ସଙ୍ଗେ ସଙ୍ଗେ ଏ ଦେଶର ଧନ ବିଦେଶକୁ ଯିବା ବନ୍ଦ ହୁଅନ୍ତା । *

୮ । 'ଟିଣ' ଡବା ଓ ମଲାଟ ପେଡ଼ି ତିଆରି—ଆମ ଦେଶରେ ପ୍ରତିବର୍ଷ ହଜାର ହଜାର ଟଙ୍କାର "କିରାସିନି" ପୋଡ଼ା ହୁଏ । ଏହି 'କିରାସିନୀ ଯେଉଁ ଟିଣରେ ଆସେ, ସେ ଟିଣର ସଦ୍‌ବ୍ୟବହାର କେହି କରନ୍ତି ନାହିଁ । ଅଳ୍ପ କେତୋଟି ମହାଜନ ଏଗୁଡ଼ିକୁ ସଂଗ୍ରହ କରି, ବିଦେଶକୁ ରପ୍ତାନୀ କରିବା ଦ୍ୱାରା ସାମାନ୍ୟରୂପେ ଲାଭବାନ୍ ହୁଅନ୍ତି । କିନ୍ତୁ ଏହି ଟିଣଗୁଡ଼ିକୁ ସଂଗ୍ରହ କରି ତଦ୍ଦ୍ୱାରା ବିଭିନ୍ନ ପ୍ରକାର ଶିଳ୍ପ କାର୍ଯ୍ୟମାନ କରାଯାଇ ପାରେ । ବୈଦ୍ୟ ଓ ଔଷଧ ବ୍ୟବସାୟୀମାନେ (Chemists) ଲେହ, ମୋଦକ, ଚୂର୍ଣ୍ଣ ଓ ବଟିକା ପ୍ରଭୃତି ଔଷଧ ରଖିବା ପାଇଁ ଯେଉଁ ଛୋଟ ଓ ବଡ଼ ଡବା ଦରକାର କରନ୍ତି, ସେହି ଡବା-ଗୁଡ଼ିକ ଆମ ଦେଶରେ ତିଆରି କରାଯାଇପାରେ । ସମସ୍ତ ସମୟରେ ଏହି ଟିଣରୁ ଛୋଟ ଛୋଟ ହାତ ପେଡ଼ି ବା ବାକ୍ସ କରାଯାଇପାରେ । ଏଗୁଡ଼ିକରେ ଗରିବମାନେ ଲୁଗାପଟା ବା ଅନ୍ୟାନ୍ୟ ଜିନିଷ ରଖିପାରନ୍ତି । ସ୍କୁଲ୍ ବୋର୍ଡିଂରେ ଛାତ୍ରମାନେ ବହିପତ୍ର ଓ ଲୁଗାପଟା ରଖିବାପାଇଁ ମଧ୍ୟ ଏହି ଟିଣପେଡ଼ାଗୁଡ଼ିକୁ ବ୍ୟବହାର କରିପାରନ୍ତି ।

ଔଷଧ ଓ ଅଳଙ୍କାରପତ୍ର ରଖିବା ପାଇଁ ବ୍ୟବସାୟୀ ଓ ବୈଦ୍ୟମାନେ 'ମଲାଟ ପେଡ଼ି' ( Card-board Box ) ଗୁଡ଼ିକୁ ବିଶେଷ ଦରକାର କରନ୍ତି । ଭାରତର ବିଭିନ୍ନ ସହରରେ ଯେଉଁ ସାହେବୀ ଓ ଦେଶୀ କମ୍ପାନୀମାନ ଅଛି, ସେଠାରେ ନାନାପ୍ରକାର ଜିନିଷ ରଖିବାପାଇଁ ବା ଜିନିଷ ବୁହାଇ ପାର୍ଶ୍ୱଲ୍ କରିବାପାଇଁ ମଲାଟପେଡ଼ିଗୁଡ଼ିକ ଦରକାର ହୁଏ । ଏହି ପେଡ଼ିଗୁଡ଼ିକ ଯେ କୌଣସି ସ୍ଥାନରେ ତିଆରି କରା ଯାଇପାରେ । କେବଳ କେତେ ଖଣ୍ଡ ମଲାଟ ଓ ଅଠା କିମ୍ବା ଲୁହାକଣ୍ଟା ହେଲେ ଏଗୁଡ଼ିକୁ କରି ହେବ । ଆମ ଦେଶର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଅକର୍ମୀମାନେ ଚାକିରି ପାଇବାପାଇଁ ନାନା ଦେଶ ବୁଲିବା ଅପେକ୍ଷା ଅଳ୍ପ କେତେକ ଟଙ୍କା ଖର୍ଚ୍ଚ କରି ଏହି ଶିଳ୍ପ କଲେ ବିଶେଷ ଲାଭବାନ୍ ହେବା ନିଃସନ୍ଦେହ ।

୯ । ବେତ, କିଆପଟ ଓ ବାଉଁଶ ପେଡ଼ି ବା ପେଟରା ତିଆରି— ଓଡ଼ିଶା ଓ ଓଡ଼ିଶା ଗଡ଼ଜାତର ବିଭିନ୍ନ ସ୍ଥାନରେ ବେତ, କିଆପଟ ଓ ବାଉଁଶ ପ୍ରଚୁର

---

* ଅଲଙ୍କା କଣ୍ଢେଇ ଓ ମାନଚିତ୍ର ପ୍ରଭୃତି ତିଆରି କରିବାରେ କଟକର ଓକିଲ ଶ୍ରୀ ଭିକାରିଚରଣ ପଟ୍ଟନାୟକଙ୍କ କାର୍ଯ୍ୟ ଅନୁକରଣୀୟ ।

ମିଳେ । ଏଇ ଜିନଷଗୁଡ଼ିକୁ ନେଇ ଅତି ସୁନ୍ଦର ଓ ମଜବୁତ ପେଡ଼ି ବା 'ପେଟରା' ତିଆର କରାଯାଇପାରେ । ଏଇ ପେଟରାଗୁଡ଼ିକ ଏତେ ଶକ୍ତ ବା ଟାଣ ଥାଏ ଯେ, ଏଗୁଡ଼ିକୁ ସହଜରେ କେହି ଭାଙ୍ଗିପାରନ୍ତି ନାହିଁ । ଆମ ଦେଶର ସ୍କୁଲ ଛାତ୍ରମାନେ ଏଇ ପେଟରାଗୁଡ଼ିକରେ ବହିପତ୍ର ଓ ଲୁଗାପଟା ରଖନ୍ତି । ଅନେକ ଗରିବ ଓ ମଧ୍ୟବିତ୍ତ ଲୋକମାନେ ମଧ୍ୟ ଏଗୁଡ଼ିକୁ ବ୍ୟବହାର କରନ୍ତି । ଆଜକାଲି ଦେଶର ବାବୁମାନେ ଯେଉଁ 'ସୁଟ୍‌କେସ' (Suit-case) ଓ ଟ୍ରଙ୍କ (Trunk) ପ୍ରଭୃତି ଅଧିକ ମୂଲ୍ୟ ଦେଇ କିଣନ୍ତି, ତା ଅପେକ୍ଷା ଏଇ ପେଟରାଗୁଡ଼ିକୁ ବିଶେଷ ଆଦର କଲେ ଆମ ଦେଶର ଗୋଟିଏ ପ୍ରଧାନ ଜାତୀୟ ଶିଳ୍ପର ପୁନରୁଦ୍ଧାର ହୁଅନ୍ତା ଓ ସଙ୍ଗେ ସଙ୍ଗେ ଏଇ ଶିଳ୍ପଦ୍ୱାରା ଅନେକ ଗରିବ ଏବଂ ଅକର୍ମୀ ବେଶ୍ ସୁନ୍ଦରରୂପେ ନିଜର ଜୀବିକାର୍ଜ୍ଜନ କରନ୍ତେ । ଏଇ ପେଟରା ତିଆରି ପାଇଁ କେବଳ ସେହି ସେହି ଉପକରଣ ( ବେତ, କଅଁପଟ ବା ବାଉଁଶ କାଠି ) ଏବଂ ଉପର ଢାଙ୍କୁଣି ପାଇଁ ଅଳ୍ପ କେତୋଟି ଲୁହା ଚଦରା ଓ ଗୁଣ ବ୍ୟତୀତ ଅନ୍ୟ କିଛି ବିଶେଷ ଜିନଷ ଦରକାର ହୁଏ ନାହିଁ । ଅତଏବ ଏଇ ଶିଳ୍ପ ଓଡ଼ିଶାର ଯେ କୌଣସି ସ୍ଥାନରେ କରାଯାଇ ପାରେ ।

**୧୦ । ତେଲ** (Oil)—ଖାଇବା, ଦେହରେ ଲଗାଇବା ଓ ଦୀପ ଜାଳିବାପାଇଁ ଯେତେ ପ୍ରକାର ତେଲ ଦରକାର ହୁଏ, ସେସବୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ତିଆର କରାଯାଇପାରେ । ରାଶି, ସୋରିଷ ଓ ନଡ଼ିଆ ତେଲ ଖାଇବା ଓ ଦେହରେ ଲଗାଇବା ପାଇଁ ବ୍ୟବହାର କରାଯାଏ । ଏଇ ତେଲର ଉପକରଣଗୁଡ଼ିକ ଓଡ଼ିଶାରେ ପ୍ରଚୁର ମିଳେ । ଦୀପ ଜାଳିବାପାଇଁ ଭୁଇଁ ଚଣା (ଚେରଚଣା), ଫୋଲଙ୍ଗ, ଗବ, ଟୋଲ ପ୍ରଭୃତି ମଞ୍ଜି ଦରକାର । ଏଗୁଡ଼ିକର ମଧ୍ୟ ଓଡ଼ିଶାରେ ଅଭାବ ନାହିଁ । ଆମ ଦେଶରେ ଯେଉଁ ତୈଳପ୍ରଦ ଫସଲ ଆଦାୟ ହୁଏ, ତହିଁରୁ ଅର୍ଦ୍ଧାଧିକ ବିଦେଶକୁ ରପ୍ତାନି ହୁଏ । ଯେଉଁ ଅର୍ଦ୍ଧକରୁ ତେଲ ଆଦାୟ ହୁଏ, ତାହା ସମୁଦାୟ ଓଡ଼ିଶାବାସୀଙ୍କ ପାଇଁ ନିଅଣ୍ଟ ହୁଏ । ଅତଏବ, ଆମ ଦେଶର ବେପାରୀମାନେ ହଜାର ହଜାର ଟଙ୍କାର ତେଲ ମାନ୍ଦ୍ରାଜ ଓ ବଙ୍ଗ ଦେଶରୁ ଆମଦାନୀ କରି ଅଧିକ ମୂଲ୍ୟରେ ଆମ୍ଭମାନଙ୍କୁ ବିକି କରନ୍ତି । ଏହା ବାଦ, ଆମ ଦେଶର ଶିକ୍ଷିତ ବାବୁମାନେ ଦେହ ଓ ମୁଣ୍ଡରେ ଲଗାଇବା ପାଇଁ ପ୍ରତିବର୍ଷ ହଜାର ହଜାର ଟଙ୍କାର 'ସୁବାସିତ' ତେଲ ବିଦେଶରୁ ଆମଦାନୀ କରନ୍ତି । ତଦ୍ଦ୍ୱାରା ଆମ ଦେଶର ଜାତୀୟ ଶିଳ୍ପ ନଷ୍ଟ ହୁଏ ଏବଂ ଆମର ଧନ ବିଦେଶକୁ ଯାଏ । ଚେଷ୍ଟା କଲେ ଆମ ଦେଶରେ ନାନାପ୍ରକାର ସୁବାସିତ ତେଲ ତିଆର କରାଯାଇ ପାରିବ ଓ ଏଇ ଶିଳ୍ପଦ୍ୱାରା ଅନେକ ଅକର୍ମୀ କାର୍ଯ୍ୟ ପାଇ ସୁଖରେ କାଳ ଯାପନ କରିପାରନ୍ତି ।

ଅଜିକାଲି ଅନେକ ପ୍ରକାର ତେଲରୁ ଭଲ ସାବୁନ୍ (Soap) ତିଆରି କରାଯାଏ। ଆମ ଦେଶର ନିମ୍ବ, କରଞ୍ଜ ଓ ନଡ଼ିଆ ତେଲ ଏହି ଶିଳ୍ପ ପାଇଁ ବିଶେଷ ଦରକାରି ହୋଇ-ପାରେ। ଏ ଦିଗରେ ବିଶେଷ ଅନୁସନ୍ଧାନ କରି ଏହି ଶିଳ୍ପ ପାଇଁ କେତୋଟି ଅନୁଷ୍ଠାନ ସ୍ଥାପନ କରିବାକୁ ହେବ।

ଅତି ପ୍ରାଚୀନ କାଳରୁ ଓଡ଼ିଶା ଇଂରାଜମାନଙ୍କ ଅଧିକାରଭୁକ୍ତ ହେବାଯାଏ, ଆମ ଦେଶବାସୀ କେବଳ ଯୋଲଙ୍ଗ, ଗବ, ଭାଲିଆ (ଲଙ୍କାମୃଣ୍ଡି) ଓ କରଞ୍ଜ ପ୍ରଭୃତି ତେଲରେ ଦୀପ ଜାଳୁଥିଲେ। କେବଳ ଇଂରାଜ ଆଗମନ ପରେ ୟୁରୋପ ଓ ଆମେରିକା ଦେଶରୁ ଲଣ୍ଠନ ପ୍ରଭୃତି ଏ ଦେଶକୁ ଆମଦାନୀ କରାହେବା ସଙ୍ଗେ ସଙ୍ଗେ ଦେଶବାସୀ—କି ଶିକ୍ଷିତ କି ଅଶିକ୍ଷିତ ଏବଂ କି ସହର କି ମଫସଲ—ପ୍ରାଚୀନ ରୀତିରେ ଦୀପ ଜାଳିବା ଛାଡ଼ିଦେଇ ଅଧୁନିକ ଯୁଗର ଲଣ୍ଠନ ଓ କିରାସିନି ବ୍ୟବହାର କଲେ। ତଦ୍ଦ୍ୱାରା ସେମାନଙ୍କର ସୁଖ ଓ ସୁବିଧା ବୃଦ୍ଧି ହେଲା ସତ; କିନ୍ତୁ ଦେଶରୁ ଗୋଟିଏ ପ୍ରଧାନ ଜାତୀୟ ଶିଳ୍ପ ଯେ ଏକାବେଳେ ଲୋପ ପାଇଲା, ଏ କଥା ଅନେକ ଲୋକ ସ୍ପଷ୍ଟ ଜାଣି ସୁଦ୍ଧା ତହିଁର ପ୍ରତିକାର କରିବା ପାଇଁ ଚେଷ୍ଟା କରି ନାହାନ୍ତି। ଅବଶ୍ୟ, ଆଜିକାଲି ସେହି ପ୍ରାଚୀନ ରୀତିରେ ଦୀପ ଜାଳିବା ତେତେ ସୁନ୍ଦର ବା ପସନ୍ଦ ଦେଖାଯିବ ନାହିଁ; କିନ୍ତୁ ଦେଶରେ ଜାତୀୟ ଶିଳ୍ପର ପୁନରୁଦ୍ଧାର କରିବା ନିମନ୍ତେ ସେହି ରୀତିର ସାମାନ୍ୟ ପରିବର୍ତ୍ତନ କରି କୌଣସି ପ୍ରକାର ବିଦେଶୀ ଦ୍ରବ୍ୟ ବ୍ୟବହାର କରିବା ବଦଳରେ ଆମ ଦେଶରେ ପ୍ରସ୍ତୁତ ତେଲକୁ ବ୍ୟବହାର କରିବା ପାଇଁ ଚେଷ୍ଟା କରିବାକୁ ହେବ। ତଦ୍ଦ୍ୱାରା ଅନେକ ଅକର୍ମା ଏହି ବ୍ୟବସାୟ କରି ଜୀବିକାର୍ଜ୍ଜନ କରିପାରନ୍ତି। କେତେକ ଶିକ୍ଷିତ 'ବାବୁ' ଏପରି କାର୍ଯ୍ୟକୁ ନାପସନ୍ଦ କରିପାରନ୍ତି କିମ୍ବା ଏଗୁଡ଼ିକୁ 'ମରହଟ୍ଟି' ବା 'କୁସଂସ୍କାର' ବୋଲି କହିପାରନ୍ତି; ତଥାପି ଦେଶର ଗୋଟିଏ ଆଦର୍ଶ ଜାତୀୟ ଶିଳ୍ପକୁ ବଞ୍ଚାଇ ରଖିବା ନିମନ୍ତେ ଅମ୍ଭମାନଙ୍କୁ ଏହି ଶିଳ୍ପ କରିବାକୁ ହେବ।

**୧୧। "ଦରଜୀ" ବା ସିଲେଇ କାମ (Tailoring)**—ଦେଶରେ ନବ୍ୟ ଧରଣର ଶିକ୍ଷା ଓ ସଭ୍ୟତା ଦିନ୍ ଦିନ ଯେତେ ବଢ଼ୁଛି, ଠିକ୍ ସେହି ଅନୁପାତରେ ଆମ ଦେଶର ଲୋକମାନେ—କି ଶିକ୍ଷିତ, କି ଅଶିକ୍ଷିତ—ବିଭିନ୍ନ ପ୍ରକାର ପୋଷାକ ଓ ପରିଚ୍ଛଦ ବ୍ୟବହାର କରନ୍ତି। ପୂର୍ବେ ଯେଉଁମାନେ ଗୋଟିଏ ଧୋତି ଓ ଖଣ୍ଡିଏ ଗୁଡ଼ିଦର ବ୍ୟବହାର କରି ଜୀବନ କଟାଉଥିଲେ, ଆଜି ସେମାନଙ୍କର ବଂଶଧରମାନେ କୋଟ, କାମିଜ ଓ ଗେଞ୍ଜି ଠାରୁ ଆରମ୍ଭ କରି ପେଣ୍ଟ, ହାଫ୍ ପେଣ୍ଟ, ମୋଜା ପ୍ରଭୃତି ସାହେବୀ ପୋଷାକ ମଧ୍ୟ

ବ୍ୟବହାର କଲେ । ଅବଶ୍ୟ ଯେଉଁମାନେ ଉଚ୍ଚଶିକ୍ଷା ପାଇ ସରକାରଙ୍କ ଉଚ୍ଚ ପାହ୍ୟାରେ ଚାକିରି କରନ୍ତି, ସେମାନେ ଏପରି "ସାହେବୀ" ପୋଷାକ ବ୍ୟବହାର କଲେ ସେମାନଙ୍କୁ ସୁନ୍ଦର ଦିଶେ; କିନ୍ତୁ ଯେଉଁମାନେ ନିତାନ୍ତ ମଫସଲରେ ରହି ଜୀବନ କଟାନ୍ତି କିମ୍ବା କୌଣସି କାର୍ଯ୍ୟ ନ କରି କେବଳ ପୂର୍ବପୁରୁଷଙ୍କ ଗଚ୍ଛିତ ଧନର ଅସଦ୍‌ବ୍ୟବହାର କରି ବଞ୍ଚନ୍ତି, ସେମାନେ ମଧ୍ୟ ଏପରି ପୋଷାକ ସ୍ୱଚ୍ଛନ୍ଦ ବ୍ୟବହାର କରିବା ଦ୍ୱାରା ଦେଶରେ ଏଇ ନୂଆ ପୋଷାକପତ୍ରର 'କଲାସ' ଦିନକୁ ଦିନ ବୃଦ୍ଧି ଲଭୁ କରୁଛି । ଏପରି ସ୍ଥଳେ ଦେଶର ଅନେକ ଲୋକଙ୍କୁ ସିପୋହି ବା ଦରଜୀ କାମ ଶିକ୍ଷା କରିବାକୁ ହେବ । ଏଇ ଶିକ୍ଷା ବା 'ଶିଳ୍ପ' ଶିକ୍ଷା କରିବାପାଇଁ କୌଣସି ପ୍ରକାର ସ୍କୁଲ୍ କଲେଜ ଶିକ୍ଷା ଦରକାର ନାହିଁ । କିନ୍ତୁ କୋଟ, କାମିଜ ପାଇଁ କପଡ଼ କିପରି କାଟିବାକୁ ହେବ ଓ କି ପ୍ରଣାଳୀରେ ସିଲାଇ କଲେ ସେଗୁଡ଼ିକ ସୁନ୍ଦର ଦିଶିବ, ଇତ୍ୟାଦି ବିଷୟ ଶିକ୍ଷା ନ କଲେ କୌଣସି ଲୋକ 'ଆଦର୍ଶ ଦରଜୀ' ହୋଇ ପାରିବେ ନାହିଁ । ଅତଏବ ଏଇ ଶିଳ୍ପ ଶିକ୍ଷା ଦେବା ପାଇଁ ଦେଶର ବିଭିନ୍ନ ସ୍ଥାନରେ କେତୋଟି 'ଦରଜୀ ସ୍କୁଲ୍' ( Tailoring School ) ଖୋଲିବାକୁ ହେବ । *

ଆମ ଦେଶରେ ଉପଯୁକ୍ତ ଦରଜୀ ଅଭାବରୁ ଏଠା ରାଜା, ମହାରାଜା, ଧନୀ ଓ ଉଚ୍ଚଶିକ୍ଷିତ ବାବୁମାନେ କେବଳ କଲିକତା, କାନପୁର ଓ ମାନ୍ଦ୍ରାଜର ସାହେବୀ ଦୋକାନରୁ କିମ୍ବା ଅନ୍ୟାନ୍ୟ ଦରଜୀମାନଙ୍କ ଠାରୁ ନିଜର ପୋଷାକପତ୍ର ମଗାନ୍ତି । ଉପଯୁକ୍ତ ଦରଜୀ ଥିଲେ ଆମ ଦେଶରେ ଏଇ ପୋଷାକଗୁଡ଼ିକ ତିଆରି ହୋଇପାରନ୍ତା ଏବଂ ଏଇ ଶିଳ୍ପ ଦ୍ୱାରା ଅନେକ ଲୋକ ଧନୋପାର୍ଜନ କରନ୍ତେ ।

କୋଟ, କାମିଜ ଓ ଗେଞ୍ଜି ବ୍ୟତୀତ ଆମ ଦେଶରେ ଅସଂଖ୍ୟ ତକିଆ, ଖୋଳ-ଖୋଳ, ହାତକନା (Handkerchief), ପଙ୍ଖା, ଛତି, ତମ୍ବୁ ଓ ଗୁଡ଼ିଆ ପ୍ରଭୃତି ଦରକାର ହୁଏ । କେବଳ ଏଇ ସୂଚିକାର୍ଯ୍ୟ ପାଇଁ ପୁରୀ ଜିଲ୍ଲାର "ପିପ୍ପିଲି" ଗ୍ରାମ ଅତି ପ୍ରାଚୀନ କାଳରୁ ଓଡ଼ିଶାରେ ପ୍ରସିଦ୍ଧି ଲଭୁ କରିଥିଲା । ଆଜିସୁଦ୍ଧା ଏଠାର ଅନେକ ସିପୋହି ବା ଦରଜୀ ଏଇ ଶିଳ୍ପ ଦ୍ୱାରା ବଞ୍ଚନ୍ତି ।

ଓଡ଼ିଶାର ଅନେକ ଗରିବ ଓ ମଧ୍ୟବିତ୍ତ ଲୋକମାନେ 'ଗନ୍ଥା' ବା 'କନ୍ଥା' ବ୍ୟବହାର କରନ୍ତି । ଏଇ କନ୍ଥା ଛିଣ୍ଡାକନା ଓ ଶଗ ଲଗାଇ ତିଆରି ହୁଏ । ଅନେକଗୁଡ଼ିଏ

* ଦରଜୀ କାମ ଓ ଅନ୍ୟାନ୍ୟ ଶିଳ୍ପ କାର୍ଯ୍ୟ ଶିକ୍ଷା ଦେବାପାଇଁ ପୋଡ଼ଶକଲାର "ଦେବରାଜ ଟେଲରିଂ" ସ୍କୁଲ କର୍ତ୍ତୃପକ୍ଷ ଯେଉଁ ଆଦର୍ଶ ଦେଇଛନ୍ତି, ତାହା ଉତ୍କଳୀୟ ଯୁବକମାନଙ୍କର ଅନୁକରଣୀୟ ।

ଲୁଗା ଏକକ ବିଛାଇ ଦେଇ ତାହାର ଉପରେ ଓ ତଳେ ଦୁଇ ଖଣ୍ଡ ଭଲ ଲୁଗା ପକାଇ ସୂତାରେ ସିଲେଇ କରନ୍ତି । ଖଣ୍ଡିଏ ଗନ୍ଥା ପ୍ରାୟ ୨୦।୨୫ ଖଣ୍ଡ ଅତି ଲମ୍ବ ସୂତାରେ ସିଲେଇ ହୁଏ । ଏପରି ସିଲେଇ ହେବା ଗନ୍ଥା ବିଛଣା କରି ଶୋଇବା ପାଇଁ ଏବଂ ଶୀତ ଦିନରେ ଘୋଡ଼ାଇ ହୋଇ ଶୋଇବା ପାଇଁ ବ୍ୟବହାର କରାଯାଇ ପାରେ । ଏଗୁଡ଼ିକ ଅତି ମଜବୁତ ବନ୍ଧେ ଓ ୮ । ୧୦ ବର୍ଷ ଯାଏ ବ୍ୟବହାର କରାଯାଇ ପାରେ । ଗଞ୍ଜାମରେ କେଳା ବା ସବାଖିଆ କେଳା ଓ 'ଜଙ୍ଗମ୍'ମାନେ ଏଇ ଶିଳ୍ପକାର୍ଯ୍ୟ ଅତି ସୁନ୍ଦରରୂପେ କରନ୍ତି ।

ଆମ ଦେଶରେ ପ୍ରତି ବର୍ଷ ହଜାର ହଜାର ଟଙ୍କାର ଛିଣ୍ଡା ଚିରା ଓ ଶସ୍ତା ଲୁଗା ବା ଗାମୁଛା ପ୍ରଭୃତିର କୌଣସି ସଦ୍‌ବ୍ୟବହାର ନ ହୋଇ ଫୋପଡ଼ା ଯାଏ । ଏଇ ଚିରା-ଗୁଡ଼ିକୁ ସଂଗ୍ରହ କରି ପ୍ରତି ଗ୍ରାମରେ ବା ପ୍ରତି ସହରରେ ଥିବା ଅକର୍ମୀମାନଙ୍କ ଦ୍ୱାରା ଗନ୍ଥା ସିଆଁଇଲେ ଏଇ ଶିଳ୍ପ ଦ୍ୱାରା କେତେକ ଅକର୍ମୀ ନିଜର 'ଅନ୍ନକଷ୍ଟ' ଦୂର କରିପାରନ୍ତି ।

ଗନ୍ଥା ବ୍ୟତୀତ ଗୁର, କପା ଓ ଅରଖ ପ୍ରଭୃତିର ତୂଳା ଏବଂ ନଡ଼ିଆ କତା ଓ ପାଁଳ ପ୍ରଭୃତି ଦେଇ ତକିଆ, ଶେଯ ବା ଗଦି ପ୍ରଭୃତି ମଧ୍ୟ ସିଲାଇ କରା ଯାଇପାରେ । କଲିକତା ଓ ମାନ୍ଦ୍ରାଜ ପ୍ରଭୃତି ସହରରେ ଯେଉଁ ଅତି ଷ୍ଟୋଭ ଷ୍ଟୋଭ ଚେୟାର ବା ଷ୍ଟୋଭ ଶେଯ ତିଆରି ହୁଏ, ସେଗୁଡ଼ିକୁ କିଣି ଆମ ଦେଶର ଅନେକ ଶିକ୍ଷିତ ବାବୁ ଓ ଧନୀ ବିଶେଷ ଖର୍ଚ୍ଚାନ୍ତ ହୁଅନ୍ତି । ଦେଶରେ ଶିକ୍ଷିତ ଓ ଅଶିକ୍ଷିତମାନଙ୍କ ଦ୍ୱାରା ପ୍ରତିଦିନ ବ୍ୟବହାର କରାଯାଉଥିବା ନାନା ପ୍ରକାର ପୋଷାକପତ୍ର ଓ ଶେଯ, ତକିଆ ପ୍ରଭୃତି ଏଇ ଶିଳ୍ପ ଦ୍ୱାରା ପ୍ରସ୍ତୁତ କରାଯାଇ ପାରେ ।

**୧୨ । ବହିବନ୍ଧା**(Book-Binding)—ପ୍ରତି ବର୍ଷ ଓଡ଼ିଶାରେ ହଜାର ହଜାର ନୂତନ ପୁସ୍ତକ ଛପା ହୁଏ; କିନ୍ତୁ ଏପର୍ଯ୍ୟନ୍ତ କୌଣସି ଗୋଟିଏ ପୁସ୍ତକର ମଲାଟ (Cover) କେବଳ ଓଡ଼ିଆମାନଙ୍କ ଚେଷ୍ଟାରୁ ସୁନ୍ଦରରୂପେ ବନ୍ଧା ଯାଇ ନାହିଁ । ଉପଯୁକ୍ତ ପୁସ୍ତକ ବନ୍ଧେଇ ପାଇଁ ଓଡ଼ିଶାରେ ଯଥେଷ୍ଟ ସୁବିଧା ଓ ଉପାଦାନମାନ ଅଛି । ଆଜିକାଲି ଓଡ଼ିଶାର (ବିଶେଷତଃ କଟକର) ଛାପା ଯନ୍ତ୍ର (Printing Press) ଗୁଡ଼ିକ ବୈଦ୍ୟୁତିକ ଯନ୍ତ୍ର ସାହାଯ୍ୟରେ (By Electricity) କାର୍ଯ୍ୟ କରୁଥିବାରୁ ଓଡ଼ିଶାରେ ମଲାଟ ବାନ୍ଧିବା ଭଳି ଉପଯୁକ୍ତ ଲୋକ ଥିଲେ ଆହୁରି ଅଧିକସଂଖ୍ୟକ ଓ ଅତି ସୁନ୍ଦର ପୁସ୍ତକମାନ ତିଆରି ହୋଇପାରନ୍ତା । କିନ୍ତୁ ସେହି ଅଭାବରୁ ଅନେକ ପୁସ୍ତକର ମଲାଟ ସାଦା କାଗଜରେ ତିଆରି ହୁଏ କିମ୍ବା ଯେଉଁମାନେ ଇଚ୍ଛା କରନ୍ତି, ସେମାନଙ୍କର ପୁସ୍ତକଗୁଡ଼ିକୁ କଲିକତା ବା ମାନ୍ଦ୍ରାଜ ପଠାଇ ସେଠାରେ ଅଧିକ ମୂଲ୍ୟ ଦେଇ 'ବନ୍ଧାଇ' କରନ୍ତି ।

ବହି ବନ୍ଧା ଶିକ୍ଷା କରିବାପାଇଁ ବିଶେଷ ଜ୍ଞାନ କିମ୍ବା ବୁଦ୍ଧି ବିଦ୍ୟା ଦରକାର ନାହିଁ । ଯେ କୌଣସି ଅଶିକ୍ଷିତ ଲୋକ ମଧ୍ୟ ଏହି ଶିଳ୍ପ ଶିକ୍ଷା କରିପାରେ । କେବଳ ସାମାନ୍ୟ ଚେଷ୍ଟା ଓ କୌଶଳ ଜାଣିଥିଲେ ହେଲା । ଦେଶରେ ଦିନୁ ଦିନ ଛପା ପୁସ୍ତକର ସଂଖ୍ୟା ଯେପରି ବଢୁଛି, ଏପରି ଅବସ୍ଥାରେ ଆମ ଦେଶର କି ଶିକ୍ଷିତ କି ଅଶିକ୍ଷିତ ସବୁ ଅକର୍ମୀମାନେ ଏହି କାର୍ଯ୍ୟ ଶିକ୍ଷା କରି ସୁବିଧାରେ ଜୀବନ କଟାଇପାରନ୍ତି ।

**୧୩ । ଖାତା ଓ ଫର୍ଦ୍ଦ ତିଆରି**—ସ୍କୁଲ କଲେଜର ଛାତ୍ରମାନଙ୍କ ପାଇଁ ଏବଂ କଚେରି ବା ଅନ୍ୟାନ୍ୟ ସରକାରୀ ଅଫିସଗୁଡ଼ିକ ପାଇଁ ଯେଉଁ କାଗଜ ଖାତା (Note Books and Registers) ଦରକାର ହୁଏ, ସେଗୁଡ଼ିକ ଆମ ଦେଶରେ ତିଆରି କରାଯାଇ ପାରେ । ମାତ୍ର ଆଜିକାଲି ଆମ ଦେଶର ଛାତ୍ରମାନଙ୍କ ଠାରେ ଓ ଅଫିସ-ଗୁଡ଼ିକରେ ଯେଉଁ ଖାତାପତ୍ର ଦେଖାଯାଏ, ସେସବୁ କେବଳ କଲିକତା ବା ମାନ୍ଦ୍ରାଜରେ ତିଆରି ହୋଇ ଆସେ । କେବଳ 'ଗାର୍‌ଟଣା ଖାତା' (Ruled Exercise Books) ବ୍ୟତୀତ ଅନ୍ୟାନ୍ୟ ସମସ୍ତ ପ୍ରକାର ଖାତା ସେ° ଦେଶର ସାଧାରଣ ଲୋକମାନେ ତିଆରି କରନ୍ତି । ଏଗୁଡ଼ିକ ତିଆରି କରିବା ପାଇଁ ବିଶେଷ ବୁଦ୍ଧି ବିଦ୍ୟା ଦରକାର ନାହିଁ । ନିତାନ୍ତ ଅଶିକ୍ଷିତ ଲୋକ ମଧ୍ୟ ଏଗୁଡ଼ିକୁ ତିଆରି କରିପାରେ । ଏହି ଶିଳ୍ପ ଦ୍ୱାରା ଆମ ଦେଶର ଅସଂଖ୍ୟ ଅକର୍ମା କାର୍ଯ୍ୟ ପାଆନ୍ତେ ।

ଏପର୍ଯ୍ୟନ୍ତ ଓଡ଼ିଶାର କୌଣସି ସ୍କୁଲରେ ସମବାୟ ଚେଷ୍ଟାଦ୍ୱାରା ଏହି କାର୍ଯ୍ୟ (ଖାତାପତ୍ରବନ୍ଧା) ହୋଇ ନାହିଁ କିମ୍ବା ସେ ଦିଗରେ ଆମ ଦେଶର ସ୍କୁଲଶିକ୍ଷକ ବା କର୍ତ୍ତୃପକ୍ଷଗଣ ଚେଷ୍ଟା କରି ନାହାନ୍ତି । ଅଳ୍ପ କେତେକ ବର୍ଷ ତଳେ କଟକର ରେଭେନ୍ସା-କଲେଜରେ ଗୋଟିଏ "ଛାତ୍ରଶିଳ୍ପସଙ୍ଘ" (Students' Labour Association) ଥିଲା । ଏହି ସଙ୍ଘଦ୍ୱାରା (କେବଳ କଲେଜ ଛାତ୍ରମାନଙ୍କ ଯତ୍ନରେ) ସ୍କୁଲଛାତ୍ର ତଥା କଲେଜ ଛାତ୍ରମାନଙ୍କ ପାଇଁ ଦରକାର ଯାବନ୍ତ ଖାତାପତ୍ର ତିଆରି ହେଉଥିଲା ଏବଂ ଯେଉଁ ଛାତ୍ରମାନେ ଏହି ଶିଳ୍ପ କରୁଥିଲେ, ସେମାନେ ସ୍ୱ ସ୍ୱ ପରିଶ୍ରମ ଅନୁଯାୟୀ ମାସିକ କିଛି ପଇସା ମଧ୍ୟ ପାଉଥିଲେ । ଶିଳ୍ପୀ-ମାନେ ନିଜର ଲାଭ ପାଇବା ସଙ୍ଗେ ସଙ୍ଗେ ଦେଶର ଅନ୍ୟାନ୍ୟ ଛାତ୍ରମାନେ ନିଜ ଦେଶରେ ତିଆରିହେବା 'ସ୍ୱଦେଶୀ' ଜିନିଷଗୁଡ଼ିକ ପାଉଥିଲେ । କିନ୍ତୁ ଶୁଣାଯାଏ, ଉପଯୁକ୍ତ ପରିଚାଳନା ଅଭାବରୁ ଏହି 'ସଙ୍ଘ' ଏକାବେଳେ ବନ୍ଦ ରହିଛି । ତଥାପି ଆଶା କରାଯାଏ, ଓଡ଼ିଶାର ବିଭିନ୍ନ ସ୍କୁଲରେ ଏପରି ସଙ୍ଘ ସ୍ଥାପିତ ହୋଇ ଛାତ୍ରମାନଙ୍କର ଫୁରସତ ସମୟରେ ଏବଂ ଛୁଟିଦିନରେ ଏହି ଶିଳ୍ପ କରାଇବାର ଯୋଗାଡ଼ ହେବ । ତଦ୍ଦ୍ୱାରା ଅନେକ ଗରିବ ଛାତ୍ର ନିଜ ନିଜ ସମୟର

ସଦ୍‌ବ୍ୟବହାର କରି ଦି ପଇସା ରୋଜଗାର କରିବେ । ଛୁଟି ସମୟରେ ଯେଉଁ ଛାତ୍ରମାନେ ତାସ୍, ପଶା ପ୍ରଭୃତି ଖେଳି ସମୟ ନଷ୍ଟ କରନ୍ତି କିମ୍ବା ଶୋଇ ଶୋଇ ଅଳସୁଆ ହୁଅନ୍ତି ସେମାନେ ମଧ୍ୟ ଏହି ଶିଳ୍ପକାର୍ଯ୍ୟ କରି ଲାଭବାନ୍ ହୁଅନ୍ତେ—ନିଜେ ଲାଭବାନ୍ ହେବା ସଙ୍ଗେ ସଙ୍ଗେ ଦେଶରେ ଗୋଟିଏ ଶିଳ୍ପକୁ ସଜୀବ ରଖନ୍ତେ ।

ଖାତାପତ୍ର ଏବଂ "ପୁଳିନ୍ଦା" (Envelopes) ତିଆରି ମଧ୍ୟ ଆମ ଦେଶରେ କରାଯାଇ ପାରେ । ଆମ ଦେଶର ଜିଲ୍ଲାବୋର୍ଡ୍, ଲୋକାଲ୍‌ବୋର୍ଡ୍, ମ୍ୟୁନିସିପାଲିଟି ଓ ସ୍କୁଲ୍ କଲେଜ ପାଇଁ ପ୍ରତିବର୍ଷ ହଜାର ହଜାର ଟଙ୍କାର କାଗଜ ପୁଳିନ୍ଦା ଦରକାର ହୁଏ । ଓଡ଼ିଶାରେ କୌଣସି ଗୋଟିଏ କମ୍ପାନୀ, ଅନୁଷ୍ଠାନ ବା ଲୋକ କେବଳ ଏହି ବ୍ୟବସାୟ କରି ଲାଭବାନ୍ ହେବା ପାଇଁ ଚେଷ୍ଟା କରି ନାହାଁନ୍ତି । ଏଣୁ ଆମ ଦେଶର ବୋର୍ଡ୍, ସ୍କୁଲ୍ ଓ ଅଫିସ କର୍ତ୍ତୃପକ୍ଷ ମାନ୍ଦ୍ରାଜ, କଲିକତା, ପାଟଣା, ଗୟା ପ୍ରଭୃତି ସ୍ଥାନରେ ସେମାନଙ୍କର ପୁଳିନ୍ଦା ତିଆରି କରି ଆଣନ୍ତି । ତଦ୍ଦ୍ୱାରା ସେମାନେ ବିଦେଶୀ ବ୍ୟବସାୟୀଙ୍କୁ ପ୍ରଚୁର ଧନ ଦେବା ସଙ୍ଗେ ସଙ୍ଗେ ଆମ ଦେଶର ଏହି ଶିଳ୍ପକୁ ଏକାବେଳେ ପାସୋରି ଦେଇଛନ୍ତି ।

ପୁଳିନ୍ଦା କରିବା ପାଇଁ ମଧ୍ୟ ବିଶେଷ ଜ୍ଞାନ ଦରକାର ନାହିଁ । ନିତାନ୍ତ ଅଶିକ୍ଷିତ ଲୋକ ମଧ୍ୟ ଏହି କାର୍ଯ୍ୟ ଅକ୍ଳେଶରେ କରିପାରେ । ସ୍କୁଲ୍ କଲେଜର ଗରିବ ଛାତ୍ରମାନେ ନିଜର ଫୁରସତ୍ ସମୟରେ କିମ୍ବା ଛୁଟି ସମୟରେ ଅଯଥା ସମୟ ନଷ୍ଟ କରିବା ଅପେକ୍ଷା ଏହି ଶିଳ୍ପ କରି କିଛି ରୋଜଗାର କରିପାରନ୍ତି । ଛାତ୍ର ବ୍ୟତୀତ ଶିକ୍ଷିତ ବା ଅଶିକ୍ଷିତ ଅକର୍ମୀମାନେ ମଧ୍ୟ ଏହି ଶିଳ୍ପ ଦ୍ୱାରା ବେଶ୍ ଉନ୍ନତି କରିପାରନ୍ତି ।

**୧୪ । ବିଭିନ୍ନ ପ୍ରକାର ମାଟିକାମ** (Pottery)—ଆଦର୍ଶ ଡ୍ରଇଂ (Model Drawing) ବିଷୟ ପୂର୍ବେ କୁହାଯାଇଛି । ଯାହା ବାଦ ଭଲ ଚିକଣ, ବଙ୍ଗ ବା ଚିକ୍କଣ ମାଟିରେ ଅନେକ ପ୍ରକାର ଶିଳ୍ପକାର୍ଯ୍ୟମାନ କରାଯାଇ ପାରେ । ଆମ ଦେଶର 'କୁମ୍ଭାର'ମାନେ ଯେଉଁ ହାଣ୍ଡି, ବଡ଼ା, ସରା, ଢେଲଣି ପ୍ରଭୃତି କରନ୍ତି, ସେଗୁଡ଼ିକ ଆଦିମକାଳରୁ ଗୋଟିଏ ଛାଞ୍ଚରେ ଗଢ଼ାହୁଏ । ଦେଶରେ ଏତେ ଜ୍ଞାନପ୍ରଚାର ହେବା ସତ୍ତ୍ୱେ ଏ ଦେଶର କୁମ୍ଭାର-ମାନେ ନିଜ ବ୍ୟବସାୟ ବା 'ଶିଳ୍ପ'ର ବିଶେଷ କିଛି ଉନ୍ନତି କରି ପାରି ନାହାନ୍ତି । ଏହି କେତେ ବର୍ଷ ହେଲା କଲିକତା, ମାନ୍ଦ୍ରାଜ ଓ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ସରକାରଙ୍କ ତତ୍ତ୍ୱାବଧାନରେ ଯେଉଁ ମାଟିକାମମାନ ହୁଏ, ସେଗୁଡ଼ିକୁ ଦେଖିଲେ ଆମ ଓଡ଼ିଶାର ମାଟିଶିଳ୍ପୀ-ମାନେ ଯେ ବହୁ ପଛରେ ପଡ଼ିଛନ୍ତି ବୋଲି କୁହାଯିବ, ସନ୍ଦେହ ନାହିଁ । ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀ ବା ତା ପୂର୍ବ କେତେକ ବର୍ଷ ଆଗରୁ ଆମ ଦେଶରେ ଭଲ ଇଟା (Bricks)

ତିଆର ହେଉଥିଲା । ଓଡ଼ିଶାର ଅତି ପ୍ରାଚୀନ କୀର୍ତ୍ତିର ଭଗ୍ନାବଶେଷଗୁଡ଼ିକୁ (ବିଶେଷତଃ ପୁରୀ-ଜିଲ୍ଲାର କାକଟପୁର ଅଞ୍ଚଳରେ ଥିବା ହଜାର ହଜାର ଅତି ବଡ଼ ବାନ୍ଧ ବା କୂଅ, ପ୍ରାଚୀନ ମନ୍ଦିର ଓ ପ୍ରାଚୀନ ଗଡ଼ ପ୍ରଭୃତି) ଦେଖିଲେ ସେ ଯୁଗରେ ଓଡ଼ିଶାର ମାଟିଶିଳ୍ପୀମାନେ କି ସୁନ୍ଦର ଓ ସୁଦୃଢ଼ ଇଟାମାନ ତିଆରି କରୁଥିଲେ, ସ୍ପଷ୍ଟ ଜାଣି ହୁଏ । ଏହି ଇଟାଗୁଡ଼ିକ ଚୂଲ୍ଲୀ ଦେଇ ପୋଡ଼ା ହୋଇଥିଲା ଏବଂ ଏଗୁଡ଼ିକ ଏତେ ମଜଭୁତ ଯେ, ଦୀର୍ଘ ଦୁଇ ହଜାର ବର୍ଷ ହେଲା ଖରା ଓ ବର୍ଷା ଖାଇ ସୁଦ୍ଧା ଏଗୁଡ଼ିକର ବିଶେଷ କିଛି କ୍ଷତି ହୋଇ ନାହିଁ ।

ଇଟା ବ୍ୟତୀତ ଟିଙ୍କର, ପାଣିନଳୀ, ଫୁଲକୁଣ୍ଡ, ବିଭିନ୍ନ ପ୍ରକାର ହାଣ୍ଡି, ଅଟିକା, କଳସୀ, ସରା, 'ଗୋଲେନ୍' ( ପାଣିରଖା କୁଣ୍ଡ ) ପ୍ରଭୃତି ମଧ୍ୟ ଭଲ ମାଟିରେ ତିଆରି ହୋଇ-ପାରେ । ଆଜିକାଲି ଆମ ଦେଶର ଶିକ୍ଷିତବୃନ୍ଦ କଲିକତା ଓ ବାଙ୍ଗାଲୁର (Bangalore) ପ୍ରଭୃତି ସ୍ଥାନରୁ ବଡ଼ ଟିଙ୍କର ( Tile ) ଆଣି ଘର ଛପର କରନ୍ତି । କେତେକ ଲୋକ ବିଦେଶରୁ ( ଓଡ଼ିଶା ବାହାରୁ ) ଇଟା, ହାଣ୍ଡି ପ୍ରଭୃତି ମଧ୍ୟ ଆଣନ୍ତି । ତଦ୍ୱାରା ଏ ଦେଶରୁ ପ୍ରଚୁର ଧନ ଯେ ବିଦେଶକୁ ଯାଉଛି, ସେ କଥା ବୋଧହୁଏ ଏମାନେ ଆଦୌ ଜାଣନ୍ତି ନାହିଁ ।

ପୁରୀ ଓ ଭୁବନେଶ୍ୱର ମନ୍ଦିରରେ ଠାକୁର ଭୋଗ ତିଆରି ପାଇଁ ଯେଉଁ ଅଭଡ଼ା "କୁଡ଼ୁଆ" ହୁଏ, ସେଗୁଡ଼ିକୁ ଆମ ଦେଶର କୁମ୍ଭାରମାନେ କରନ୍ତି । ଏହି କୁଡ଼ୁଆଗୁଡ଼ିକ ଏତେ ଶକ୍ତ ଓ ସୁନ୍ଦର ଯେ, ଏପରି କୁଡ଼ୁଆ ଅନ୍ୟତ୍ର ଦେଖାଯାଏ ନାହିଁ । ସୁବିଧା ପାଇଲେ ଆମ ଦେଶର ଏହି କାରିଗରମାନେ ମାଟିର ଅନ୍ୟାନ୍ୟ ଜିନିଷ ମଧ୍ୟ ଏହିପରି ମଜଭୁତ ଓ ସୁନ୍ଦର କରି ତିଆରି କରିପାରନ୍ତି ।

ପ୍ରତିବର୍ଷ ଆମ ଦେଶକୁ ହଜାର ହଜାର ଟଙ୍କାର 'ଚୀନା କପ୍' (China-ware), ପ୍ଲେଟ୍ ଓ ଗିନା ପ୍ରଭୃତି ଆସେ ! ଏଗୁଡ଼ିକ କେବଳ ମାଟିରେ ତିଆରି । ସେ ଦେଶର କାରି-ଗରମାନେ ନିଜ ବୁଦ୍ଧି ବିଦ୍ୟା ଖର୍ଚ୍ଚ କରି ଏହି ମାଟି ଜିନିଷଗୁଡ଼ିକୁ ସୁନ୍ଦରରୂପେ ପାଲିସ କରି ଗଢ଼ନ୍ତି । ସେହି ପ୍ରଣାଳୀ ଶିକ୍ଷା କରି ଆମ ଦେଶରେ ଏହି ଶିଳ୍ପର ବହୁଳ ପ୍ରଚାର ଓ ପ୍ରସାର କରିବାକୁ ହେବ ।

**୧୪ । ରଙ୍ଗ ଶିଳ୍ପ** (Dyeing)—ଆଜିକାଲି ଦେଶରେ ବିଭିନ୍ନ ରଙ୍ଗର ଖଦଡ଼ ( ଦେଶୀ ଲୁଗା ) ଲୋକମାନେ ବ୍ୟବହାର କରନ୍ତି । ସଫା ଧଳା ଲୁଗା ଉପରେ ବିଭିନ୍ନ ପ୍ରକାର ଚିତ୍ର, ପୁଷ୍ପ, ଲତା ଓ ଅନ୍ୟାନ୍ୟ ରଙ୍ଗର ଛିଟ ପ୍ରଭୃତି ଚିତ୍ରିତ କରିବାପାଇଁ ଏହି ବିଦ୍ୟା (Art) ଶିକ୍ଷା କରିବାକୁ ହେବ । ଦେଶରେ ବିଭିନ୍ନ ରଙ୍ଗର ଲୁଗା ଯେପରି ଲୋକ-ମାନଙ୍କଦ୍ୱାରା ଅଦୃତ ହୁଏ, ଠିକ୍ ସେହିପରି ଏହି ଶିଳ୍ପର ସମୋନ୍ନତି ହେବା ଆଶା କରା-

ଯାଏ । ଏହି ଶିଳ୍ପ ବା ଆର୍ଟ୍ ଶିକ୍ଷା କରିବାପାଇଁ ବିଶେଷ କିଛି ଅସୁବିଧା ହୁଏ ନାହିଁ । କଟକ 'ସ୍ୱରାଜ୍ୟ ଆଶ୍ରମ'ରେ ଏହି ଆର୍ଟ୍ ଶିକ୍ଷା କରିବା ଅତି ସହଜ । ସତ୍ୟବାଦୀରେ ନବ ପ୍ରତିଷ୍ଠିତ "ଗୋପବନ୍ଧୁ ସେବା ସଦନ"ରେ ମଧ୍ୟ ଏହି ବିଦ୍ୟା ଶିକ୍ଷା ଦିଆଯାଏ । ଯୁବା ବ୍ୟତୀତ ଯେଉଁମାନେ ଉନ୍ନତ ଧରଣର ରଙ୍ଗ ଶିଳ୍ପ ଶିକ୍ଷା କରିବାକୁ ଚାହାନ୍ତି, ସେମାନଙ୍କ ପାଇଁ ଓଡ଼ିଶାର ବିଭିନ୍ନ କେନ୍ଦ୍ର ସ୍ଥାନରେ ଏକାଧିକ 'ରଙ୍ଗ ଶିଳ୍ପ ସ୍କୁଲ' ସ୍ଥାପନ କରିବାକୁ ହେବ । ଓଡ଼ିଶାର କେତୋଟି ଯୁବକ କଲିକତା ଓ ବୋମ୍ବେ ଯାଇ ଉନ୍ନତ ଧରଣର ରଙ୍ଗ ଶିଳ୍ପ ଶିକ୍ଷା କରିଛନ୍ତି ସତ୍ୟ; କିନ୍ତୁ ସାରା ଓଡ଼ିଶା ପ୍ରଦେଶ ପାଇଁ ଏମାନଙ୍କର ସଂଖ୍ୟା ଯଥେଷ୍ଟ ନୁହେ । ଏହି ସଂଖ୍ୟା ବୃଦ୍ଧି କରିବା ପାଇଁ ଓଡ଼ିଶାରେ ଏକାଧିକ ସ୍କୁଲ ସ୍ଥାପନ କଲେ ଏ ଦେଶର ଅନେକ ଅକର୍ମୀ ସେଠାରେ ଶିକ୍ଷା ଲାଭ କରି ଭବିଷ୍ୟତ୍ ଓଡ଼ିଶା ପ୍ରଦେଶର ଗୋଟିଏ ପ୍ରଧାନ ଅଭାବ ଦୂର କରିପାରନ୍ତି ।

**୧୬ । ସାବୁନ ତିଆରି (Soap making)**—ଆଜିକାଲି ଦେଶର ଅନେକ ଲୋକ ସାବୁନ ବ୍ୟବହାର କରନ୍ତି । ଏପରିକି, ସହରର ଗୋଟିଏ ଗୋଟିଏ ପରିବାରରେ ଆବାଲବୃଦ୍ଧବନିତା ପ୍ରତିଦିନ ସାବୁନ ଲଗାଇ ସ୍ନାନ ନ କଲେ ସୁଖ ବୋଧ କରନ୍ତି ନାହିଁ । କେବଳ ଦେହରେ ଲଗାଇବା ସାବୁନ ନୁହେ, ଲୁଗାପଟା ଧୋଇବା ପାଇଁ, କୁକୁର, ବିରାଡ଼ି ଓ ଗାଈ ଗୋରୁଙ୍କୁ ଧୋଇବା ପାଇଁ ଏବଂ ଟେବୁଲ, ବେଞ୍ଚ ଓ ଚୌକୀ ପ୍ରଭୃତି ଧୋଇବାପାଇଁ ମଧ୍ୟ କେତେକ ଲୋକ ବିଭିନ୍ନ ପ୍ରକାର ସାବୁନ ବ୍ୟବହାର କରନ୍ତି । ସରକାରୀ ରିପୋର୍ଟରୁ ଜଣାଯାଏ ଯେ, ଭାରତକୁ ପ୍ରତିବର୍ଷ ୩୫ କୋଟି ଟଙ୍କାର ସାବୁନ ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ ଓ ଆମେରିକା ପ୍ରଭୃତି ଦେଶରୁ ଆମଦାନୀ ହୁଏ । କେବଳ ଜାପାନ ଦେଶରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ସାବୁନ ଏ ଦେଶକୁ ଆସେ । ପାଠକମାନଙ୍କର ମନେ ଥିବ, ଆମ ଦେଶର ପ୍ରତ୍ୟେକ ହାଟ, ଯାତ୍ରା ଓ ମେଳାଗୁଡ଼ିକରେ ଯେଉଁ ଛୋଟ ଛୋଟ ମନୋହର ଦୋକାନ ବସେ, ସେହି ଦୋକାନରେ ମଧ୍ୟ ଜାପାନ ଓ ଜର୍ମାନ ଦେଶର ସାବୁନ ଦେଖିବାକୁ ପାଉଁ । ଏପରି ଅବସ୍ଥାରେ ଏ ଦେଶରେ ସାବୁନର ବ୍ୟବହାର ଯେ ଦିନୁ ଦିନ ବୃଦ୍ଧି ଲାଭ କରୁଛି, କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାବୁନ କେତେକ ପ୍ରକାର ତେଲ ଓ ଚର୍ବି (ବସା)ରେ ତିଆରି ହୁଏ । ଗାଈ ଗୋରୁ, ପୋଢ଼ିଅ ଓ କୁମ୍ଭୀର ପ୍ରଭୃତିର ଚର୍ବି ଆମ ଦେଶରେ ପ୍ରଚୁର ମିଳେ । ନଡ଼ିଆ, ପୋଲଙ୍ଗ, ଭୁଇଁଚଣା ପ୍ରଭୃତିର ତେଲ ମଧ୍ୟ ଅପର୍ଯ୍ୟାପ୍ତ ମିଳେ । ଏହି ଚର୍ବି ଓ ତେଲ ପ୍ରଚୁର ପରିମାଣ ସଂଗ୍ରହ କଲେ ତଦ୍ଦ୍ୱାରା ନାନା ପ୍ରକାର ସାବୁନ ତିଆରି ହୋଇପାରେ । ଓଡ଼ିଶାରେ ସାବୁନ ତିଆରି ଗୋଟିଏ ଅଭିନବ ବସ୍ତୁ । ତଥାପି, ଏ ଦିଗରେ କେତେକ ଦେଶହିତୈଷୀ

ବିଶେଷ ଚେଷ୍ଟା କରୁଛନ୍ତି । * ସମଗ୍ର ଓଡ଼ିଶାପାଇଁ ଏପରି ଗୋଟିଏ ଦୁଇଟା ଅନୁଷ୍ଠାନ ସ୍ଥାପିତ ହେଲେ ଏହି କାର୍ଯ୍ୟ ଶିକ୍ଷା କରିବାପାଇଁ ଆମ ଦେଶର ଶିକ୍ଷିତ ଅକର୍ମା ଯୁବକବୃନ୍ଦ ବାହାରିବେ, ସନ୍ଦେହ ନାହିଁ । ଦେଶରେ କି ଶିକ୍ଷିତ କି ଅଶିକ୍ଷିତ ସବୁ ଲୋକମାନଙ୍କ ମଧ୍ୟରେ ସାବୁନର ଆଦର ବଢ଼ିଥିବା ସମୟରେ, ପୁଣି ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରେ ସାବୁନ ତିଆରି ପାଇଁ ପ୍ରଚୁର ଉପାଦାନମାନ ମିଳୁଥିବା ସମୟରେ ଏହି ଶିଳ୍ପ ଯେତେ ଶୀଘ୍ର ଓଡ଼ିଶାରେ ପ୍ରବର୍ତ୍ତିତ ହୁଏ, ଦେଶବାସୀ ସେତେ ସୁବିଧା ଭୋଗ କରିବେ ।

ସାଧାରଣ ଲୁଗାଧୂଆ, ଟେବୁଲ ପ୍ରଭୃତି ଧୂଆ ସାବୁନ୍‌ଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ସୁବାସିତ ସାବୁନ୍ ଏବଂ ବିଭିନ୍ନ ପ୍ରକାର ଔଷଧଯୁକ୍ତ ( Medicated Soap ) ସାବୁନ୍ ମଧ୍ୟ ଓଡ଼ିଶାରେ ତିଆରି କରାଯାଇ ପାରେ । ଏହି ଶେଷୋକ୍ତ ସାବୁନ୍ ମଧ୍ୟରୁ "ନିମ ସାବୁନ୍" ( Neem Soap ) ପ୍ରଧାନ । ନିମମଞ୍ଜିରୁ ତେଲ କାଢ଼ି ସେହି ତେଲରେ ସାବୁନ୍ ପ୍ରସ୍ତୁତ କଲେ ତାହା ଚର୍ମରୋଗୀମାନଙ୍କ ପକ୍ଷରେ ଅତି ଉତ୍କୃଷ୍ଟ ସାବୁନ୍ ହେବ । କଲିକତାର ଏକାଧିକ ବ୍ୟବସାୟୀ ଏହି ସାବୁନ୍ ତିଆରି କରି ପ୍ରତିବର୍ଷ ଲକ୍ଷାଧିକ ଟଙ୍କା ରୋଜଗାର କରନ୍ତି ।

ଦେଶରେ ସାବୁନ୍ ଶିଳ୍ପର ପ୍ରସାର ବଢ଼ିଲେ ଅନେକ ଉଚ୍ଚଶିକ୍ଷିତ ଅକର୍ମା ଯୁବକ ଏହି ଶିଳ୍ପ ଶିକ୍ଷା କରି ଧନୋପାର୍ଜ୍ଜନ କରନ୍ତେ ।

**୧୭ । "ପଶମ ଶିଳ୍ପ"** ( Woolen Industries )— ଓଡ଼ିଶା ଗୋଟିଏ ଗ୍ରୀଷ୍ମପ୍ରଧାନ ପ୍ରଦେଶ; ତଥାପି ଏହାର ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ଜଙ୍ଗଲମୟ ଗଡ଼ଜାତ ପ୍ରଦେଶ ଥିବାରୁ ଏଠାରେ ଶୀତ ଦିନରେ ବେଶି ଶୀତ ହୁଏ । ଏହି ଶୀତରୁ ରକ୍ଷା ପାଇବା ନିମନ୍ତେ ସେପରି କୌଣସି ଉପଯୁକ୍ତ ପଶମ ପୋଷାକ ଆମ ଦେଶରେ ତିଆରି ହୁଏ ନାହିଁ । ଓଡ଼ିଶା ଓ ଗଡ଼ଜାତର ରାଜା ଓ ପ୍ରଜା ବିଦେଶରୁ ବହୁ ମୂଲ୍ୟ ଦେଇ ଶୀତ ପୋଷାକ କିଣି ଆଣନ୍ତି । ଏଠାର ଅନେକ ଲୋକ ଛେଳି ଓ ମେଣ୍ଢା ପ୍ରଭୃତି ପୋଷନ୍ତି; କିନ୍ତୁ ସେଗୁଡ଼ିକର ଲୋମ ସଂଗ୍ରହ କରି ତଦ୍ଦ୍ୱାରା ଉତ୍ତମ ଶୀତବସ୍ତ୍ର ତିଆରି କରିବା ପାଇଁ ଓଡ଼ିଶାରେ ଏପର୍ଯ୍ୟନ୍ତ କୌଣସି ଚେଷ୍ଟା କରାଯାଇ ନାହିଁ । ପଶମ ଶିଳ୍ପ କରିବା ପୂର୍ବରୁ ପ୍ରଚୁର ପରିମାଣ ଲୋମ

---

* କଟକରେ ଦେଶୀ ଉପାଦାନ ଦ୍ୱାରା ବିଭିନ୍ନ ପ୍ରକାର ସାବୁନ୍ ତିଆରି କରିବାପାଇଁ ଡାକ୍ତର ଶ୍ରୀ ବନବିହାରୀ ପଟ୍ଟନାୟକ ଏମ୍. ବି., ଡି. ପି. ଏଚ୍. ଗୋଟିଏ ଶିଳ୍ପାଗାର ଏହି କେତେ ଦିନ ହେଲା ଖୋଲିଛନ୍ତି । ଓଡ଼ିଶାର ଅକର୍ମା ଓ ଉତ୍ସାହୀ ଯୁବକବୃନ୍ଦ ଏଠାକୁ ଯାଇ ସାବୁନ୍ ତିଆରି ଶିକ୍ଷା କରିପାରନ୍ତି ।

ସଂଗ୍ରହ କରିବାକୁ ହେବ କିମ୍ବା ଅନ୍ୟାନ୍ୟ ଦେଶରୁ ପଶମ ଆଣି ଏଠାରେ ତଦ୍ଦ୍ୱାରା ବିଭିନ୍ନ ପ୍ରକାର ପୋଷାକପତ୍ର ତିଆରି କରିବାକୁ ହେବ । ତା ହେଲେ ଆମ ଦେଶର ଅନେକ ଲୋକ ଏହି ଶିଳ୍ପ ଶିକ୍ଷା କରିପାରନ୍ତି ଏବଂ ଦେଶରେ ପଶମ ଲୁଗା ପ୍ରଚୁର ମିଳିପାରେ ।

ଶୀତଲୁଗା ଏବଂ କୋଟ କାମିଜ ପାଇଁ ପଶମ ଲୁଗା ତିଆରି କରିବା ସଙ୍ଗେ ସଙ୍ଗେ ଛୋଟ ଛୋଟ ପିଲମାନଙ୍କ ପାଇଁ ବିଭିନ୍ନ ରଙ୍ଗର ଗେଞ୍ଜି, ମୁଣ୍ଡଟୋପି, ଲଙ୍ଗୁ (Half pant) ପ୍ରଭୃତି ମଧ୍ୟ କରାଯାଇ ପାରେ । ଦକ୍ଷିଣ ଭାରତର ଅନେକ ସ୍ତ୍ରୀ, ବିଶେଷତଃ ଖ୍ରୀଷ୍ଟିୟାନ୍ ସ୍ତ୍ରୀ-ମାନେ ବିଭିନ୍ନ ରଙ୍ଗର ପଶମ ସୂତାରେ ଅତି ସୁନ୍ଦର ସୂଚୀକାମ ( Embroidery )-ମାନ କରନ୍ତି । ଏହି କାମ କରିବା ପାଇଁ ସେ ଅଞ୍ଚଳର ବାଳିକା ସ୍କୁଲଗୁଡ଼ିକରେ ବିଶେଷ ବ୍ୟବସ୍ଥା ଅଛି । ଛୋଟ ବାଳିକାମାନେ ପିଲାଦିନୁ ସ୍କୁଲରେ ଯେଉଁ ସୂଚୀ କାର୍ଯ୍ୟ ଶିକ୍ଷା କରନ୍ତି, ବଡ ହେଲେ, ଗୃହିଣୀ ଅବସ୍ଥାରେ ମଧ୍ୟ, ନିଜ ଫୁରସତ୍ ସମୟରେ ଘରର ପିଲା ଓ ସ୍ତ୍ରୀ-ପୁରୁଷଙ୍କ ପାଇଁ ନାନାପ୍ରକାର ପଶମ କାର୍ଯ୍ୟମାନ କରନ୍ତି । ତାହା ତୁଳନାରେ ଆମ ଦେଶର ସ୍ତ୍ରୀମାନେ କେଉଁ ପଛରେ ଯେ ପଡ଼ିଛନ୍ତି, କହିବା ସହଜ ନୁହେ । ଆମ ଦେଶର ସ୍ତ୍ରୀମାନେ ଫୁରସତ୍ ସମୟରେ ଏକାଠି ବସି ପରଛିଦ୍ରାନ୍ୱେଷଣରେ ଦିନ କାଟନ୍ତି କିମ୍ବା ତାସ, ପଶା ପ୍ରଭୃତି ଖେଳନ୍ତି । ଏମାନଙ୍କ ସମୟର ସଦ୍‌ବ୍ୟବହାର ନିମନ୍ତେ ଓଡ଼ିଶାରେ ପଶମ ଶିଳ୍ପର ବିଶେଷ ପ୍ରଚାର କଲେ ହୁଅନ୍ତା । ତଦ୍ଦ୍ୱାରା ଦେଶରେ ଗୋଟିଏ ନୂତନ ଶିଳ୍ପର ପ୍ରସାର ବୃଦ୍ଧି ଲାଭ କରନ୍ତା ଏବଂ ଦେଶର ମା, ଝିଅ ଓ ବୋହୂମାନେ ନିଜ ନିଜ ସମୟର ସଦ୍‌ବ୍ୟବହାର କରନ୍ତେ ।

୧୮ । **ଲୌହ ଶିଳ୍ପ**—ଉନ୍ନତ ଧରଣର ଲୌହଶିଳ୍ପ ପାଇଁ ଓଡ଼ିଶାର କାରିଗରମାନେ ଅତି ପ୍ରାଚୀନ କାଳରୁ ପ୍ରସିଦ୍ଧି ଲାଭ କରିଥିଲେ । ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ପାଇଁ ଯେଉଁ ଲୁହାକଡ଼ିମାନ ବ୍ୟବହୃତ ହୋଇଥିଲା, ସେଗୁଡ଼ିକ ଆମ ଓଡ଼ିଆ କମାରମାନେ ଏହି ଦେଶରେ ତିଆରି କରିଥିଲେ । ସେ କାଳରେ ଆଜିକାଲି ପରି ବୈଦ୍ୟୁତିକ ଶକ୍ତି ଦ୍ୱାରା କିମ୍ବା ଅନ୍ୟ କୌଣସି ଯନ୍ତ୍ରପାତିଦ୍ୱାରା ଏଗୁଡ଼ିକ ତିଆରି ନ ହୋଇ କେବଳ ଆମ ଦେଶର କମାର "ଭାତି" ( Furnace ) ରେ ଏଗୁଡ଼ିକ ତିଆରି ହୋଇଥିଲା । "ଆଧୁନିକ ବଙ୍ଗୀନସ୍ମିଥର ଦେଢ଼ ହଜାର ବର୍ଷ ପୂର୍ବରେ ଉତ୍କଳର କମାର 'ଭାତି'ମାନଙ୍କରୁ ଏପରି ଆଶ୍ଚର୍ଯ୍ୟଜନକ କଡ଼ିମାନ ଯେ ପ୍ରସ୍ତୁତ ହେଉଥିଲା, ତାହାହିଁ ବଡ଼ ବିଚିତ୍ର କଥା ।" *

* ଉତ୍କଳ ଇତିହାସ—୮୪ ପୃଷ୍ଠା

ଆଧୁନିକ ଯୁଗରେ ଓଡ଼ିଶାର ଲୌହଶିଳ୍ପୀମାନେ ଏତେ ଦୁର୍ବଳ ହୋଇ ପଡ଼ିଛନ୍ତି ଯେ, ଏମାନଙ୍କଠାରୁ ସେପରି କୌଣସି ବିଶେଷ ଉନ୍ନତିର ଅଂଶ ଦେଖାଯାଏ ନାହିଁ । ଯେଉଁ ଯୁଗରେ 'ବିଜ୍ଞାନ' ( Science ) ର ବିଶେଷ ଉନ୍ନତି ହୋଇ ନ ଥିଲା, ସେ ସମୟରେ ଓଡ଼ିଶାର ଶିଳ୍ପୀମାନେ ଯେଉଁ ଲୌହଶିଳ୍ପର ପରାକାଷ୍ଠା ଦେଖାଇଥିଲେ, ଆଜି ସେମାନଙ୍କର ବଂଶଧରମାନେ ସେହି ଶିଳ୍ପର ବିନ୍ଦୁବିସର୍ଗ ଜାଣନ୍ତି ନାହିଁ । * ତଥାପି ଏ ଦିଗରେ ବିଶେଷ ଚେଷ୍ଟା କରିବାକୁ ହେବ ।

ଅବଶ୍ୟ ଆଜିକାଲି ଭୁବନେଶ୍ୱର ଓ କୋଣାର୍କ ପରି ଅତି ବଡ଼ ମନ୍ଦିର ପାଇଁ ଲୁହାକଡ଼ି ଦରକାର ନାହିଁ ସତ; କିନ୍ତୁ ଦେଶରେ ନବ୍ୟ ସଭ୍ୟତା ଯେତିକି ଦ୍ରୁତ ଗତିରେ ପ୍ରବେଶ କରୁଛି, ଠିକ୍ ସେହି ଅନୁସାରେ ବିଭିନ୍ନ ପ୍ରକାର କଳ କବଜା ପ୍ରଭୃତି ଲୋକମାନଙ୍କର ଦରକାର ପଡ଼ୁଛି । ଭାରତର ବିଭିନ୍ନ ପ୍ରଦେଶରେ ଅତି ବଡ଼ ବଡ଼ ଲୌହ କାରଖାନାମାନ ଅଛି । ଏଠାରେ ପ୍ରତିବର୍ଷ କୋଟି କୋଟି ଟଙ୍କାର କଳ କବଜା ତିଆରି ହୁଏ । ତଥାପି ପ୍ରତିବର୍ଷ ଭାରତକୁ ୪ । ୫ କୋଟି ଟଙ୍କାର କଳ କବଜା ବିଦେଶରୁ ଆମଦାନୀ ହୁଏ । ଆମ ଓଡ଼ିଶାର ଅନେକ ରାଜା ମହାରାଜା ଓ ଧନୀମାନେ କଲିକତା, ମାନ୍ଦ୍ରାଜ ଓ ବୋମ୍ବେ ପ୍ରଭୃତି ସ୍ଥାନରୁ ବିଭିନ୍ନ ପ୍ରକାର ଲୌହ ଜିନିଷ ( ଲକ୍ଷ ଲକ୍ଷ ଟଙ୍କାର ) ମଗାନ୍ତି । ଘର ତିଆରି ପାଇଁ ଲୁହା କଡ଼ି, ବରଗା, ତାର, ଚୌକାଠ ( ଲୁହାର ), ସିନ୍ଦୁକ, ତାଲା, କଣ୍ଟା, ଲୌହ ଚୌକି, ଖଟ, ଟେବୁଲ୍, ପାଣିକଳ ପ୍ରଭୃତି ଆମ ଦେଶରେ ତିଆରି ହୋଇପାରନ୍ତା । ଓଡ଼ିଶା ଗଡ଼ଜାତର ଏକାଧିକ ସ୍ଥାନରେ ଲୌହ ଖଣି ଅଛି ଓ ଏଗୁଡ଼ିକରୁ ବିଦେଶୀ ମହାଜନମାନେ ଲୌହ ଆଦାୟ କରି ବିଦେଶକୁ ରପ୍ତାନୀ କରନ୍ତି । ଆମ ଦେଶର କମାରମାନେ ନିତାନ୍ତ ଅଶିକ୍ଷିତ ଓ ଦରିଦ୍ର । ସେମାନଙ୍କ ଠାରେ ପଇସା ଥିଲେ ସେମାନେ ଏହି ଲୌହ ଖଣିରୁ ଲୌହ ଆଦାୟ କରି ବିଭିନ୍ନ ପ୍ରକାର କଳ କବଜାମାନ କରନ୍ତେ । କିନ୍ତୁ ସେମାନେ ଦରିଦ୍ର ହେବା ସଙ୍ଗେ ସଙ୍ଗେ ଆମ ଦେଶବାସୀ ଏହି 'ଦେଶୀ' ଜିନିଷଗୁଡ଼ିକୁ

---

* "Not only were the iron girders of great size, but it is noticeable that their thickness gradually increases from the ends to the centre, showing a knowledge of the properties and the strength of the material that is remarkable in a people who are now so utterly incapable of forgoing such masses."

"History of Indian and Eastern Architecture" (1891) by Fergusson. Book VI, Ch. 2. P. 428.

ଅଧିକ ପସନ୍ଦ କରୁ ନାହାନ୍ତି । ଦେଶବାସୀ ଏଠା କମାରଙ୍କ ଦ୍ୱାରା ତିଆରି ଲୌହ ଜିନିଷ-ଗୁଡ଼ିକୁ ଯଦି ବ୍ୟବହାର କରନ୍ତେ, ତା ହେଲେ ଆମ ଦେଶର କମାରମାନେ ଏତେ ଦରିଦ୍ର ବା ଅନୁନ୍ନତ ହୁଅନ୍ତେ ନାହିଁ । ଏମାନଙ୍କର ଉନ୍ନତି ହେବା ସଙ୍ଗେ ସଙ୍ଗେ ଦେଶବାସୀଙ୍କୁ କେବଳ ଦେଶୀ ଜିନିଷ ଯୋଗାଇବା ଉଦ୍ଦେଶ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଲୌହ ଶିଳ୍ପର ପ୍ରତିଷ୍ଠା କରିବାକୁ ହେବ ।

**୧୯ । କାଷ୍ଠ ଶିଳ୍ପ** ( Carpentry ) —କାଷ୍ଠ ଶିଳ୍ପ ଦିଗରେ ମଧ୍ୟ ପ୍ରାଚୀନ ଓଡ଼ିଶାର ଶିଳ୍ପୀମାନେ ପଛରେ ପଡ଼ି ନ ଥିଲେ । ଯେଉଁ ଶିଳ୍ପୀ ପ୍ରସ୍ତର ଓ ଲୌହରେ ଏତେ ସୁନ୍ଦର ଶିଳ୍ପକୃତିତ୍ୱ ଦେଖାଇଥିଲେ, ସେମାନେ କି କାଷ୍ଠ ଶିଳ୍ପରେ ବିଶେଷ ଦକ୍ଷତା ଦେଖାଇ ନ ଥିବେ ? ତେବେ ଆଜିକାଲି ସେମାନଙ୍କର ପୂର୍ବ ବିଭବ ଦେଖାଇବା ଭଳି ବିଶେଷ ପ୍ରମାଣ ଓଡ଼ିଶାରେ ଦେଖାଯାଏ ନାହିଁ । କେବଳ ଭୁବନେଶ୍ୱର ବଡ଼ ଦେଉଳ ଦ୍ୱାରରେ ଦୁଇଟି କବାଟ ଅଛି । ସେ କାଳର ବଢ଼େଇମାନଙ୍କ କାରିଗରିର ଏହା ଯଥେଷ୍ଟ ପ୍ରମାଣ ।" ✽

ଆଜିକାଲି ଓଡ଼ିଶା ଓ ଗଞ୍ଜାମର ବିଭିନ୍ନ ସ୍ଥାନରେ ବଢ଼େଇମାନେ ବେଶ୍ ସୁନ୍ଦର କାଠକାମମାନ କରନ୍ତି । ଏହି କାଠକାମ ପାଇଁ ପାରଳାଖେମୁଣ୍ଡି, ଟିକାଲି, ବ୍ରହ୍ମପୁର, କଟକ ଓ ଯାଜପୁରର ବଢ଼େଇମାନେ ଦେଶର ପ୍ରଧାନ ନେତାମାନଙ୍କ ଦ୍ୱାରା ପ୍ରଶଂସା ପାଇଥିବାର ଜଣାଯାଏ । କାଠର ବେଞ୍ଚ, ଚୌକି, ଟେବୁଲ୍, ଅଲମାରି, ପେଡ଼ି, ହାତବାକ୍ସ ପ୍ରଭୃତି ଅତି ସୁନ୍ଦରରୂପେ କରିବା ପାଇଁ ଏ ଦେଶରେ କାରିଗର ଅଛନ୍ତି ଏବଂ ଓଡ଼ିଶା ଓ ଗଡ଼ଜାତରେ ଅତି ସୁନ୍ଦର କାଠ ମଧ୍ୟ ମିଳେ । କିନ୍ତୁ ଆମ ଦେଶର ଶିକ୍ଷିତ ବାବୁ ଓ ରାଜାମାନେ ବିଦେଶୀ କମ୍ପାନୀଙ୍କ ଠାରୁ ଏହି ଉପକରଣଗୁଡ଼ିକ ମଗାଉଥିବାରୁ ଏ ଦେଶର ବଢ଼େଇମାନେ ନିଜ ବ୍ୟବସାୟ ଦ୍ୱାରା ବିଶେଷ ଲାଭବାନ୍ ହୁଅନ୍ତି ନାହିଁ । ଏଣୁ ସେମାନେ ସ୍ୱ ସ୍ୱ ବ୍ୟବସାୟ ଛାଡ଼ି କୃଷି କରନ୍ତି କିମ୍ବା ବିଦେଶକୁ ଯାଇ ସେଠାରେ କୁଲି କାମ କରନ୍ତି ।

ଆଜିକାଲି ଆମ ଦେଶର ସ୍କୁଲ ଛାତ୍ରମାନଙ୍କୁ ବିଭିନ୍ନ ପ୍ରକାର ବୈଷୟିକ ଶିକ୍ଷା ଦେବା ପାଇଁ ଦେଶର ନେତାମାନେ ଦାବୀ କରନ୍ତି । କେତେକ ସ୍କୁଲରେ ବଢ଼େଇ କାମ ( Carpentry ) ମଧ୍ୟ ଶିକ୍ଷା ଦିଆଯାଏ । ଦେଶରେ ଶିକ୍ଷା ଓ ସଭ୍ୟତାର ସ୍ରୋତ ଯେତେ ଦୂର ଅଗ୍ରସର ହେଉଥିବ, ଦେଶବାସୀ ତେତେ ଅଧିକ ପରିମାଣରେ ଉପକରଣ-

✽ "ଉତ୍କଳ ଇତିହାସ" —୮୩ ପୃଷ୍ଠା

ମାନ ( ଚୌକି, ଟେବୁଲ, ଅଲମାରି ପ୍ରଭୃତି ) ଦରକାର କରୁଥିବେ । ଏପରି ଅବସ୍ଥାରେ କୌଣସି ଦେଶହିତୈଷୀ ଅଧିକ ମୂଲ୍ୟ ଦେଇ ଓଡ଼ିଶା ବାହାରୁ ଏହି ଉପକରଣମାନ ନ ଆଣି ଆମ ଦେଶର ବିଭିନ୍ନ ସ୍ଥାନରେ କାଠ ଶିଳ୍ପର ବିଶେଷ ବ୍ୟବସ୍ଥା କଲେ ଏ ଦେଶର ବଢ଼େଇ ଓ ଅନ୍ୟାନ୍ୟ କାରିଗରମାନେ ଏହି ବ୍ୟବସାୟ ଦ୍ୱାରା ବିଶେଷ ଲାଭବାନ୍ ହେବେ, ସନ୍ଦେହ ନାହିଁ ।

୨୦ । ଚମଡ଼ା ଶିଳ୍ପ (Leather Industry)—ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଗଡ଼ଜାତରୁ ପ୍ରତିବର୍ଷ ହଜାର ହଜାର ଟଙ୍କାର 'ଚମଡ଼ା' ବିଦେଶକୁ ରପ୍ତାନୀ ହେଉଥିବା କଥା ପୂର୍ବେ କୁହାଯାଇଛି । ସୁସଭ୍ୟ ଆମେରିକା ଓ ୟୁରୋପ ଦେଶରେ ଲକ୍ଷ ଲକ୍ଷ ଲୋକ କେବଳ ଚମଡ଼ା ଶିଳ୍ପ ଦ୍ୱାରା ଜୀବିକାର୍ଜନ କରନ୍ତି । * ଓଡ଼ିଶାରୁ ଚମଡ଼ା ନେଇ ପଡ଼ୋଶୀ ବଙ୍ଗ ଓ ମାନ୍ଦ୍ରାଜ ସରକାର ସେହି ସେହି ପ୍ରଦେଶରେ ଏକାଧିକ ଚମଡ଼ା ଶିଳ୍ପାଗାରମାନ ସ୍ଥାପନ କରି ଲକ୍ଷ ଲକ୍ଷ ଟଙ୍କାର ଯୋତା, ପଟି ଓ ଅନ୍ୟାନ୍ୟ ଚମଡ଼ାର ଉପକରଣମାନ ତିଆରି କରନ୍ତି । ତଥାପି ଆମ ଦେଶରେ ଏହି ଶିଳ୍ପର ବିଶେଷ ଉନ୍ନତି ପାଇଁ କେହି ଚେଷ୍ଟା କରି ନାହାନ୍ତି । ଚମଡ଼ା ବ୍ୟବସାୟ ଗୋଟିଏ ଘୃଣ୍ୟ ବା ନିନ୍ଦନୀୟ କାର୍ଯ୍ୟ ବୋଲି ବିଶ୍ୱାସ କରି ଅନେକ ଲୋକ ଏହି ଶିଳ୍ପର ଆଦୌ ସଦ୍‌ବ୍ୟବହାର କରି ନାହାନ୍ତି । ଏହି କାରଣରୁ ଆଜି ସୁଦ୍ଧା କେବଳ 'ଚମାର' ମାନେ ଏହି ବ୍ୟବସାୟ କରନ୍ତି । କିନ୍ତୁ ସେମାନେ ନିତାନ୍ତ ଦରିଦ୍ର ଓ ଅଶିକ୍ଷିତ ଥିବାରୁ ଅଧିକ ଧନବ୍ୟୟ ନ କରି ଏହି ଶିଳ୍ପକୁ ସେହି ଆଦିମ ଅବସ୍ଥାରେ ରଖିଅଛନ୍ତି । ଏହି ଶିଳ୍ପର ବିଶେଷ ଉନ୍ନତି କରିବା ପାଇଁ ଦେଶର ଧନୀ ଓ ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ଚେଷ୍ଟା ନ କଲେ ଦରିଦ୍ର ଚମାର ବା ମୋଚିମାନଙ୍କ ଦ୍ୱାରା ଏହାର କୌଣସି ଉନ୍ନତି ହେବା ସମ୍ଭବପର ନୁହେ ।

ଭାରତକୁ ପ୍ରତିବର୍ଷ କୋଟି କୋଟି ଟଙ୍କାର ଯୋତା, ଚମଡ଼ା ପଟି ( Belt ), ବାକ୍ସ ଓ ଅନ୍ୟାନ୍ୟ ଚମଡ଼ା ଜିନିଷ ବିଦେଶରୁ ଆସେ । ଏଥି ମଧ୍ୟରୁ ଓଡ଼ିଶାକୁ ଲକ୍ଷାଧିକ ଟଙ୍କାର ଜିନିଷ ଆସୁଥିବ, ସନ୍ଦେହ ନାହିଁ । ଆଧୁନିକ ଶିକ୍ଷା ଓ ସଭ୍ୟତାର କ୍ରମୋନ୍ନତି ସଙ୍ଗେ

---

* "In Europe and America it ( Leather industry ) is highly organised and **employs millions of men** from different classes of **society.**"

"Tanning Industry in India"

(A. B. P. Editorial, 7-6-32)

ସଙ୍ଗେ ଆମ ଦେଶର କି ଶିକ୍ଷିତ କି ଅଶିକ୍ଷିତ ସମସ୍ତେ ଚମଡ଼ାର ଯୋତା, ପଟି ଓ ବ୍ୟାଗ ପ୍ରଭୃତି ବ୍ୟବହାର କରନ୍ତି । ନିତାନ୍ତ ଅଶିକ୍ଷିତ ଓ ମଫସଲବାସୀ ମଧ୍ୟ ଗୋଡ଼ରେ ଫଟା ଚଟି (Slippers) ଲଗାଇଥିବାର ଆମ୍ଭେମାନେ ଦେଖୁ । ଏପରି ସ୍ଥଳେ ଓଡ଼ିଶାରେ ଚମଡ଼ା ଶିଳ୍ପର ନିତାନ୍ତ ଆବଶ୍ୟକତା କଥା କେହି ଅସ୍ୱୀକାର କରିବେ ନାହିଁ । ଏହି ଶିଳ୍ପପାଇଁ ପ୍ରଚୁର କଞ୍ଚାମାଲ (ଚମଡ଼ା) ମଧ୍ୟ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରେ ମିଳେ । ଏହି ଚମଡ଼ାକୁ ସଫା ଓ ଶକ୍ତ କରିବାପାଇଁ (Tanning) ଯେଉଁ ଯେଉଁ ଉପାଦାନମାନ ଦରକାର, ସେଗୁଡ଼ିକ ମଧ୍ୟ ଓଡ଼ିଶା ଗଡ଼ଜାତରେ ମିଳେ । ଅତଏବ ଓଡ଼ିଶାର କେତେକ କେନ୍ଦ୍ର ସ୍ଥାନରେ ଏହି ଶିଳ୍ପର କେତୋଟି କାରଖାନା ଖୋଲିବାକୁ ହେବ ।

ଅଳ୍ପ କେତେ ବର୍ଷ ତଳେ କଟକର ମଧୁବାବୁ (ମିଃ ଦାସ)ଙ୍କ ପ୍ରତିଷ୍ଠିତ 'ଉତ୍କଳ ଟାନେରି' ଓଡ଼ିଶାରେ ତଥା ସୁଦୂର ୟୁରୋପ ଓ ଆମେରିକାରେ କିପରି ପ୍ରଖ୍ୟାତି ଲାଭ କରିଥିଲା, ସେ କଥା ପୂର୍ବେ କୁହା ଯାଇଛି । ଆଜିକାଲି କଟକର କେତେ ଜଣ ମୁସଲମାନ ମଧ୍ୟ ଏହି ଶିଳ୍ପ କରନ୍ତି । ତଥାପି ଏ ଦିଗରେ ଆମ ଦେଶର ଧନକୁବେର ଓ ରାଜା ମହାରାଜାମାନେ ବିଶେଷ ଦୃଷ୍ଟି ଦେଲେ ଏହି ଶିଳ୍ପଦ୍ୱାରା ଓଡ଼ିଶାର ଅସଂଖ୍ୟ ଅକର୍ମା ନିଜର ଜୀବିକାର୍ଜନ କରି ପାରନ୍ତେ । ପୂର୍ବେ ଚମଡ଼ା ବ୍ୟବସାୟ ଅତି କଦର୍ଯ୍ୟ ଓ ଅପରିଷ୍କୃତ ହୋଇଥିଲା । କିନ୍ତୁ ଆଜିକାଲି ବୈଜ୍ଞାନିକ ପ୍ରଣାଳୀରେ ଚମଡ଼ାକୁ ସଫାସୁତରା କରି ତଦ୍ୱାରା ନାନାପ୍ରକାର ଶିଳ୍ପ କାର୍ଯ୍ୟମାନ କରାଯାଉ ଥିବାରୁ ଏହି କାର୍ଯ୍ୟ କରିବାପାଇଁ ଉଚ୍ଚ ବଂଶର ଓ ଉଚ୍ଚଶିକ୍ଷିତ ଲୋକମାନେ ମଧ୍ୟ ପ୍ରସ୍ତୁତ ହୁଅନ୍ତି । ଏପରି ଅବସ୍ଥାରେ ଆମ ଦେଶର ଯୁବକ ଓ ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ପଛଘୁଞ୍ଚା ଦେଲେ ସୁନ୍ଦର ଦିଶିବ ନାହିଁ । ଅଶିକ୍ଷିତ ଦରିଦ୍ର ଚମାର ଓ ମୋଚିମାନେ ଏହି କାର୍ଯ୍ୟ କରି ଏତେ଼ବଡ଼ ଶିଳ୍ପର ବିଶେଷ କିଛି ଉନ୍ନତି କରିବା ସମ୍ଭବପର ନୁହେ । ଦେଶର ଅକର୍ମାଙ୍କ ସଂଖ୍ୟା କମ୍ କରି ଗୋଟିଏ ପ୍ରଧାନ ଜାତୀୟ ଶିଳ୍ପକୁ ସଜୀବ କରିବାପାଇଁ ପ୍ରତ୍ୟେକ ଯୁବକଙ୍କୁ ଏହି କାର୍ଯ୍ୟ କରିବାପାଇଁ ପ୍ରସ୍ତୁତ ହେବାକୁ ହେବ । ବଙ୍ଗ ଦେଶରେ ସରକାରଙ୍କଦ୍ୱାରା ସ୍ଥାପିତ ଚମଡ଼ା କାରଖାନା (The Bengal Tanning Institute) ରେ ସେଠାର ହଜାର ହଜାର ଭଦ୍ର ସନ୍ତାନ କାମ କରନ୍ତି ଓ ପ୍ରତିବର୍ଷ ୩୦।୪୦ ଲକ୍ଷ ଟଙ୍କାର ଯୋତା ପ୍ରଭୃତି ତିଆରି କରନ୍ତି । ଏହି ଶିଳ୍ପର କ୍ରମୋନ୍ନତି ନିମନ୍ତେ ସେଠାରେ ଗୋଟିଏ ସ୍କୁଲ ମଧ୍ୟ ସ୍ଥାପିତ ହୋଇଛି । ଏହି ସ୍କୁଲରେ ସେଠାର ହିନ୍ଦୁ ଓ ମୁସଲମାନ ଛାତ୍ରମାନେ ପଢ଼ନ୍ତି । ଉଚ୍ଚ ବଂଶର ଓ ଉଚ୍ଚଶିକ୍ଷିତ ଯୁବକମାନେ ଏହି ସ୍କୁଲରେ ପଢ଼ି ଚମଡ଼ା ଶିଳ୍ପ ଶିକ୍ଷା କରୁଥିବାରୁ ଏହି ଶିଳ୍ପ ପ୍ରତି ଥିବା ଘୃଣା ବା ଅସ୍ପୃଶ୍ୟାକ୍ରମଶଃ

କେଉ ପାଇଛ । * ଠିକ୍ ସେହି ଅନୁକରଣରେ ଆମ ଦେଶର ଉଚ୍ଚଶିକ୍ଷିତ ଓ ଧନୀ ଯୁବକମାନେ କାର୍ଯ୍ୟ କଲେ ଓଡ଼ିଶାର ଗୋଟିଏ ପ୍ରଧାନ ଶିଳ୍ପ ସ୍ଥାପିତ ହେବ ଓ ତଦ୍ଦ୍ୱାରା ଅନେକ ଅକର୍ମୀ ନିଜର ଅନ୍ନକଷ୍ଟ ଦୂର କରିପାରିବେ ।

**୨୧ । ହାଡ କାରଖାନା** (Bone Industry)—ଓଡ଼ିଶା ଗଡ଼ଜାତରୁ ପ୍ରତିବର୍ଷ ହଜାର ହଜାର ଟଙ୍କାର ଗୋରୁ ହାଡ଼ ବିଦେଶୀ ମହାଜନମାନଙ୍କୁ ନିଲମ ହେଉଥିବା କଥା ପୂର୍ବେ କୁହାଯାଇଛି । ଗୋରୁ ହାଡ଼କୁ ଗୁଣ୍ଡ କରି ସେଇ ଗୁଣ୍ଡ ଧାନ ଜମିରେ ଖତ (ସାର) ପାଇଁ ଏବଂ ଚିନି କାରଖାନାରେ ଚିନି ସଫା କରିବାପାଇଁ ବ୍ୟବହାର କରାଯାଏ । କିନ୍ତୁ ଏପର୍ଯ୍ୟନ୍ତ ଓଡ଼ିଶାର କୌଣସି ବ୍ୟକ୍ତି ଏହି ଶିଳ୍ପ କରି ନାହାନ୍ତି । ଓଡ଼ିଶାର ଅନେକ ଜମି ବିଶେଷତଃ ବନ୍ୟା-ପ୍ରପୀଡ଼ିତ ଜମି ନିତାନ୍ତ ଅନୁର୍ବର ହୋଇଥାଏ । ଏଗୁଡ଼ିକୁ ଉର୍ବର କରିବା ପାଇଁ କୌଣସିଠାରେ ପ୍ରଚୁର ପରିମାଣ ଗୋବର ବା ଅନ୍ୟ କୌଣସି ଖତ ମିଳେ ନାହିଁ । ଖତ ଅଭାବରୁ ଏ ଦେଶର ଧାନ ଓ ଅନ୍ୟାନ୍ୟ ଫସଲ ଯେ ଦିନୁ ଦିନ ନଷ୍ଟ ହେଉଛି, ସନ୍ଦେହ ନାହିଁ । ଏପରି ଅବସ୍ଥାରେ ଗୋରୁହାଡ଼କୁ ଉତ୍ତମରୂପେ ଗୁଣ୍ଡ କରି ସେହି ଗୁଣ୍ଡକୁ ଖତପାଇଁ ଗାଁ ଗାଁରେ ବିକି କଲେ ସୁବିଧା ହୁଅନ୍ତା । ଯଦି ଧର୍ମଭୀରୁ ଓଡ଼ିଶାବାସୀ ଏହି ଖତକୁ ବ୍ୟବହାର କରିବା ପାଇଁ ଅନିଚ୍ଛା ପ୍ରକାଶ କରନ୍ତେ, ତା ହେଲେ ଏହି ଗୁଣ୍ଡ ଭାରତର ଅନ୍ୟାନ୍ୟ ଦେଶକୁ ରପ୍ତାନୀ କରାଯାଇପାରେ । ପ୍ରତିବର୍ଷ ଭାରତର ବିଭିନ୍ନ ବନ୍ଦରରୁ ଲକ୍ଷ ଲକ୍ଷ ଟଙ୍କାର ଗୋରୁହାଡ଼ ୟୁରୋପ, ଜାପାନ ଓ ଆମେରିକା ପ୍ରଭୃତି ଦେଶକୁ ରପ୍ତାନୀ ହୁଏ । ଓଡ଼ିଶା କାରଖାନାରେ ହାଡଗୁଣ୍ଡ ତିଆରି କରି ବିଦେଶକୁ ରପ୍ତାନୀ କରିବା ଦ୍ୱାରା ଏଠାର କେତେକ ଅକର୍ମୀ କାମ ପାନ୍ତେ ଏବଂ ଓଡ଼ିଶାର ଶିଳ୍ପ କିନିଷ ଦେଶବିଦେଶରେ ବିକି ହୁଅନ୍ତା ।

କେତେକ କାରଖାନାରେ ଚିନି ସଫା କରିବା ପାଇଁ ହାଡଗୁଣ୍ଡ ବ୍ୟବହାର କରନ୍ତି । ସମଗ୍ର ଓଡ଼ିଶାରେ ଗୋଟିଏ ବୋଲି ଚିନିକାରଖାନା ନାହିଁ । କେବଳ ଗଞ୍ଜାମ

* "The Bengal Tanning Institute gives training in modern leather manufacture in a Two-year course. A large number of *Bhadralok* boys of Mohamedan and Hindu community have been trained, × ×. The prejudice against tanning and leather work is being broken down by the Institute."

(Tanning Industry in India)

କଲର ଅପିକାଠାରେ ଗୋଟିଏ କାରଖାନା ଅଛି; କିନ୍ତୁ ସେଠାରେ ହାଡଗୁଣ୍ଡ ବଦଳରେ ତାଙ୍କ ଦ୍ୱାରା ଖଳ ସଜା କରନ୍ତି । ତଥାପି, ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏବଂ ଜାଭା ଦ୍ୱୀପରେ ଯେଉଁ ଖଳ ତିଆରି ହୁଏ, ସେଠାକୁ ଓଡ଼ିଶାର ହାଡଗୁଣ୍ଡ ରପ୍ତାନୀ କରାଯାଇ ପାରେ । ହାଡ଼ ଅପେକ୍ଷା ହାଡଗୁଣ୍ଡର ମୂଲ୍ୟ ଅଧିକ ଅଟେ । ଏଇ ଗୁଣ୍ଡ ଆମ ଦେଶରେ ତିଆରି କରିବା ପାଇଁ ଅଳ୍ପ କେତୋଟି ଯନ୍ତ୍ର ପାତି (Machine) ଦରକାର । ଯନ୍ତ୍ର ଦ୍ୱାରା ହାଡ଼ ଗୁଣ୍ଡ କଲେ ମଧ୍ୟ ଏଇ ଯନ୍ତ୍ର ଚଳାଇବା ପାଇଁ ଏବଂ ହାଡ ସଂଗ୍ରହ କରି ତାହାର ଗୁଣ୍ଡ ବିଦେଶକୁ ରପ୍ତାନୀ କରିବା ପାଇଁ ଶତାଧିକ ଲୋକ (ମୂଲିଆ) ଦରକାର ପଡନ୍ତି । ଦେଶର ୨।୪ ସ୍ଥାନରେ ଏଇ ଶିଳ୍ପର କାରଖାନାମାନ ସ୍ଥାପିତ ହେଲେ ସହସ୍ରାଧିକ ଅକର୍ମୀ ଏଠାରେ କାର୍ଯ୍ୟ କରିପାରନ୍ତି ।

୨୨ । "କନ୍ଦ" ବା 'ନବାତ' ତିଆରି ( Sugar Industry )—ଭାରତର ଶତକଡ଼ା ୮୦ ପରିମାଣ ଖଳ ଓ ନବାତ 'ଜାଭା' (Java) ଦ୍ୱୀପରୁ ଆସେ । ଏଥିପାଇଁ କୋଟି କୋଟି ଟଙ୍କା ବିଦେଶକୁ ରପ୍ତାନୀ ହୁଏ । ଗତ ୧୯୩୦-୩୧ ଖ୍ରୀଷ୍ଟାବ୍ଦରେ ପ୍ରାୟ ୧୧ କୋଟି ଟଙ୍କାର ଖଳ ବିଦେଶରୁ ଆମଦାନୀ ହୋଇଛି । ଆଖୁରୁ ଗୁଡ ତିଆରି ହୁଏ ଏବଂ ସେଇ ଗୁଡରୁ ପୁଣି 'ନବାତ' ତିଆରି ହୁଏ । ସମଗ୍ର ଭାରତରେ ବର୍ଷକୁ ହାରାହାରି ୩୦ ଲକ୍ଷ ଏକର ଜମିରେ ଆଖୁ ଚାଷ ହୁଏ । ଏଇ ଦେଶରେ ୪୨ ଟି ନବାତ କାରଖାନା ( Sugar Factory) ଅଛି । ଏଥିରୁ ଅଧିକାଂଶ ଯୁକ୍ତ ପ୍ରଦେଶ ଓ ବିହାରରେ ଅଛି । ଏଇ ୪୨ ଟି କାରଖାନାରୁ ପ୍ରାୟ ୧୯ ଲକ୍ଷ ଟନ୍ ( ୪୨ ଲକ୍ଷ ମହଣ ) ଗୁଡ଼ ଆଦାୟ ହୁଏ । ତଥାପି ଏହା ଭାରତ ପକ୍ଷରେ ଯଥେଷ୍ଟ ନୁହେ । ଆଉରି ଅନ୍ୟୂନ ୨୦୦ କାରଖାନା ହେଲେ ଭାରତର ଯାବନ୍ତ ଦରକାରୀ ନବାତ ତିଆରି ହୋଇପାରେ ବୋଲି ସରକାରୀ ରିପୋର୍ଟ (Report of the Tariff Board)ରୁ ଜଣାଯାଏ । * ବର୍ତ୍ତମାନ ଦେଶର ଏଇ ଅଭାବ ଦୂର କରିବାପାଇଁ ସ୍ଥାନେ ସ୍ଥାନେ ଗୁଡରୁ କନ୍ଦ ବା ନବାତ ତିଆରି କରିବାକୁ ହେବ ।

ଗଞ୍ଜାମ ଓ ଓଡ଼ିଶାର ଅନେକ ସ୍ଥାନରେ 'ଆଖୁ ଚାଷ' ହୁଏ । ଆଖୁରୁ ଗୁଡ ମଧ୍ୟ ସ୍ଥାନେ ସ୍ଥାନେ କରନ୍ତି । କିନ୍ତୁ ଆଜିକାଲି ପ୍ରଚୁର ପରିମାଣ ବିଦେଶୀ ଖଳ ଭାରତକୁ ଆମଦାନୀ ହେଉଥିବାରୁ ଗୁଡ଼କୁ କେହି ଆଦର କରନ୍ତି ନାହିଁ । ଅତଏବ ଗୁଡର ଦର

*Vide "Sugar Industry" by Mr. M. N. Mitra M. Sc. of Dacca University. A. B. P. 2-6-32

କମି ଯାଇଚି । ଏପରି ସ୍ଥଳେ ଓଡ଼ିଶାରେ ଆଖୁଗୁଡ଼ କରି ବିଶେଷ ଲାଭବାନ୍ ହେବାର ସୁବିଧା ନାହିଁ । ତେଣୁ ଲୋକମାନେ ଯଦି ଗୁଡ଼ରୁ କନ୍ଦ ତିଆରି କରନ୍ତି, ତା ହେଲେ ବିଶେଷ ଲାଭବାନ୍ ହେବେ ।

ଗୁଡ଼ରୁ କନ୍ଦ ତିଆରି କରିବା ଅତି ସହଜ । ଗୁଡ଼ ବ୍ୟବସାୟୀମାନେ ଏହି 'ଶିଳ୍ପ' କିପରି ସହଜରେ କରିପାରନ୍ତି, ସେ ବିଷୟରେ ଓଡ଼ିଶାର "କୃଷି ବିଭାଗ" ବିଶେଷ ବ୍ୟବସ୍ଥା- ପତ୍ରମାନ ପ୍ରଚାର କରନ୍ତି । ଯେଉଁମାନେ ଏହି ଶିଳ୍ପ କରି ବିଶେଷ ଲାଭବାନ୍ ହେବାକୁ ଇଚ୍ଛା କରନ୍ତି, ସେମାନେ କଟକ ଗୃହଜଳଅଗଞ୍ଜରେ ଥିବା ସରକାରୀ କୃଷିକ୍ଷେତ୍ର କର୍ତ୍ତୃପକ୍ଷଙ୍କ ପାଖକୁ ପତ୍ର ଲେଖିପାରନ୍ତି । *

୨୩ । ଘଷିତିଆରି ( Cow-dung Cakes )—ପୂର୍ବେ କୁହାଯାଇଚି ଯେ, "କୁଟୀର ଶିଳ୍ପ"ର ପ୍ରଧାନ ଲକ୍ଷ୍ୟ ହେଉଚି ଅମ୍ଭମାନଙ୍କର ଫୁରସତ ସମୟରେ ଯେ କୌଣସି କାର୍ଯ୍ୟ କରି ଦୁଇ ଚାରି ପଇସା ରୋଜଗାର କରିବା । ଏହି ରୋଜଗାର ସଙ୍ଗେ ସଙ୍ଗେ ଯଦି ଅମ୍ଭେମାନେ ଦେଶରେ ଗୋଟିଏ ଜାତୀୟ ଶିଳ୍ପ (National Industry) କୁ ସଜୀବ କରି ରଖିପାରିବା ଓ ତଦ୍ଦ୍ୱାରା ଆମ ଦେଶର କେତେକ ଅକର୍ମୀ ସୁବିଧାରେ କାର୍ଯ୍ୟ ଖଣ୍ଡିଏ ପାଇ ସୁଖରେ ଜୀବିକାର୍ଜ୍ଜନ କରିପାରନ୍ତି ଏବଂ ସେହି ଶିଳ୍ପଲବ୍ଧ ଜିନିଷଯୋଗୁଁ ଯଦି ଅମ୍ଭେ- ମାନେ କୌଣସି "ବିଦେଶୀ ଜିନିଷ" ବହୁ ମୂଲ୍ୟ ଦେଇ କିଣିବାକୁ ବାଧ୍ୟ ହେବୁ ନାହିଁ, ତା ହେଲେ ସେପରି ଯେ କୌଣସି ଶିଳ୍ପ ଆମ ଦେଶରେ ଯେତେ ବୃଦ୍ଧିଲାଭ କରିବ, ଆମ ଦେଶବାସୀ ତେତେ ସୁଖ ଓ ସୁବିଧାରେ ଚଳିପାରିବେ ।

ଓଡ଼ିଶାର ଅନେକ ସ୍ଥାନରେ, ବିଶେଷତଃ ବନ୍ୟା ବା ଧୋୟା ଅଞ୍ଚଳରେ ଜାଳେଣି- କାଠ (Fire Wood) ଆଦୌ ମିଳେ ନାହିଁ । ପୁରୀ ଜିଲ୍ଲାର ଚିଲ୍କାମଧ୍ୟସ୍ଥ ଦ୍ୱୀପପୁଞ୍ଜରେ ଏବଂ ଅନ୍ୟ କେତେକ ଧୋୟା ଅଞ୍ଚଳର ଲୋକମାନେ କାଠବଦଳରେ ଘଷି,କୁଟା (ପାଳ) ଓ ଗଛର ଶୁଖିଲା ପତ୍ରଗୁଡ଼ିକ ଜାଳି ଭାତ ତିଅଣ ପ୍ରସ୍ତୁତ କରନ୍ତି । ଏହି ଅଞ୍ଚଳଗୁଡିକରେ ଧନୀ ଓ ମଧ୍ୟବିତ୍ତ ଲୋକମାନେ କେବଳ ଘଷି କିଣି ନିଜର ରନ୍ଧାରନ୍ଧି କରନ୍ତି । ଏଠାର ଗରିବ ସ୍ତ୍ରୀପୁରୁଷମାନେ ବିଲମାଳରୁ ଗୋବର ଗୋଟେଇ ଆଣି ଘଷି ପାରନ୍ତି ଓ ସେହି

* "ଗୁଡ଼ରୁ କନ୍ଦ ତିଆରି" କରିବା ପ୍ରଣାଳୀ ସମ୍ବନ୍ଧରେ ଗୋଟିଏ ଲେଖା "ପଲ୍ଲୀମଙ୍ଗଳ" ମାସିକ ପତ୍ରିକ ୮ମ ଭାଗ, ୬ ଷ୍ଠ ସଂଖ୍ୟାରେ ଦେଖି ପାରିବ

ଘଷି ଶୁଖିଲା ପରେ ତାକୁ ବିକି ନିଜର ପେଟ ପୋଷନ୍ତି । ଧନୀ ଓ ମଧ୍ୟବିତ୍ତମାନେ ବହୁତ ଧନ ଖର୍ଚ୍ଚ କରି ସୁଦ୍ଧା ଉପଯୁକ୍ତ ପରିମାଣ କାଠ ନ ପାଇବାରୁ ଅନେକ ସ୍ଥାନରେ ନିଜର ମୃତବ୍ୟକ୍ତିମାନଙ୍କୁ ସେଇ 'ଘଷି'ରେ ପୋଡନ୍ତି । ଏପରି ଅବସ୍ଥାରେ ଗରିବ ଲୋକମାନେ କିପରି ଚଳୁଥିବେ, ତା ସହଜରେ ଅନୁମେୟ ।

ଗୋବରକୁ ଅନେକ ସ୍ଥାନରେ ଖତ ( ସାର ) କରନ୍ତି । କିନ୍ତୁ ଧୋୟା ବା ବନ୍ୟା ଅଞ୍ଚଳରେ ଖତର ବିଶେଷ ଦରକାର ନ ଥିବାରୁ ଏହି ଗୋବରକୁ ଘଷି ପାରି ଜାଳନ୍ତି । ବର୍ତ୍ତମାନ ଆମ ଦେଶର ସହରଗୁଡ଼ିକରେ ଯେଉଁ ଗାଈ ଗୋରୁ ପୋଷାଯାନ୍ତି, ସେମାନଙ୍କ ଗୋବରର ବିଶେଷ ସଦ୍‌ବ୍ୟବହାର କେହି କରନ୍ତି ନାହିଁ । ତୁଏତ ସହରର ଗୋବର ସେଠା ନର୍ଦ୍ଦମାରେ ମିଶି ବର୍ଷା ଦିନରେ ଦୂର ସ୍ଥାନକୁ କିମ୍ବା କୌଣସି ନଦୀ ବା ପୋଖରୀକୁ ବହିଯାଏ ବା ଘରର କୌଣସି ସ୍ଥାନରେ ରହି ପଚି ସଢ଼ି ଗନ୍ଧ କରେ କିମ୍ବା ସହରର ମ୍ୟୁନିସିପାଲିଟି ଖତଗଦା ଗାଡ଼ିରେ ଯାଇ କୌଣସି ଖାଲ ଗାଡ଼ିଆ ପୋତି ହୁଏ । ସହରର ଗୋବର ଏପରି ଭାବରେ ଅସଦ୍ ବ୍ୟବହାର ହେଉଥିବା ସତ୍ତ୍ୱେ ତାକୁ ସଂଗ୍ରହ କରି ଘଷି ପାରି ସେଇ ବ୍ୟବସାୟ ଦ୍ୱାରା ଦି ପଇସା ରୋଜଗାର କରିବାପାଇଁ ଏପର୍ଯ୍ୟନ୍ତ କେହି ଚେଷ୍ଟା କରି ନାହାନ୍ତି । ଏଇ ଗୋବରକୁ ସଂଗ୍ରହ କରି କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଘଷି ପାରି ଶୁଖାଇ ସେଇ ଘଷିକୁ ସେଇ ସହରରେ କିମ୍ବା କୌଣସି ଧୋୟା ଅଞ୍ଚଳକୁ ନେଇ ବିକି କରାଯାଇ ପାରେ । ଆମ ଦେଶର ଧୋୟା ଅଞ୍ଚଳବାସୀ କାଠ ଅଭାବରେ କିପରି କଷ୍ଟରେ ନିଜର ରନ୍ଧାରନ୍ଧି କରନ୍ତି, ସେ କଥା ଉପରେ କୁହାଯାଇଛି । ସହରବାସୀ ମଧ୍ୟ କମ୍ ଖର୍ଚ୍ଚାନ୍ତ ହୁଅନ୍ତି ନାହିଁ । ସହରରେ ପ୍ରଚୁର କାଠ ମିଳେ ସତ; କିନ୍ତୁ ଠିକ୍ ଏ ଅନୁସନ୍ଧାନ କରି ଦେଖିଲେ ସ୍ପଷ୍ଟ ଜାଣି ହୁଏ ଯେ, ଏଇ କାଠରୁ ଅଧିକାଂଶ ଓଡ଼ିଶା ବାହାରୁ ଆସି ଏଠାରେ ବିକି ହୁଏ । ମୂଲ୍ୟ ବେଶୀ ହେଉ ଆମ ସହରବାସୀଙ୍କ ଚିନ୍ତା ନାହିଁ, କେବଳ ଜିନିଷ ମିଳିଲେ ଗଲା । କିନ୍ତୁ ବହୁ ମୂଲ୍ୟ ଦେଇ ଯେଉଁ କାଠ କିଣନ୍ତି, ସେଇ କାଠ କିଣିବାଦ୍ୱାରା ଆମ ଦେଶରୁ କେତେ ପଇସା ଯେ ଓଡ଼ିଶା ବାହାରକୁ ଯାଉଛି, ସେ କଥା କେହି ଜାଣନ୍ତି ନାହିଁ ।

ଜାଳ ବ୍ୟତୀତ ଘଷି ଆଉ କେତେକ ଦରକାରୀ କାର୍ଯ୍ୟରେ ଲାଗେ । ବୈଦ୍ୟମାନେ ଯେଉଁ ଔଷଧଗୁଡ଼ିକୁ 'ଶତ ପୁଟ', "ସହସ୍ର ପୁଟ" ଦେଇ ତିଆରି କରନ୍ତି, ସେଇ ଔଷଧ ତିଆରି ପାଇଁ ଘଷି ଦରକାର ହୁଏ । ପୁଣି ଶଗଡ଼ ଚକରେ ଯେଉଁ ଲୁହା "ହାମି" ଲାଗିଥାଏ, ତାକୁ ପୋଡ଼ି ଚକରେ ଦେବାପାଇଁ ମଧ୍ୟ ପ୍ରଚୁର ପରିମାଣ ଘଷି ଦରକାର ହୁଏ । ଆଜିକାଲି ଆମ ଦେଶର ବୈଦ୍ୟ ଓ କବିରାଜମାନେ କଲିକତା ବା ମାନ୍ଦ୍ରାଜର କୌଣସି ଔଷଧ

ଦୋକାନରୁ ଔଷଧ କିଣି ତାଙ୍କୁ ଅମ ଦେଶରେ ବ୍ୟବହାର କରୁଥିବାରୁ ସେମାନଙ୍କର ସେଇ ଔଷଧ ତିଆରି ପାଇଁ ଅଜ ଘଷି ଦରକାର ହୁଏ ନାହିଁ । ନଚେତ୍ ଦେଶରେ ଯେପରି ଶତ ଶତ ବୈଦ୍ୟ ଓ କବିରାଜ ଦେଖାଯାନ୍ତି, କେବଳ ସେମାନଙ୍କ ପାଇଁ ବାର୍ଷିକ ହଜାର ହଜାର ଟଙ୍କାର ଘଷି ଏ ଦେଶରେ ଦରକାର ହୁଅନ୍ତା । ଯାହା ହେଉ, ଅନ୍ତତଃ ଧୋପ୍ପା ବା ବନ୍ୟା ଅଞ୍ଚଳ ଓ ସହରବାସୀଙ୍କ ପାଇଁ ଦେଶର ସ୍ଥାନେ ସ୍ଥାନେ ଘଷି ତିଆରି କରାଇ ବିକି କଲେ ଏଇ 'ଶିଳ୍ପ' ଦ୍ୱାରା ଅନେକ ଗରିବ ଲାଭବାନ୍ ହୁଅନ୍ତେ ।

୬୪ । ପ୍ରତିମୂର୍ତ୍ତି ଗଠନ ( Sculptures )—ମାଟି, ପଥର, କାଠ, ଲୁହା, ସୁନା, ରୁପା ଓ ମିଶ୍ରିତ ଧାତୁ ( Bronze ) ରେ ଦେଶର ନେତା, ରାଜା ମହାରାଜା ଓ ଶାସକମାନଙ୍କର ପ୍ରତିମୂର୍ତ୍ତି ଗଠନ କରିବା ଆଜିକାଲି ପାଶ୍ଚାତ୍ୟ ଦେଶର ଗୋଟିଏ ପ୍ରଧାନ ଶିଳ୍ପ ହୋଇଛି । ଏଇ ପ୍ରତିମୂର୍ତ୍ତି ଗଢ଼ିବା ପାଇଁ ଶିଳ୍ପୀର ବିଶେଷ ଶିଳ୍ପବୁଦ୍ଧି ଓ ଶିଳ୍ପଜ୍ଞାନ ଦରକାର । ଅତି ପ୍ରାଚୀନକାଳରୁ ଓଡ଼ିଶାର ଶିଳ୍ପୀମାନେ ଏଇ ବିଦ୍ୟାରେ ବିଶେଷ ଦକ୍ଷତା ଦେଖାଇଛନ୍ତି । ଓଡ଼ିଶାର ପ୍ରସିଦ୍ଧ ଶିଳ୍ପକଳାପୂର୍ଣ୍ଣ ପ୍ରାଚୀନ ମନ୍ଦିର ମଧ୍ୟରୁ ଭୁବନେଶ୍ୱରର 'ଲିଙ୍ଗରାଜ' ମନ୍ଦିର ଓ 'କୋଣାର୍କ' ମନ୍ଦିରରେ ଯେଉଁ ପ୍ରସ୍ତର ପ୍ରତିମୂର୍ତ୍ତିମାନ ରଖାଯାଇଛି, ସେଗୁଡ଼ିକୁ ଦେଖି ଆଜି ଜଗଦ୍‌ବାସୀ ମୁଗ୍ଧ ହୁଅନ୍ତି । 'ଓଡ଼ିଶାର ବାର ଶହ ବଢ଼େଇ' ଯେଉଁ ପ୍ରସ୍ତର ପ୍ରତିମୂର୍ତ୍ତି, ଲତା ପତ୍ର, ହାତୀ, ଘୋଡ଼ା ଓ ସିଂହର ଶିଳ୍ପକାମମାନ କରିଯାଇଛନ୍ତି, ସେଗୁଡ଼ିକୁ ଦେଖି ସୃଷ୍ଟି ଶେଷଯାଏଁ ଜଗତ୍ ମୁଗ୍ଧ ହେଉଥିବ । *

ଅଜିକାଲି ବି ଓଡ଼ିଶାର କେତେକ ଶିଳ୍ପୀ ଏଇ ପ୍ରତିମୂର୍ତ୍ତିମାନ ତିଆରି କରନ୍ତି । ସେ ଦିନ କଟକର ଜଣେ ଶିଳ୍ପୀ 'ଉତ୍କଳମଣି' ଗୋପବନ୍ଧୁ ଦାସଙ୍କର ଯେଉଁ ପ୍ରତିମୂର୍ତ୍ତି ତିଆରି କରୁଥିଲେ, ତା ଦେଖି ଏ ଲେଖକର ସମ୍ପୂର୍ଣ୍ଣ ବିଶ୍ୱାସ ହୁଏ ଯେ, ଓଡ଼ିଶାରେ ପ୍ରତିମୂର୍ତ୍ତି ଗଠନର ବିଶେଷ ବ୍ୟବସ୍ଥା କଲେ ଅସଂଖ୍ୟ ଶିଳ୍ପୀ ଏଇ ବ୍ୟବସାୟ ଦ୍ୱାରା ଧନୋପାର୍ଜ୍ଜନ କରି ଏ ଦେଶର ଗୋଟିଏ ପ୍ରଧାନ ଶିଳ୍ପକୁ ସଜୀବ ରଖନ୍ତେ । ଓଡ଼ିଶାର ଭୁବନେଶ୍ୱର, କଟକ, ପୁରୀ ଏବଂ ଗଞ୍ଜାମର ପାରଳାଖେମୁଣ୍ଡିରେ ଏଇ ଶ୍ରେଣୀର ଶିଳ୍ପୀ କେତେ ଜଣ ଅଛନ୍ତି ।

---

* Sculptures in high relief, exquisitely cut, but of an indecent character. Cover the exterior walls ( of temples ), and bear witness to an age when Hindu artists worked from nature." ( Huuter's "Orissa" Vol II )

ଏମାନଙ୍କୁ ଅଧୁନିକ ଧରଣର ପ୍ରତିମୂର୍ତ୍ତି ଗଠନ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଏହି ଶିଳ୍ପଜନିତ ଜିନିଷଗୁଡ଼ିକୁ ଦେଶବିଦେଶରେ ବିକ୍ରି କରାଇବା ବ୍ୟବସ୍ଥା କଲେ ଓଡ଼ିଶାର ଏହି ପ୍ରାଚୀନ ଶିଳ୍ପ ଯେ ଦେଶବିଦେଶରେ ପ୍ରଖ୍ୟାତି ପାଇବ, ସନ୍ଦେହ ନାହିଁ ।

୨୫ । **କୃତ୍ରିମ ଫୁଲ** ( **Artificial flowers** )—ପାଠକମାନେ ଦେଖୁଥିବେ, ସମୟ ସମୟରେ ଜାପାନ ଓ ଚୀନ ଦେଶର ସ୍ତ୍ରୀ ଓ ବାଳକବାଳିକାମାନେ ଆମର ସହରଗୁଡ଼ିକୁ ଆସି ସେଠାରେ ବିବିଧ ବର୍ଣ୍ଣର କାଗଜ ଫୁଲ, 'ବୁଟି' ପଙ୍ଖା ପ୍ରଭୃତି ବିକ୍ରି କରି ଏ ଦେଶରୁ ପ୍ରଚୁର ଧନ ନେଇଯାନ୍ତି । ଏହାହିଁ ସେମାନଙ୍କ ଜୀବିକାର୍ଜନର ଗୋଟିଏ ପ୍ରଧାନ ବ୍ୟବସାୟ । ଏହି ଶିଳ୍ପଦ୍ୱାରା ସେ ଦେଶର ଅର୍ଦ୍ଧାଧିକ ଲୋକ ଯେ ସ୍ୱଚ୍ଛନ୍ଦରୂପେ ପେଟ ପୋଷି ହୁଅନ୍ତି, ସନ୍ଦେହ ନାହିଁ ।

ଆଜିକାଲି ଆମ ଦେଶରେ ମଧ୍ୟ ଏପରି କୃତ୍ରିମ ଫୁଲ ଓ ପଙ୍ଖା ପ୍ରଭୃତି ତିଆରି କରାଯାଏ । କଟକର ଅନେକ ଶିଳ୍ପୀ ଏହି କାର୍ଯ୍ୟଦ୍ୱାରା ପେଟ ପୋଷି ହୁଅନ୍ତି । ଧନୀ ଓ ମଧ୍ୟବିତ୍ତ ଲୋକମାନଙ୍କ ଘରେ ବିବାହ ଓ ବ୍ରତାଦି ଉତ୍ସବ ଏବଂ କୌଣସି ପର୍ବପର୍ବାଣୀ ହେଲେ ଶହ ଶହ ଟଙ୍କାର "ଫୁଲ ଗଛ" ତିଆରି ହୁଏ । ଯେଉଁମାନେ ଏହି 'ଫୁଲ ଗଛ' ଅଭାବରେ ଶହ ଶହ ଟଙ୍କାର ବାଣ ପ୍ରଭୃତି ଆତସବାଜି କିଣି ପୋଡ଼ି ଦିଅନ୍ତି, ତା ଅପେକ୍ଷା ଦେଶର ଶିଳ୍ପୀମାନଙ୍କୁ ଉତ୍ସାହ ଦେବା ନିମନ୍ତେ ଏହି କୃତ୍ରିମ ଫୁଲଗଛ ପ୍ରସ୍ତୁତ କରାଇଲେ ଏ ଦେଶରେ ଏହା ଗୋଟିଏ ପ୍ରଧାନ ଶିଳ୍ପ ହେବ ।

କୃତ୍ରିମ ଫୁଲ ପାଇଁ ବିବିଧ ରଙ୍ଗର କନା, କାଗଜ, ଶୋଲ ଓ ପକ୍ଷୀ ପର ପ୍ରଭୃତି ଦରକାର ହୁଏ । ଏଗୁଡ଼ିକ ଯେ କୌଣସି ସ୍ଥାନରେ ଅକ୍ଳେଶରେ ମିଳିପାରେ । ଉତ୍ସାହ ପାଇଲେ ଆମ ଦେଶର ଶିଳ୍ପୀମାନେ ଏହି ଶିଳ୍ପଗୁଡ଼ିକୁ ଆଧୁନିକ ରୂପରେ ତିଆରି କରି ଦେଶବିଦେଶରେ ବିକ୍ରି କରି ଲାଭବାନ୍ ହୋଇପାରନ୍ତି ।

ଉପର୍ଯ୍ୟୁକ୍ତ ୨୫ ପ୍ରକାର "ସାଧାରଣ କୁଟୀର ଶିଳ୍ପ" ଓଡ଼ିଶାର ବିଭିନ୍ନ ସ୍ଥାନରେ ସ୍ଥାପନ କରି ଦେଶର ଆର୍ଥିକ ଦୁରବସ୍ଥା ଓ ଅକର୍ମୀଙ୍କ ସଂଖ୍ୟା ଊଣା କରିବାକୁ ହେବ । ଏହା ବ୍ୟତୀତ ନିମ୍ନ କେତୋଟି "ପଶୁ ଓ ପକ୍ଷୀ ପାଳନ" ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରେ କରାଯାଇପାରେ ।

ପଶୁ ଓ ପକ୍ଷୀ ପାଳନକୁ ପ୍ରକୃତରେ "କୁଟୀର ଶିଳ୍ପ" କୁହାଯାଇ ନ ପାରେ । କିନ୍ତୁ ଏହି ବ୍ୟବସାୟ ଦ୍ୱାରା ଭାରତର ଅନ୍ୟାନ୍ୟ ପ୍ରଦେଶ ତଥା ପୃଥିବୀର ଅନ୍ୟାନ୍ୟ ଅଧିବାସୀ-

ମାନେ ପ୍ରଚୁର ଧନ ଉପାର୍ଜନ କରୁଥିବା ସମୟରେ ଆମ ଦେଶରେ ମଧ୍ୟ ସେହି ବ୍ୟବସାୟ ବା 'ଶିଳ୍ପ' କରିବା ନିତାନ୍ତ ଦରକାର ମନେ କରୁ । ଅଳ୍ପ ପରିଶ୍ରମ ଦ୍ୱାରା ଯଦି ଆମ୍ଭମାନଙ୍କର ବିଶେଷ ଉନ୍ନତି ଦେଖାଯିବ, ତେବେ ସେପରି ବ୍ୟବସାୟ ବା ଶିଳ୍ପ କରିବା ପାଇଁ ଆମ ଦେଶବାସୀ କେବେ କୁଣ୍ଠିତ ହେବେ ନାହିଁ; ବରଂ ତଦ୍ଦ୍ୱାରା ସେମାନଙ୍କର ବିଶେଷ ଉନ୍ନତି ହେବ ଓ ସଙ୍ଗେ ସଙ୍ଗେ ଦେଶରେ ଆଉ କେତୋଟି ଲାଭଜନକ ଶିଳ୍ପର ସୃଷ୍ଟି ହେବ ।

ନିମ୍ନରେ ବର୍ଣ୍ଣିତ କେତୋଟି ବ୍ୟବସାୟକୁ କେବଳ କୃଷି ବିଭାଗର ଗୋଟିଏ ଗୋଟିଏ ଅଙ୍ଗ ବୋଲି ମଧ୍ୟ କେହି କେହି କହିପାରନ୍ତି । ବଳଦ ଓ ପୋଢ଼ ପ୍ରଭୃତି ଜୀବଗୁଡିକୁ ପୋଷିଲେ ସେମାନଙ୍କଦ୍ୱାରା କୃଷି ବେଉସା କରି ହୁଏ ସତ; କିନ୍ତୁ ଗାଈ, ମଇଁଷି ଓ ଛେଳି ପ୍ରଭୃତି ପୋଷିଲେ ସେମାନେ ଆମ୍ଭଙ୍କୁ ଦୁଧ (କ୍ଷୀର) ଦିଅନ୍ତି । ଏହି ଦୁଧରୁ ଦହି, ଘୋଳଦହି (ଚକ୍କା), ଛେନା, ଲହୁଣୀ ଓ ଘିଅ ପ୍ରଭୃତି ହୁଏ । ଏଗୁଡିକ ଅତି ପୁଷ୍ଟିକର ଖାଦ୍ୟ । ଶିଶୁ ଓ ରୋଗୀମାନଙ୍କ ପାଇଁ ଗାଈ ଓ ଛେଳି ଦୁଧ ଗୋଟିଏ ଉତ୍କୃଷ୍ଟ ଖାଦ୍ୟ । ଛେଳି, ଗାଈ ଓ ମଇଁଷିଙ୍କ ପରି କୁକୁଡ଼ା ଓ ଘୁଷୁରି ପୋଷିଲେ ମଧ୍ୟ ବିଶେଷ ଲାଭବାନ୍ ହେବାକୁ ହୁଏ । ଆମ ଦେଶରେ ବ୍ରାହ୍ମଣ, କରଣ ଓ ଖଣ୍ଡାଏତ ପ୍ରଭୃତି ଉଚ୍ଚ ଜାତିର ଲୋକମାନେ କୁକୁଡ଼ା କିମ୍ବା ଘୁଷୁରି ଖାନ୍ତି ନାହିଁ; କିନ୍ତୁ ଅନ୍ୟାନ୍ୟ ନୀଚ ବା ଅଧମ ଜାତିର ଲୋକମାନେ ଏଗୁଡ଼ିକୁ ଖାନ୍ତି । ଓଡିଶା ବ୍ୟତୀତ ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏବଂ ୟୁରୋପ, ଆମେରିକା ଓ ଜାପାନ ପ୍ରଭୃତି ଦେଶର ଲୋକମାନେ କୁକୁଡ଼ା ଓ ଘୁଷୁରି ପ୍ରଭୃତି ଜୀବର ମାଂସ ପ୍ରତିଦିନ ଖାନ୍ତି । ଅତଏବ ସେ ଦେଶରେ ଏହି ଜୀବଗୁଡିକର ମୂଲ୍ୟ ଅତ୍ୟଧିକ । ଆମ ଦେଶର ଯେଉଁ ହାଡି, ଡମ, ପାଣ ଓ ବାଉରି ପ୍ରଭୃତି ନୀଚ ଜାତିର ଲୋକମାନେ ଏହି ଜୀବଗୁଡ଼ିକୁ ଖାନ୍ତି, ସେମାନଙ୍କଦ୍ୱାରା ଏଗୁଡିକର (କୁକୁଡା ଓ ଘୁଷୁରି) ପାଳନ କରାଇଲେ ଏହି ବ୍ୟବସାୟ ଦ୍ୱାରା ବିଶେଷ ଧନୋପାର୍ଜନ କରିବା ସଙ୍ଗେ ସଙ୍ଗେ ସେହି ନୀଚ ଜାତିର ଅସଂଖ୍ୟ ଅକର୍ମୀ ଏହି କାର୍ଯ୍ୟ ନେଇ ସୁଖରେ କାଳକ୍ଷେପଣ କରନ୍ତେ । ବର୍ତ୍ତମାନ ସେହି 'ପଶୁ ଓ ପକ୍ଷୀ ପାଳନ' ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ନିମ୍ନରେ ଦିଆଗଲା ।

**୧ । ଗୋମହିଷ ପାଳନ** ( Dairy farming )—ଗାଈ ଓ ମଇଁଷି ଆମ୍ଭମାନଙ୍କୁ ଦୁଧ ଦିଅନ୍ତି । ଏହି ଦୁଧରୁ ଦହି, ଛେନା ଓ ଘିଅ ପ୍ରଭୃତି ତିଆରି ହୁଏ । ଗୋରୁ ଗାଈଙ୍କୁ ଅମ୍ଭେମାନେ ଦେବତା ତୁଲ୍ୟ ପୂଜା ମଧ୍ୟ କରୁଁ । କିନ୍ତୁ ଏପର୍ଯ୍ୟନ୍ତ ଏହି ଜୀବଗୁଡିକର ରକ୍ଷଣାବେକ୍ଷଣ ପାଇଁ ବିଶେଷ କିଛି ଯତ୍ନ କରି ନାହୁଁ । "ଏ ଦେଶରେ ଗାଈମାନଙ୍କୁ ଘରେ

ବଗି ଖୋଲିବାର ପ୍ରଥା ଏପର୍ଯ୍ୟନ୍ତ ହୋଇ ନାହିଁ । ସେମାନେ କେବଳ ପଡ଼ିଆକୁ ଯାଇ ଘାସ ଖାଇବା ଦ୍ୱାରା ପେଟ ପୂରାନ୍ତି । ଅଥଚ ଗୋଚର ଜମି ବହୁତ କମ୍ ଓ ଗୋମେଷାଦ ପଶୁର ସଂଖ୍ୟା ବହୁତ ବେଶି । ଏହାଦ୍ୱାରା ଫଳ ଏହା ହେଉଛି ଯେ, ସୁବିଧା ପାଇଲେ ପଶୁମାନେ ଫସଲ୍ କଆରିରେ ପଶି ବହୁତ ଫସଲ ନଷ୍ଟ କରୁଅଛନ୍ତି ।" * ଦେବତା ବୋଲି ପୂଜା କଲେ ସୁଦ୍ଧା କେତେକ ଅଜ୍ଞାନୀ ଲୋକ ବଳଦ ଓ ଯୋଡ଼ାଙ୍କ ସଙ୍ଗେ ଗାଈ ଓ ମଇଁଷଙ୍କୁ ମିଶାଇ ଜମିଚାଷ ମଧ୍ୟ କରନ୍ତି । ଗାଈ ବା ମଇଁଷ କୌଣସି କାରଣରୁ ଦୁଧ ଦେବାକୁ ଅକ୍ଷମ ହେଲେ ସେଗୁଡ଼ିକୁ ଅଳ୍ପ ମୂଲ୍ୟ ନେଇ କଂସାଇଖାନାକୁ ମଧ୍ୟ ପଠାଇ ଦିଅନ୍ତି । ଏପରି କେତେକ ଘଟଣା ଯୋଗୁଁ ଆମ୍ଭେମାନେ ସେଇ ନିରୀହ ଜୀବମାନଙ୍କ ପ୍ରତି ଘୋର ଅବମାନନା କରୁଛୁ ବୋଲି କହିଲେ ଅତ୍ୟୁକ୍ତି ହେବ କି ?

ବର୍ତ୍ତମାନ ଆମ ଓଡ଼ିଶାରେ ଏଇ 'ଗୋମହିଷ ପାଳନ'ର ବିଶେଷ ବ୍ୟବସ୍ଥା କରିବାକୁ ହେବ । ଦେଶର ସ୍ଥାନେ ସ୍ଥାନେ ଅସଂଖ୍ୟ 'ଗୋଶାଳା' ( Dairy Farms ) ସ୍ଥାପନ କରି ସେଠାରେ ବହୁ ବହୁ ଗାଈ ଓ ମଇଁଷଙ୍କୁ ଆଣି ରଖିବାକୁ ହେବ । ଏଇ ଗୋଶାଳାରେ ସେଇ ଜୀବମାନଙ୍କ ପାଇଁ ପ୍ରଶସ୍ତ ଘାସ ଓ ଅନ୍ୟାନ୍ୟ ଖାଦ୍ୟ ଯୋଗାଇବାକୁ ହେବ । ସଙ୍ଗେ ସଙ୍ଗେ ସେମାନଙ୍କଠାରୁ ଆଦାୟ ହେବା ଦୁଧରୁ ପରିଷ୍କୃତ ଦହି,ଘୋଲଦହି, ଛେନା, ଲହୁଣୀ ଓ ଘିଅ ପ୍ରସ୍ତୁତ କରିବାକୁ ହେବ ।

ଆଜିକାଲି ଦେଶରେ ଶିକ୍ଷା ଓ ସଭ୍ୟତାର ବିସ୍ତାର ଲୋକମାନଙ୍କ ମଧ୍ୟରେ ଯେତେ ଶୀଘ୍ର ବୃଦ୍ଧିଲାଭ କରୁଛି, ଠିକ୍ ସେଇପରି ଦେଶର ଆବାଳବୃଦ୍ଧବନିତା ଦୁଧ, ଦହି ଓ ଘିଅ ପ୍ରଭୃତିର ସଦ୍‌ବ୍ୟବହାର କରିବାକୁ ଇଚ୍ଛା କରନ୍ତି । ମାତ୍ର ସେମାନଙ୍କର ଆବଶ୍ୟକତାନୁସାରେ ଏ ଦେଶରେ ପ୍ରଚୁର ଓ ପରିଷ୍କୃତ ଦୁଧ, ଘିଅ ପ୍ରଭୃତି ମିଳେ ନାହିଁ । ଏଇ ସୁଯୋଗ ନେଇ ଅନେକ ବିଦେଶୀ ମହାଜନ ୟୁରୋପ ଓ ଆମେରିକା ପ୍ରଭୃତି ଦେଶରେ ତିଆରି ହୋଇଥିବା କୃତ୍ରିମ 'ଦୁଧଟିନ' ( Tinned Milk ) ଓ ଘିଅ ପ୍ରଭୃତି ଏ ଦେଶକୁ ଆଣି ବିକ୍ରି କରି ଲାଭବାନ୍ ହୁଅନ୍ତି । ଆମ ଦେଶରେ ମଧ୍ୟ ଅନେକ ଲୋକ ନାନାପ୍ରକାର କୃତ୍ରିମ ଓ ମିଶ୍ରିତ ( Artificial and adultrated milk and ghee ) ଦୁଧ

* "ଭାରତୀୟ କୃଷିକମିସନର ରିପୋର୍ଟ" ( Report of the Royal Commission on Agriculture ) ର ଉଦ୍ଧୃତାଂଶ—( "ପଲ୍ଲୀମଙ୍ଗଳ" ମାସିକ ପତ୍ରିକାର ୮ମ ଭାଗ, ୧ମ ସଂଖ୍ୟା, ୧୮ପୃଷ୍ଠା ଦେଖନ୍ତୁ )

ଓ ଘିଅ ତିଆର କରି ଲୋକମାନଙ୍କୁ ବିକି କରନ୍ତି । ଏହି ଦୂଷିତ ଦୁଧ, ଘିଅ ଖାଇ ଆମ ଦେଶର ଅନେକ ଲୋକ ନାନାପ୍ରକାର ରୋଗରେ ପୀଡ଼ିତ ହୁଅନ୍ତି ଏବଂ ଏଥିପାଇଁ କେନ୍ଦ୍ର ଓ ପ୍ରାଦେଶିକ ସରକାରମାନେ ଅନେକଗୁଡ଼ିଏ ଆଇନ ଜାରି କରି ଦେଶରେ କୃତ୍ରିମ ବା ଦୂଷିତ ଘିଅ କେହି ବ୍ୟବହାର ନ କରିବା ନିମନ୍ତେ ଲୋକମାନଙ୍କୁ ତାଗିଦ୍ କରନ୍ତି । ସରକାରଙ୍କର ଏତେ ସତର୍କତା ସତ୍ତ୍ୱେ ଏ ଦେଶରେ ଯେ ଦୂଷିତ ଦୁଧ ଘିଅ ବିକି ହେଉଛି, ତାହାକୁ ଅତ୍ୟୁକ୍ତି ହେବ ନାହିଁ ।

ଦେଶବାସୀ ଯେପରି କୌଣସି ପ୍ରକାର ବିଦେଶୀ ବା ଦୂଷିତ ଓ କୃତ୍ରିମ ଦୁଧ ଘିଅ ବ୍ୟବହାର ନ କରନ୍ତି, ସେଥିପାଇଁ ଆମ ଦେଶର ନାନା ସ୍ଥାନରେ ଆଦର୍ଶ ଗୋଶାଳାମାନ ସ୍ଥାପନ କରି ସେଠାରେ ପ୍ରସ୍ତୁତ ପରିଷ୍କୃତ ଦୁଧ ଓ ଦହି ପ୍ରଭୃତି ଦେଶବାସୀଙ୍କୁ ଯୋଗାଇବାକୁ ହେବ । ଏପରି ଆଦର୍ଶ ଗୋଶାଳାମାନ ସ୍ଥାପନ କରିବା ଦ୍ୱାରା ତିନଗୋଟି ମହତ୍ କାର୍ଯ୍ୟ ସାଧିତ ହେବ ।

(୧) ଆମ ଦେଶର ଗାଈ ଓ ମହିଷଗୁଡ଼ିକ ସୁବିଧାରେ ଖାଦ୍ୟ ପେୟ ପାଇ ପ୍ରଚୁର ପରିମାଣ ଦୁଧ ଦେବେ ।

(୨) ଏହି ଗୋଶାଳାରେ ପ୍ରସ୍ତୁତ ଦୁଧ, ଦହି ଓ ଘିଅ ପ୍ରଭୃତି ପରିଷ୍କୃତ ଓ ସ୍ୱାସ୍ଥ୍ୟକର ବୋଲି ଲୋକମାନେ ଜାଣିବାମାତ୍ରେ ନିଜର ଆବଶ୍ୟକ ଦୁଧ, ଦହି ପ୍ରଭୃତି ଏଠାରୁ କିଣି ଆଉ ବିଦେଶୀ ମୋହରେ ପଡ଼ି ଖର୍ଚ୍ଚାନ୍ତ ହେବେ ନାହିଁ ।

(୩) ଏହି ଗୋଶାଳାରେ କାର୍ଯ୍ୟ କରି ଆମ ଦେଶର ଅସଂଖ୍ୟ ଶିକ୍ଷିତ ଓ ଅଶିକ୍ଷିତ ଅକର୍ମୀ ନିଜନିଜର ପେଟ ପୋଷିବେ ଓ ଏଠାରେ ବିକି ହେବା ଦୁଧ, ଦହି ପ୍ରଭୃତିରୁ ବିଶେଷ ଲାଭବାନ୍ ହେବାକୁ ହେବ ।

ଆଦର୍ଶ ଗୋଶାଳା ସ୍ଥାପନ କରିବା ପାଇଁ ଆମ ଦେଶରେ ଅନେକ ସୁବିଧା ଅଛି । ଦେଶର ଡିଷ୍ଟ୍ରିକ୍ଟ ବୋର୍ଡ ଓ ମ୍ୟୁନିସିପାଲିଟି ଏବଂ ଧନୀ ରାଜା, ମହାରାଜା ଓ ମଠର ମହନ୍ତ-ମାନେ ଏ ଦିଗରେ ସାମାନ୍ୟ ଧନ ବ୍ୟୟ କରି ଦେଶବାସୀଙ୍କ ପାଇଁ ସ୍ୱାସ୍ଥ୍ୟକର ଦୁଧ ଘିଅ ପ୍ରଭୃତି ଯୋଗାଇବା ସଙ୍ଗେ ସଙ୍ଗେ 'ଗୋସେବା' ନାମକ ପବିତ୍ର କାର୍ଯ୍ୟ କରି ଧର୍ମାର୍ଜନ କରିପାରନ୍ତି । ଗାଈ ଗୋରୁଙ୍କ ପାଇଁ ଖାଦ୍ୟ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ପ୍ରଚୁର ମିଳେ । କେବଳ ସମୁଦ୍ରକୂଳସ୍ଥ ଓ ଧୋଇପ୍ରା ଅଞ୍ଚଳ ବ୍ୟତୀତ ଅନ୍ୟ ସବୁଠାରେ, ବିଶେଷତଃ ଓଡ଼ିଶା ଗଡ଼ଜାତରେ ଗାଈ ଗୋରୁ ସ୍ୱଚ୍ଛନ୍ଦରେ ଖାଦ୍ୟ ପାଇପାରନ୍ତି । ସେଠାରୁ ଖାଦ୍ୟ ମଗାଇ

ତମ୍ଭା ସେହି ସେହି ସ୍ଥାନରେ ଗୋଶାଳାମାନ ସ୍ଥାପନ କଲେ ଓଡ଼ିଶାରେ ଅସଂଖ୍ୟ ଗୋଶାଳା ରଖାଯାଇ ପାରେ । ଏ ଢଙ୍ଗରେ ଦେଶର ଧନକୁବେର ଓ ହିତାକାଙ୍କ୍ଷୀମାନେ ବିଶେଷ ମନୋଯୋଗ ଦେଲେ ହେଲା ।

ୟୁରୋପର "ଡେନ୍‌ମାର୍କ"( Denmark ) ରାଜ୍ୟ କଟକ ଓ ଗଞ୍ଜାମ ଜିଲ୍ଲା ଠାରୁ ଛୋଟ ହେବ (ତାର କ୍ଷେତ୍ରଫଳ ୧୭,୧୪୪ ବର୍ଗମାଇଲ) । ଏହାର ଜଳବାୟୁ ତମ୍ଭା ଭୂମିର ଉର୍ବରତା କୌଣସି ଗୁଣରେ ତୃପ୍ତିକର ନୁହେ । ପୂର୍ବେ ଏଠା ଅଧିବାସୀମାନେ ବନ୍ୟା, ଦୁର୍ଭିକ୍ଷ ଓ ମଡ଼କର ବଶବର୍ତ୍ତୀ ହୋଇ ଘୋର ଅଶାନ୍ତି ଭୋଗ କରୁଥିଲେ । ବ୍ୟବସାୟ ବାଣିଜ୍ୟରେ ମଧ୍ୟ ଏମାନେ ବହୁ ପଛରେ ପଡ଼ିଥିଲେ । ତଥାପି ଗତ ୨୫ । ୩୦ ବର୍ଷ ହେଲା ଏମାନେ ନିଜ ରାଜ୍ୟରେ ସହଯୋଗ ସମିତିମାନ ଗଢ଼ି, ଏହି ସମିତି ତରଫରୁ ଶତାଧିକ "ଗୋଶାଳା" ଓ "ଗୋରକ୍ଷଣୀ ସଂଘ"ମାନ ସ୍ଥାପନ କରି କେବଳ ଦୁଧ, ଦହି, ଛେନା ଓ ଲହୁଣୀ ପ୍ରଭୃତି ଦେଶବିଦେଶକୁ ରପ୍ତାନି କରି ଆଜି ପୃଥିବୀର ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । * ଆଜି ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ଡେନମାର୍କ ଗୋଶାଳାରେ ପ୍ରସ୍ତୁତ ଦୁଧ, ଦହି ଓ ଲହୁଣୀ ବିକି ହୁଏ । କେବଳ ଇଂଲଣ୍ଡବାସୀ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଦୁଧ ଦହି ଡେନ୍‌ମାର୍କରୁ କିଣନ୍ତି । ଆଜି ଡେନ୍‌ମାର୍କର ସମସ୍ତ ସମ୍ପଦ ଓ ବିଭବ ଏହି 'ଗୋଶାଳା' ଓ 'ଗୋମହିଷପାଳନ'ରୁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉତ୍କଳର ବଡ଼ବଡ଼ ସ୍ଥାନରେ ଗୋଶାଳା ସ୍ଥାପନ କଲେ ଲୋକମାନେ ସ୍ୱାସ୍ଥ୍ୟକର ଦୁଧ ଓ ଘିଅ ପ୍ରଭୃତି ପାଇବା ସଙ୍ଗେ ସଙ୍ଗେ ଏ ଦେଶରୁ ଗୋହତ୍ୟା ( Slaughtering of Cows ) ମଧ୍ୟ କମିଯିବ । ସାଧାରଣ ଲୋକମାନେ ଗାଈ ଗୋରୁ ରୁଗ୍ଣ, ବୃଦ୍ଧ ତମ୍ଭା କ୍ଷୀର ଦେବାକୁ ଅକ୍ଷମ ହେଲେ ସେଗୁଡ଼ିକୁ କଂସାଇଖାନାବାଲାଙ୍କୁ ବିକି କରନ୍ତି । ତଦ୍ୱାରା ସେମାନଙ୍କର ଗୋଭକ୍ତି ପ୍ରତି ଘୋର ଅବମାନନା ଯେ ହେଉଛି, ସନ୍ଦେହ ନାହିଁ ।

---

* "They (The people of Denmark) built up in the course of five years 1000 Co-operative dairies, **formed 323 Cattle breeding societies** and are growing richer and richer day by day."
( Miss Edith Seller's "Rural Reconstruction in Denmark. )

ଗୋଶାଳାରେ ଯେଉଁ ଗାଈ ଦୁଧ ଦିଏ ନାହିଁ, ବଳଦମାନେ ବୁଢ଼ା ହୁଏ କିମ୍ବା ଅନ୍ୟ କୌଣସି କାରଣରୁ ଅକର୍ମଣ୍ୟ ହୁଏ, ତାର ମୃତ୍ୟୁଯାଏ ତାକୁ ସେଠାରେ ରଖି ପରେ ତାକୁ କବର ଦିଆଯାଇ ପାରେ ।

ଗାଈ ଓ ମହିଷଙ୍କଠାରୁ ଭଲ ଛୁଆ ହେବା ନିମନ୍ତେ ଗୋଶାଳାରେ ଭଲ ଷଣ୍ଢ ଓ ପୋଢ଼ ମଧ୍ୟ ରଖାଯାଇ ପାରେ । ଲୋକମାନଙ୍କର ଗୃହୋପଯୋଗୀ ପୋଢ଼ ବଳଦ ଏହି ସ୍ଥାନରୁ ମିଳିପାରେ । "ଗୋଶାଳା" ( Dairy ) ଦ୍ୱାରା ଏତେ ସୁବିଧା ଥିବାରୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶତାଧିକ ଗୋଶାଳା ସ୍ଥାପନ କଲେ ଅଧିକ ଲାଭବାନ୍ ହେବୁଁ ଓ ସେହି ସ୍ଥାନରେ ଅସଂଖ୍ୟ ଅକର୍ମା କାର୍ଯ୍ୟ କରି ପେଟ ପୋଷିପାରନ୍ତି ।

ନିଜ ଦେଶର ଗୋଶାଳାରେ ପରିଷ୍କୃତ ଦୁଧ, ଘିଅ ପ୍ରଭୃତି ମିଳିଲେ ଆମ ଦେଶବାସୀ ହର୍ଲିକ୍ସ ( Horlicks ) ଓ ଗ୍ଲାକ୍ସୋ (Glaxo) ପ୍ରଭୃତି କୃତ୍ରିମ ଦୁଧ ବହୁ ମୂଲ୍ୟ ଦେଇ ବିଦେଶରୁ ମଗାଇବେ ନାହିଁ ।

୬ । ଛେଳି ଓ ମେଣ୍ଢା ପାଳନ ( Goat and sheep breeding ) :—

ଛେଳି ଓ ମେଣ୍ଢା ମଧ୍ୟ ଆମ ଦେଶରେ ପ୍ରଚୁର ମିଳେ । କିନ୍ତୁ ଏଗୁଡ଼ିକୁ ପାଳନ କଲେ ବିଶେଷ ଲାଭବାନ୍ ହେବୁଁ ଓ ତଦ୍ଦ୍ୱାରା ଦେଶରେ ଗୋଟିଏ ପ୍ରଧାନ 'ବ୍ୟବସାୟ'ର ଉନ୍ନତି ହେବ ବୋଲି କେହି ଲୋକ ଛେଳି ମେଣ୍ଢାକୁ ଯତ୍ନସହ ପୋଷନ୍ତି ନାହିଁ । ଛେଳିର ଦୁଧ ଏବଂ ଛେଳି ଓ ମେଣ୍ଢାର ମାଂସକୁ ଆମ ଦେଶର ପ୍ରାୟ ସମସ୍ତେ ଖାନ୍ତି । ଛେଳି ଦୁଧ ଗୋଟିଏ ଗରିଷ୍ଠ ଓ ପୁଷ୍ଟିକର ଖାଦ୍ୟ । ଛୋଟ ଶିଶୁ ଓ ରୋଗୀ ( ବିଶେଷତଃ ଯକ୍ଷ୍ମାରୋଗୀ ) ମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ଉପାଦେୟ ଅଟେ । ଛେଳି ଚମଡ଼ାରେ ନାନା ପ୍ରକାର ବାଦ୍ୟ ଯନ୍ତ୍ର ତିଆରି ହୁଏ ଏବଂ ମେଣ୍ଢା ଦେହରୁ ଅତି ଉତ୍କୃଷ୍ଟ ଲୋମ ( ପଶମ—Wool ) ଆଦାୟ ହୁଏ । ଆଜି ପୃଥିବୀର ଅତି ଉତ୍କୃଷ୍ଟ ପଶମ ଅଷ୍ଟ୍ରେଲିଆ ଓ ଦକ୍ଷିଣ ଆମେରିକାର ଆର୍ଜିଣ୍ଟାଇନ୍ ( Argentina ) ରାଜ୍ୟରେ ମିଳେ । କେବଳ ଏହି ପଶମ ଯୋଗୁଁ ସେ ଦେଶବାସୀ ବିଶେଷ ଧନୀ ହୋଇଛନ୍ତି । ଓଡ଼ିଶା ବ୍ୟତୀତ ଭାରତର ବିଭିନ୍ନ ପ୍ରଦେଶର ଲୋକମାନେ ମଧ୍ୟ ଛେଳି ଓ ମେଣ୍ଢା ମାଂସ ଖାନ୍ତି । ତଥାପି ଏ ଦେଶ ପାଇଁ ଯେତେ ଛେଳି ମେଣ୍ଢା ଦରକାର ହୁଏ, ତା ଏଠାରେ ମିଳେ ନାହିଁ । ଏହି ଅଭାବ ପୂରଣ କରିବା ପାଇଁ ଅନେକ ସାହେବ କମ୍ପାନୀ ୟୁରୋପ ଓ ଆମେରିକାରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଛେଳି ଓ ମେଣ୍ଢା ମାଂସ ଭାରତକୁ ରପ୍ତାନୀ କରି ଏଠାରେ ବିକ୍ରି କରି ଲାଭବାନ୍ ହୁଅନ୍ତି ।

ଅତଏବ ଛେଳି ଓ ମେଣ୍ଢାଠାରୁ ଦୁଧ, ମାଂସ, ଚମଡ଼ା ଓ ପଶମ ପ୍ରଭୃତି ଆଦାୟ କରି ଦେଶବିଦେଶରେ ବିକି କରି ଲାଭବାନ୍ ହେବା ପାଇଁ ଆମ ଦେଶର ସ୍ଥାନେ ସ୍ଥାନେ ଏହି ଜୀବଗୁଡ଼ିକର ପାଳନ କେନ୍ଦ୍ର (Feeding Places)-ମାନ ସ୍ଥାପନ କରିବାକୁ ହେବ । ଛେଳି ଓ ମେଣ୍ଢାଗୁଡ଼ିକ ବର୍ଷକୁ ୨ । ୩ ଥର ଛୁଆ ଜନ୍ମ କରନ୍ତି ଏବଂ ଏଗୁଡ଼ିକ ବହୁ ମୂଲ୍ୟରେ ମଧ୍ୟ ବିକି ହୁଅନ୍ତି । ଓଡ଼ିଶାରେ ଛେଳି ଓ ମେଣ୍ଢା ଖାଇବା ପାଇଁ ଯଥେଷ୍ଟ ଖାଦ୍ୟ ଅଛି । ବିଶେଷତଃ ଓଡ଼ିଶାର, ପାହାଡ଼ିଆ ଓ ଗଡ଼ଜାତ ଜଙ୍ଗଲରେ ଏଗୁଡ଼ିକ ଉତ୍ତମରୂପେ ପାଳିତ ହୋଇ ପାରନ୍ତି । କେବଳ ଅଳ୍ପ କେତୋଟି ହିଂସ୍ରଜନ୍ତୁଙ୍କ ଠାରୁ ରକ୍ଷା କଲେ ଏଗୁଡ଼ିକୁ ପାଳନ କରିବା ପାଇଁ ଅନ୍ୟ କୌଣସି ବିଶେଷ ଅସୁବିଧା ହେବ ନାହିଁ । ଏଗୁଡ଼ିକୁ ପାଳନ କରିବାପାଇଁ ବିଶେଷ କିଛି ଶିକ୍ଷା ବା ଜ୍ଞାନ ମଧ୍ୟ ଦରକାର ନାହିଁ । ଅତଏବ, ଆମ ଦେଶର ଅସଂଖ୍ୟ ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଅକର୍ମୀ ଏହି "ଶିଳ୍ପ" କରିପାରନ୍ତି ।

### ୩ । 'କୁକୁଡ଼ା' ପାଳନ (Poultry Farming)

"Poultry Farming is a simple and a most profitable industry in the world."

(Mr. J. F. Saldanha of Patna)
Vide His "Poultry Farming on Commercial Scale"
A. B. P. 4-5 32.

"Poultry keeping is a business, and, like any other business, it needs to be conducted upon business-like manner. × × Those who desire to indulge in poultry-keeping should first of all learn the rudiments of the art on a small scale before they launch out into wider fields. × × At first there will not be much profit, but as experience is gained so the profit will increase. If proper care and attention are given to the work there will be no loss either in the early stages or in the later and more extended form."

("Dictionary of Poultry" from the Pear's Cyclopaedia P. 775)

ଆମ ଦେଶରେ ବାଉରି, ହାଡି, ପାଣ ଓ ଡମ ପ୍ରଭୃତି ଜାତିର ଲୋକମାନେ କୁକୁଡାର ଡିମ୍ବ ଓ ମାଂସ ଖାନ୍ତି । କୁକୁଡା ଡିମ୍ବର ରସ ଅତି ପୁଷ୍ଟିକର ଖାଦ୍ୟ । ଆଧୁନିକ ଯୁଗରେ ଡିମ୍ବରେ ଖାଦ୍ୟର ଗୋଟିଏ ପ୍ରଧାନ ଅଂଶ ଥିବାରୁ ଓ ଏହାକୁ ଖାଇଲେ ଦେହର ଦୁର୍ବଳତା ଦୂର ହୁଏ ବୋଲି ଡାକ୍ତରମାନେ କହନ୍ତି । ଏଥିପାଇଁ ବଜାରରେ ବଂଶାଧିକ ରକମର 'ଡିମ୍ବରସ' (Egg flip) ଓ କୁକୁଡ଼ା ଛୁଆର ରସ (Chicken broath) ପ୍ରଭୃତି ବିଦେଶରୁ ଆମଦାନୀ ହୋଇ ବିକ୍ରି ହୁଏ । ଏଇ 'ଖାଦ୍ୟ' ଗୁଡ଼ିକୁ ଆମ ଦେଶର ରୋଗୀ ଓ 'ଭୋଗୀ'ମାନେ ପ୍ରତିଦିନ ଖାନ୍ତି ଏବଂ ଏଥି ଯୋଗୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ବିଦେଶକୁ ରପ୍ତାନୀ ହୁଏ । ଏପରି ଅବସ୍ଥାରେ ଆମ ଦେଶର ହାଡ଼ି, ଡମ, ପାଣ ପ୍ରଭୃତି ଜାତିର ଲୋକ-ମାନଙ୍କ ଦ୍ୱାରା "କୁକୁଡ଼ା ପାଳନ" କରି ବିଶେଷ ଲାଭବାନ୍ ହେବାକୁ ହେବ ।

ୟୁରୋପ ଆମେରିକା ପ୍ରଭୃତି ଦେଶରେ କୁକୁଡା ଡିମ୍ବ ଓ ମାଂସ ଦୈନିକ ଖାଦ୍ୟରୂପେ ସେଠା ଅଧିବାସୀମାନେ ବ୍ୟବହାର କରନ୍ତି । କେବଳ ଆମେରିକାର ଯୁକ୍ତରାଷ୍ଟ୍ର (United States of America)ରେ ବାର୍ଷିକ ୩୨୭ କୋଟି ଟଙ୍କାର କୁକୁଡା ମାଂସ ଓ ଡିମ୍ବ ଖର୍ଚ୍ଚ ହୁଏ । ଏଥିରୁ ଅର୍ଦ୍ଧାଧିକ ବିଦେଶରୁ ଆମଦାନୀ ହୁଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଏଇ ଶିଳ୍ପ କରି ଏଠାରୁ ଭାରତର ଅନ୍ୟାନ୍ୟ ପ୍ରଦେଶକୁ କିମ୍ବା ୟୁରୋପ ଓ ଆମେରିକା ପ୍ରଭୃତି ଦେଶକୁ ଏଗୁଡ଼ିକ ରପ୍ତାନୀ କରାଯାଇ ପାରେ । ଏକା ଚୀନ ଦେଶ ମାସିକ ପ୍ରାୟ ୮୦୦ ଟନ୍ କୁକୁଡା ମାଂସ ଓ ଡିମ୍ବ ଆମେରିକାକୁ ରପ୍ତାନୀ କରେ । *

କୁକୁଡା ପାଳନ ପାଇଁ ବିଶେଷ ବୁଦ୍ଧିବିଦ୍ୟା କିମ୍ବା ଟଙ୍କା ପଇସାର ଖର୍ଚ୍ଚ ହେବା ଦରକାର ନାହିଁ । ମଫସଲର ଯେ କୌଣସି ସ୍ତ୍ରୀ ପୁରୁଷ ଏଇ 'ଶିଳ୍ପ' କରିପାରନ୍ତି । ଖର୍ଚ୍ଚ ଦିଗକୁ ଦେଖିଲେ ମଧ୍ୟ ଖର୍ଚ୍ଚ ତୁଳନାରେ ଏଇ ବ୍ୟବସାୟରେ ଶତକଡ଼ା ୫୦୦ଠାରୁ ୧୦୦୦ ଟଙ୍କା ଲାଭ ହେବାର ଜଣାଯାଏ । * ଗୋଟିଏ କୁକୁଡା ଛୁଆ ଜନ୍ମ ହେବା ଦିନରୁ ଡିମ୍ବ ପାରିବା ଯାଏ ପ୍ରାୟ ତିନି ଅଣାଠାରୁ ଛ ଅଣାର ଖାଦ୍ୟ ଖାଏ । ତା ପରେ ବାର୍ଷିକ ହାରାହାରି ୨୦୦ ଡିମ୍ବ ଦିଏ । ଆଜିକାଲି ବଜାର ଦରରେ ୧୨ଟି ଡିମ୍ବ ଆଠ ଅଣାକୁ ବିକ୍ରି କଲେ ମଧ୍ୟ ଖର୍ଚ୍ଚ ଯାଇ ଏଥିରେ ଲାଭ ହୁଏ । ପୁଣି କୁକୁଡ଼ାର ମୂଲ୍ୟ ଅଛି । କୁକୁଡାଟିଏ

---

* Vide "Poultry Farming on Commercial Scale" by Mr. J. F. Saldanha of Patna.

ଦଶଅଣା ବା ବାରଅଣା କରି ବିକ୍ରି କଲେ ଯଥେଷ୍ଟ ଲାଭବାନ୍ ହେବାକୁ ହୁଏ । ଭାରତର ବଡ଼ ବଡ଼ ସହରରେ ଯେଉଁ ସାହେବୀ ଦୋକାନରେ ଖାଦ୍ୟପଦାର୍ଥଗୁଡ଼ିକ ବିକ୍ରି ହୁଏ, ସେଠାରେ ମିଳୁଥିବା ଟିଣ କୁକୁଡ଼ା ମାଂସ କେବଳ ୟୁରୋପ ପ୍ରଭୃତି ବିଦେଶରୁ ଆମଦାନୀ ହୋଇଥାଏ । ଆମ ଦେଶର ସ୍ଥାନେ ସ୍ଥାନେ କୁକୁଡ଼ା ପାଳିଲେ ଏଠାର ଆବଶ୍ୟକ ଖର୍ଚ୍ଚ ବ୍ୟତୀତ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର କୁକୁଡ଼ା ମାଂସ ଓ ଡିମ୍ବ ବିଦେଶକୁ ରପ୍ତାନୀ କରାଯାଇପାରେ ।

କୁକୁଡ଼ାଙ୍କ ପାଇଁ ସାମାନ୍ୟ କୁଣ୍ଡା, ଖୁଦ ଓ ଭାତ ପ୍ରଭୃତି ଖାଦ୍ୟ ଦରକାର ହୁଏ । ଏହି ଖାଦ୍ୟ ଯେ କୌଣସି ସ୍ଥାନରେ ମିଳିପାରେ । ଏହି ଖାଦ୍ୟ ଯୋଗାଇବା ପାଇଁ ବିଶେଷ କଷ୍ଟ ପରିଶ୍ରମ କରିବା ଦରକାର ନାହିଁ । ଅତଏବ ଓଡ଼ିଶାର ସ୍ଥାନେ ସ୍ଥାନେ ଏହି ଶିଳ୍ପ କରିବାକୁ ହେବ ।

୪ । **ଘୁଷୁରି ପାଳନ** ( Pig Breeding ) — ଓଡ଼ିଶାର କେତେକ ସ୍ଥାନରେ "ଘୁଷୁରିଆ" ନାମକ ଏକ ଜାତିର ଲୋକମାନେ ଘୁଷୁରି ପୋଷନ୍ତି । କଟକ ଜିଲ୍ଲାର "ଖାନ୍‌ନଗର" ଓ ପୁରୀ ଜିଲ୍ଲାର "ମଙ୍ଗଳପୁର"ରେ ଏମାନଙ୍କର ଅବସ୍ଥାନ ଦେଖାଯାଏ । ଘୁଷୁରିଆଙ୍କ ବ୍ୟତୀତ ଆମ ଦେଶର ହାଡ଼ି, ପାଣ ପ୍ରଭୃତି ଅଳ୍ପ କେତୋଟି 'ନୀଚ' ଜାତିର ଲୋକମାନେ ମଧ୍ୟ ଘୁଷୁରି ମାଂସ ଖାନ୍ତି; କିନ୍ତୁ "କୁଟୀର ଶିଳ୍ପ" ବା ଗୋଟିଏ ପ୍ରଧାନ ଲାଭଜନକ ବ୍ୟବସାୟ ପରି କେହି ଘୁଷୁରି ପୋଷନ୍ତି ନାହିଁ ।

ଗୋଟିଏ ଗୋଟିଏ ଘୁଷୁରି ବାର୍ଷିକ ୧୦।୧୨ ଟି ଛୁଆ ଜନ୍ମ କରନ୍ତି ଏବଂ ଗୋଟିଏ ଅତି ବଡ଼ ଘୁଷୁରିର ଦାମ ପ୍ରାୟ ୫।୬ ଟଙ୍କାରୁ ୧୦ । ୧୫ ଟଙ୍କା ଯାଏ ହୁଏ । ୟୁରୋପ ଓ ଆମେରିକା ଦେଶର ଏବଂ ଭାରତରେ ବାସ କରୁଥିବା ଅନେକ ସାହେବ ଘୁଷୁରି ମାଂସ ଭଜା ( Roast Pork ) ଖାନ୍ତି । ଏଥିପାଇଁ ଲକ୍ଷ ଲକ୍ଷ ଟଙ୍କାର ମାଂସ ଟିଣରେ ପୂରାଇ ଏ ଦେଶକୁ ଆମଦାନୀ କରାଯାଏ । ଘୁଷୁରି ପୋଷିବା କିପରି 'ଲାଭଜନକ ବ୍ୟବସାୟ, ଇଚ୍ଛା କଲେ ପାଠକପାଠିକା କଟକ ଓ ପୁରୀ ଜିଲ୍ଲାର ପ୍ରୋକ୍ତ ଘୁଷୁରିଆଙ୍କ କୋଠାବାଡ଼ି, ଗହଣାଗଣ୍ଠି ପ୍ରଭୃତି ଦେଖି ଯାଇପାରନ୍ତି ।

ଚେର, ମୂଳ, ଖୁଦ, କୁଣ୍ଡା, ଜାଉ, ଭାତ ପ୍ରଭୃତି ଘୁଷୁରିଙ୍କର ପ୍ରଧାନ ଖାଦ୍ୟ । ସହର ଜାଗାରେ ଏହି ଖାଦ୍ୟର ଅଭାବ ଥିଲେ ମଧ୍ୟ ଓଡ଼ିଶାର କେତେକ ମଫସଲ ସ୍ଥାନରେ ସେହି ଜାତିର ଲୋକମାନଙ୍କ ଦ୍ୱାରା ଏହି ବ୍ୟବସାୟ କରାଯାଇ ପାରେ । ମାନ୍ଦ୍ରାଜ ଅଞ୍ଚଳର ଅନେକ ମୁନିସିପାଲିଟି ଓ ୟୁନିଅନ୍ ବୋର୍ଡ ଲୋକମାନଙ୍କୁ ଉତ୍ସାହ ଦେଇ ଘୁଷୁରି ପାଳନର ଆଦର୍ଶ

ଦେଖାଇଥାନ୍ତି । ଗାଁରେ ଥିବା ମନୁଷ୍ୟବସ୍ତି ଓ ଅନ୍ୟାନ୍ୟ ପଶୁ, ସଢ଼ା ଜିନଷ ମଧ୍ୟ ଘୁଷୁରି ଖାନ୍ତି । ଏଣୁ ସେଠାରେ ଘୁଷୁରି ପାଳନ କଲେ ସେଇ ବ୍ୟବସାୟ ଦ୍ୱାରା ପାଳକର ଆର୍ଥିକ ଉନ୍ନତି ହେବା ସଙ୍ଗେ ସଙ୍ଗେ ମୁନିସିପାଲିଟିର "ଖଡ଼କଢ଼ା" କାର୍ଯ୍ୟ ମଧ୍ୟ ହୁଏ । ଏଣୁ ସେମାନେ ପ୍ରକାରାନ୍ତରେ ଘୁଷୁରି ପାଳନର ପ୍ରଧାନ ପୃଷ୍ଠପୋଷକ ହୁଅନ୍ତି । ଗ୍ରାମର ମଇଳା ଦୂର କରିବା ସଙ୍ଗେ ସଙ୍ଗେ ସୁବିଧା କରି ଘୁଷୁରି ମାଂସକୁ ଉତ୍ତମ-ରୂପେ ସିଦ୍ଧକରି ବିଦେଶକୁ ରପ୍ତାନି କରାଯାଇ ପାରେ । ତଦ୍ଦ୍ୱାରା ବିଶେଷ ଲାଭବାନ୍ ହେବା ଅସମ୍ଭବ ନୁହେଁ ।



## ପାଟକକୁଳର ଦୁରବସ୍ଥା

ଉତ୍କଳରେ ପ୍ରାୟ ସବୁ ଜାତିର ପାଟକ ଲୋକ ବାସ କରନ୍ତି । ଏମାନଙ୍କ ମଧ୍ୟରୁ କମାର, କଂସାରି, କାଚରା, କୁମ୍ଭାର, କୁମୁଟି, ଖଡ଼ୁରା, ଗୁଡ଼ିଆ, ଗୋପାଳ, ଗୌଡ଼ିଆ, ତନ୍ତୀ, ତେଲି, ଚମାର, ଚଷା, ଶଙ୍ଖକର, ବଢ଼େଇ, ବଣିଆ, ପାଇଣ୍ଡା, ପାଣ, ମଛୁଆ ଓ ମେଦିଣୀ ପ୍ରଭୃତି ପ୍ରଧାନ ।

ଏଇ ସବୁ ଜାତିର ଲୋକମାନେ ଯଦି କେବଳ ସ୍ୱସ୍ୱ ବୃତ୍ତିଦ୍ୱାରା ଜୀବିକାର୍ଜନ କରନ୍ତେ, ତା ହେଲେ ଆମ୍ଭମାନଙ୍କର ସମସ୍ତ ପ୍ରକାର ଦୈନିକ ଦରକାରୀ ଜିନିଷଗୁଡ଼ିକ ଅମ୍ଭେମାନେ ଅତି ସୁବିଧାରେ ଆମ ଦେଶରେ ପାଅନ୍ତେ । କିନ୍ତୁ ଆଜିକାଲି ଆମ ଦେଶରେ ସେପରି ଆଦୌ ଦେଖାଯାଏ ନାହିଁ ।

ପ୍ରଥମ କଥା—ଅମ୍ଭେମାନେ "ଗାଁଟିଅ ସିଂଘାଣିନାକୀ" ଏଇ ନୀତିକୁ ଅନୁସରଣ କରି ଆମ ଦେଶର ପାଟକ ଲୋକମାନଙ୍କ ଦ୍ୱାରା ତିଆରି ଜିନିଷଗୁଡ଼ିକୁ ଆଦୌ ପସନ୍ଦ କରୁ ନାହୁଁ । ସେଗୁଡ଼ିକ ବଦଳରେ ଅମ୍ଭେମାନେ କେବଳ ବିଦେଶୀ ଜିନିଷର ମୋହରେ ପଡ଼ି ସେଇ ଜିନିଷର ସଦ୍‌ବ୍ୟବହାର କରୁ । ତଦ୍ଦ୍ୱାରା ଆମ ଦେଶର କାରିଗରମାନେ ସ୍ୱସ୍ୱ ବୃତ୍ତି ଛାଡ଼ିବାକୁ ବାଧ୍ୟ ହୋଇଛନ୍ତି । ସଙ୍ଗେ ସଙ୍ଗେ ଆମ ଦେଶ ବଜାର ହାଟରେ ବିଦେଶୀ ଜିନିଷର ପ୍ରସାର ବଢ଼ିଛି । ଯେଉଁ ବ୍ୟବସାୟ ଦ୍ୱାରା ହଜାର ହଜାର ଲୋକ ସୁଖରେ ପେଟ ପୋଷି ହେଉଥିଲେ, ସେଇ ବ୍ୟବସାୟର କ୍ରମବିକାଶ ନିମନ୍ତେ ଅମ୍ଭେମାନେ ଲେଶମାତ୍ର ଦୃଷ୍ଟି ନ ଦେବାରୁ ଆମ ଦେଶର ପାଟକକୁଳ ନିଜ ବ୍ୟବସାୟ ଛାଡ଼ି ହୁଏତ ବିଦେଶ ଯାଇ କୁଲିକାମ କରନ୍ତି କିମ୍ବା କେବେ ଉପାସେ ରହି ମରନ୍ତି । ଆମ ଦେଶ ପାଟକକୁଳର ଏ ଦୁରବସ୍ଥା କାହା ଯୋଗୁଁ ଘଟିଛି ? ଏ ପ୍ରଶ୍ନର ଉତ୍ତର ପ୍ରତ୍ୟେକ ଶିକ୍ଷିତ 'ବାବୁ'ଙ୍କୁ ଦେବାକୁ ହେବ ।

ଦ୍ୱିତୀୟ କଥା — ଦେଶର କି ଶିକ୍ଷିତ କି ଅଶିକ୍ଷିତ କେହି ହେଲେ 'ସ୍ୱଦେଶୀ' ଜିନିଷ ପ୍ରତି ବିଶେଷ ଅନୁରକ୍ତ ହୋଇ ନ ଥିବାରୁ ଆମ ଦେଶର ପାଠକକୁଳ ସ୍ୱସ୍ୱ ବୃତ୍ତି ଛାଡ଼ିଛନ୍ତି, କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜକୁ ପ୍ରାୟ ୧୫୦ ବର୍ଷ ହେବ, ଅର୍ଥାତ୍ ଓଡ଼ିଶା ଇଂରେଜମାନଙ୍କ କରଗତ ହେବା ଦିନଠାରୁ ଆମ ଦେଶର ପାଠକକୁଳମାନଙ୍କ ମଧ୍ୟରେ ଏପରି ଦୁରବସ୍ଥା ଘଟିଛି, ସନ୍ଦେହ ନାହିଁ । ଏତେ ଦୀର୍ଘ କାଳ ଏମାନେ ନିଜ ନିଜ ବୃତ୍ତି ଛାଡ଼ିଥିବାରୁ ଆଜି ଅନେକ ଲୋକ ନିଜ ବ୍ୟବସାୟର 'ସ୍ୱରବର୍ଣ୍ଣ' ସୁଦ୍ଧା ଜାଣନ୍ତି ନାହିଁ । ଅନେକ କମାର, ତନ୍ତୀ, ତେଲି ଓ ଶଙ୍ଖକର ନିଜ ବ୍ୟବସାୟର ଉପକରଣମାନ ମଧ୍ୟ ଚିହ୍ନି ପାରନ୍ତି ନାହିଁ । ଏମାନଙ୍କର ଏଇ ଅଧୋଗତି ଦେଖିଲେ ହୃଦୟରେ ବିଶେଷ ଦୁଃଖ ଜାତ ହୁଏ । ଦିନେ ଯେ ଏମାନେ ପୁଣି ମୁଣ୍ଡ ଟେକି ଉପରକୁ ଉଠିବେ, ଏଇକ୍ଷଣି କହିବା ସହଜ ନୁହେ ।

ବର୍ତ୍ତମାନ ଭାରତ ତଥା ପୃଥିବୀର ଯେ କୌଣସି ସଂବାଦପତ୍ର ଖୋଲି ଦେଖନ୍ତୁ, ଦେଖିବେ ଦେଶବିଦେଶର ରାଜା ମହାରାଜାଙ୍କଠାରୁ ଆରମ୍ଭ କରି ସ୍ୱୟଂ ସମ୍ରାଟ୍ ଓ ସମ୍ରାଜ୍ଞୀମାନେ ମଧ୍ୟ "ସ୍ୱ-ଦେଶୀ" ଜିନିଷର ବହୁଳ ପ୍ରଚାର ନିମନ୍ତେ ଘୋଷଣାମାନ କରନ୍ତି ଓ ସେ ଦିଗରେ ନିଜେ ସଭା ସମିତିମାନ କରି ବକ୍ତୃତାମାନ ଦିଅନ୍ତି । ସେମାନଙ୍କ ସତ୍ ଚେଷ୍ଟାରୁ ସେଇ ସେଇ ଦେଶର ଜାତୀୟ ଶିଳ୍ପ ଯେ ଅଚିରେ ଉନ୍ନତି ଲାଭ କରିବ, ସନ୍ଦେହ ନାହିଁ ।

ଏପରି ଅବସ୍ଥାରେ ଓଡ଼ିଶା ଯେ ପଛରେ ପଡ଼ିବ, ବିଶ୍ୱାସ ହୁଏ ନାହିଁ । ମାତ୍ର ଏଇ "ଜାତୀୟ ଶିଳ୍ପ"ର ପୁନରୁଦ୍ଧାର କଥା ଭାବିବା ସଙ୍ଗେ ସଙ୍ଗେ ସ୍ୱତଃ ସେଇ "ପାଠକକୁଳ"ର ଦୁରବସ୍ଥା ଦୂର କରିବା କଥା ମନେ ପଡ଼େ । ତାହା ନ ହେଲେ ଅମ୍ଭମାନଙ୍କର "ସ୍ୱଦେଶୀ ପ୍ରଚାର" ବିଶେଷ କାର୍ଯ୍ୟକାରୀ ହେବା ସମ୍ଭବପର ନୁହେ । ପାଠକକୁଳ ହେଉଛନ୍ତି ଜାତୀୟ ଶିଳ୍ପର ମେରୁଦଣ୍ଡ । ସେମାନଙ୍କର ଉନ୍ନତିରେ ଜାତୀୟ ଶିଳ୍ପର ଉନ୍ନତି । ଅତଏବ, ସେମାନଙ୍କର ବର୍ତ୍ତମାନ ଦୁରବସ୍ଥା ଦୂର କରି ସେମାନଙ୍କୁ ସଚେଷ୍ଟ କରିବାକୁ ହେବ ।

ଉତ୍କଳର ପାଠକକୁଳ ନିତାନ୍ତ ଅଶିକ୍ଷିତ ଓ ଦରିଦ୍ର । ଶତାଧିକ ବର୍ଷ ପୂର୍ବରୁ ସେମାନେ ସ୍ୱସ୍ୱ ବୃତ୍ତି ଛାଡ଼ି କୃଷି କିମ୍ବା କୁଲିକାମ କରୁଥିବାରୁ ଏଇକ୍ଷଣି ସେମାନେ ନିଜ ନିଜ ବୃତ୍ତିରେ ବିଶେଷ ଦକ୍ଷତା ଦେଖାଇ ନ ପାରନ୍ତି । ତଥାପି, ସେମାନଙ୍କୁ ସଚେଷ୍ଟ କରିବାକୁ ହେବ । ତା ନ ହେଲେ କୌଣସି ଶିଳ୍ପର ବିଶେଷ ଉନ୍ନତି ହେବା ସହଜ ନୁହେ । ପ୍ରତ୍ୟେକ ପାଠକ ଜାତିର ଲୋକ ଯଦି ନିଜର କର୍ତ୍ତବ୍ୟ ହୃଦୟଙ୍ଗମ କରି ନିଜ ବୃତ୍ତିଦ୍ୱାରା ଜାତୀୟ ଶିଳ୍ପର ଉନ୍ନତି କରିବା ପାଇଁ ଚେଷ୍ଟା କରନ୍ତି, ତା ହେଲେ ଏ ଦେଶର ଅକର୍ମୀଙ୍କ ସଂଖ୍ୟା ଅଚିରେ କମିଯିବା ସଙ୍ଗେ ସଙ୍ଗେ ଏଠାରେ ପ୍ରଚୁର ପରିମାଣ "ସ୍ୱ-ଦେଶୀ" ଶିଳ୍ପଜିନିଷ ପାଇପାରିବୁ ।

## କୃଷି ଓ କୁଟୀର ଶିଳ୍ପ

ଷଷ୍ଠ ପରିଚ୍ଛେଦରେ ବର୍ଣ୍ଣିତ ପ୍ରାୟ ସବୁ ପ୍ରକାର "କୁଟୀର ଶିଳ୍ପ" କେବଳ କୃଷିଜାତ ଦ୍ରବ୍ୟ ନେଇ କରିବାକୁ ହେବ । * କୃଷିହିଁ କୁଟୀର ଶିଳ୍ପର ପ୍ରଧାନ ପ୍ରଧାନ ଉପାଦାନମାନ ( କଞ୍ଚାମାଲ୍ ) ଯୋଗାଇପାରେ । ଧରନ୍ତୁ, ଜଣେ ଲୋକ "ଏଣ୍ଡିଗୁଷ" କରିବ କିମ୍ବା କିଅପଟର ଟୋକେଇ, ପାଶିଆ, ଡାଲା ପ୍ରଭୃତି ତିଆରି କରିବ । ତେବେ ସେଇ ଶିଳ୍ପଗୁଡ଼ିକ କରିବା ପୂର୍ବରୁ ତାହାଁର ପ୍ରଧାନ ଉପାଦାନଗୁଡ଼ିକୁ [ ଏଣ୍ଡିଗୁଷ ପାଇଁ ଗବ ବା କାଲ୍ ( ଏରଣ୍ଡ ) ଗଛର ଗୁଷ ଏବଂ କିଅ ପଟ ପାଇଁ କିଅ ଗଛର ବିସ୍ତୃତ ଗୁଷ ] ସଂଗ୍ରହ କରିବାକୁ ହେବ । ତା ନ ହେଲେ ସେଇ ସେଇ ଶିଳ୍ପଗୁଡ଼ିକୁ ଆଦୌ କରିହେବ ନାହିଁ । ଅତଏବ, ଦେଶର ବିଭିନ୍ନ ସ୍ଥାନରେ ନାନାପ୍ରକାର କୁଟୀର ଶିଳ୍ପାଗାରମାନ ସ୍ଥାପନ କରିବା ପୂର୍ବରୁ ସେଇ ସେଇ ଶିଳ୍ପ ସମ୍ବନ୍ଧୀୟ ଗଛ, ଲତା, ଚେର ପ୍ରଭୃତିର ପ୍ରଚୁର କୃଷି କରିବାକୁ ହେବ ।

ଉତ୍କଳରେ ଏପରି କେତୋଟି ବୃକ୍ଷଲତା ଅଛି, ଯଦ୍ଦ୍ୱାରା କି ଅତି ଉତ୍କୃଷ୍ଟ ଧରଣର ଶିଳ୍ପ କାର୍ଯ୍ୟମାନ କରାଯାଇପାରେ; ଅଥଚ ଏପର୍ଯ୍ୟନ୍ତ ଆମ ଦେଶର କେଇ ହେଲେ ସେଗୁଡ଼ିକର ଗୁଷ କରନ୍ତି ନାହିଁ । ଯଥାଃ— କିଅଗଛ, ଶିଆଳି ଲଞ୍ଜ, ଗୁଣ୍ଡୁରି, କନକା ପ୍ରଭୃତି । ଉତ୍କଳର ବିଭିନ୍ନ ସ୍ଥାନରେ ଏବଂ ଓଡ଼ିଶା ଗଡ଼ଜାତରେ ଯେଉଁ ଜଙ୍ଗଲୀ ବୃକ୍ଷଲତା-ପ୍ରଭୃତି ହୁଏ, ସେଗୁଡ଼ିକୁ ମଧ୍ୟ କେଇ ଗୁଷ କରନ୍ତି ନାହିଁ । ସେଠାର ବୃକ୍ଷଲତାର ଡାଳପତ୍ର, ଅଠା, ରସ ପ୍ରଭୃତି ନେଇ ଅନେକ ପ୍ରକାର ଶିଳ୍ପ କାର୍ଯ୍ୟମାନ କରାଯାଉଛି; କିନ୍ତୁ ଏଗୁଡ଼ିକ ମଧ୍ୟ ଦିନେ ଯେ ନିଃଶେଷ ହୋଇଯିବ, ସନ୍ଦେହ ନାହିଁ । ଏପରି ଅବସ୍ଥାରେ ସେଇ ବୃକ୍ଷଲତା-ଗୁଡ଼ିକ ଯେତେ ଛୋଟ ବା ନଗଣ୍ୟ ହୋଇଥିଲେହେଁ— ତଦ୍ଦ୍ୱାରା ଯଦି ଆମ୍ଭମାନଙ୍କର ଗୋଟିଏ ଗୋଟିଏ ପ୍ରଧାନ ଶିଳ୍ପ କାର୍ଯ୍ୟ କରାଯାଇ ପାରେ, ତେବେ ସେଇ ସେଇ ବୃକ୍ଷଲତା-ଗୁଡ଼ିକର ପ୍ରଚୁର ଗୁଷ କରିବାକୁ ହେବ । ନଚେତ୍ 'କୁଟୀର ଶିଳ୍ପ'ର ଗୋଟିଏ ପ୍ରଧାନ ଅଙ୍ଗ ଅସଂପୂର୍ଣ୍ଣ ରହିବା ନିଃସନ୍ଦେହ ।

---

* ବିଭିନ୍ନ ପ୍ରକାର ହାଡ଼, ଚମଡ଼ା, ଶିଙ୍ଘ, ହାତୀଦାନ୍ତ, ଖଣିଜ ପଦାର୍ଥ, ଲୁଣମରି, କଂସା ପିତ୍ତଳ ସୁନା ରୁପା କାମ ଏବଂ ମାଛ ଓ ପଶୁପକ୍ଷୀପାଳନ ପ୍ରଭୃତି ବ୍ୟତୀତ ଅନ୍ୟ ସମସ୍ତ ପ୍ରକାର କୁଟୀର ଶିଳ୍ପ କେବଳ କୃଷିଜାତ ବୃକ୍ଷଲତା ଫଳମୂଳକୁ ନେଇ ତିଆରି ହୁଏ ।

# ଉତ୍କଳରେ "କୁଟୀର ଶିଳ୍ପ"ର ପ୍ରତିବନ୍ଧକ

କେବଳ ଶିଳ୍ପକଳା ନେଇ ଯେଉଁ ଦେଶ ଦିନେ ଭାରତ ତଥା ପୃଥିବୀର ଅନ୍ୟାନ୍ୟ ସୁସଭ୍ୟ ଦେଶ ସଙ୍ଗେ ସମକକ୍ଷ ହୋଇଥିଲା ଓ ଯାର ପ୍ରାଚୀନ ଶିଳ୍ପବିଭବର ଭଗ୍ନାବଶେଷ ଦେଖି ଆଜି ଜଗତ୍ ବିମୁଗ୍ଧ, କେଉଁ କାରଣରୁ ଆଜି ସେଇ ଦେଶର ଶିଳ୍ପକଳା ମୁମୂର୍ଷୁ ଅବସ୍ଥାରେ ପଡ଼ିଛି ଓ ସେଠାର ଶିଳ୍ପୀମାନେ ଘରଦ୍ୱାର ପ୍ରିୟ ମାଇପଙ୍କୁ ଛାଡ଼ି ଦେଶ ବିଦେଶରେ କୁଲିକାମ କରନ୍ତି ? ଏଇ ପ୍ରଶ୍ନର କୌଣସି ବିଶେଷ ଉତ୍ତର ଦେବା ପୂର୍ବରୁ ପ୍ରତ୍ୟେକ ନବ୍ୟ ଶିକ୍ଷିତ ଯୁବକ ଯୁବତୀ ନିଜକୁ ନିଜେ ନିମ୍ନ କେତୋଟି ଅପ୍ରିୟ ସତ୍ୟକଥା ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରିବାକୁ ହେବ—

(୧) ଉତ୍କଳ ଇଂରାଜୀମାନଙ୍କ ଅଧିକାରଭୁକ୍ତ ହେବା ପରେ ଏଇ ଦେଶରେ ଇଂରାଜୀ ସରକାରଙ୍କ ଦ୍ୱାରା ସ୍ଥାପିତ ସ୍କୁଲ୍ କଲେଜରେ ପଢ଼ି ଉଚ୍ଚ ଡିଗ୍ରୀ ଲାଭ କରିଥିବା ପ୍ରତ୍ୟେକ "ନବ୍ୟଶିକ୍ଷିତ" ଯୁବକ ଯୁବତୀ ଏ ଦେଶର ଶିଳ୍ପୀମାନଙ୍କ ଦ୍ୱାରା ତିଆରି ହୋଇ-ଥିବା ଶିଳ୍ପ ଜିନିଷଗୁଡ଼ିକୁ "ମରହଟ୍ଟି", "ଅସଭ୍ୟ ବା ଅଧମ ଯୁଗର" କିମ୍ବା "ନଗଣ୍ୟ" ମନେ କରି ସେଗୁଡ଼ିକୁ (ଶିଳ୍ପ ଜିନିଷ) ଆଦୌ ଆଦର କରି ନାହାନ୍ତି ।

(୨) 'ସ୍ୱ-ଦେଶୀ' ଶିଳ୍ପ ଜିନିଷଗୁଡ଼ିକୁ ହେୟ ଜ୍ଞାନ କରିବା ସଙ୍ଗେ ସଙ୍ଗେ "ବିଦେଶୀ" (ୟୁରୋପ, ଆମେରିକା ଓ ଜାପାନ ପ୍ରଭୃତି ଦେଶର) ଚକ୍ ଚକ୍ ଜିନିଷଗୁଡ଼ିକୁ ବେଶ୍ ସୁନ୍ଦରଭାବରେ ଆଦର କରି ସେଗୁଡ଼ିକର ବହୁଳ ପ୍ରଚାରର ପ୍ରଧାନ ପୃଷ୍ଠପୋଷକ ହୋଇଛନ୍ତି ।

(୩) ସ୍କୁଲ୍ କଲେଜରେ ଅଧ୍ୟୟନ କରିବା ଶିକ୍ଷିତ ଯୁବକ ଯୁବତୀଙ୍କ ଅନୁସରଣ କରି ଆମ ଦେଶର ପ୍ରତ୍ୟେକ ମଫସଲୀ ( କି ଶିକ୍ଷିତ କି ଅଶିକ୍ଷିତ ପ୍ରାୟ ସମସ୍ତେ) ମଧ୍ୟ ସେଇ ଜାତୀୟ ଶିଳ୍ପ ପ୍ରତି ସଂପୂର୍ଣ୍ଣ ଉଦାସୀନ ଭାବ ଦେଖାଇ କେବଳ 'ବିଦେଶୀ' ଜିନିଷର ମୋହରେ ପଡ଼ିଛନ୍ତି ।

(୪) ପୂର୍ବେ ଆମ ଦେଶର ରାଜା ମହାରାଜାମାନେ ଜାତୀୟ ଶିଳ୍ପର ପ୍ରଧାନ ପୃଷ୍ଠ-ପୋଷକ ଥିଲେ । ସହସ୍ରାଧିକ କାରିଗର କେବଳ ରାଜାଶ୍ରିତ ହୋଇ ଅତି ସୁନ୍ଦର ଓ ସୁରୁଚି-ପୂର୍ଣ୍ଣ ଶିଳ୍ପକାର୍ଯ୍ୟମାନ ତିଆରି କରୁଥିଲେ । କୋଣାର୍କର କାରୁକାର୍ଯ୍ୟଖଚିତ ଜଗଦ୍ବିଖ୍ୟାତ ସୂର୍ଯ୍ୟମନ୍ଦିର ଏଇ ରାଜପୋଷକତାରେ ଥିବା ୧୨ ଶହ ବଢ଼େଇଙ୍କ ଦ୍ୱାରା ଗଢ଼ା ଯାଇଥିଲା; କିନ୍ତୁ ଆଜି ଆମ ଦେଶର ଏଇ ରାଜା ମହାରାଜାମାନେ ମଧ୍ୟ ଜାତୀୟ ଶିଳ୍ପକୁ ହେୟ ଜ୍ଞାନ

କରି କେବଳ ବିଦେଶୀ ଶିଳ୍ପ ପ୍ରତି ଆକୃଷ୍ଟ ହୋଇଛନ୍ତି । ପ୍ରତିବର୍ଷ ଏ ଦେଶର ରାଜା ମହାରାଜାଙ୍କ ଦ୍ୱାରା ଲକ୍ଷ ଲକ୍ଷ ଟଙ୍କାର ବିଦେଶୀ ଶିଳ୍ପ ଦ୍ରବ୍ୟ ଆମ ଦେଶକୁ ଆମଦାନୀ ହୁଏ ଏବଂ ଏମାନଙ୍କର ପୃଷ୍ଠପୋଷକତାରେ ଶତ ଶତ ବିଦେଶୀ ବଣିକ ଆମ ଦେଶରେ ବ୍ୟବସାୟ ଓ ବାଣିଜ୍ୟ କରି ଅତି ସୁନ୍ଦରଭାବରେ ଧନ ଦୌଲତ କରି ସୁଖରେ ରହନ୍ତି । ରାଜା ମହାରାଜାମାନଙ୍କର ଉଦାସୀନତା ଯୋଗୁଁ ଆମ ଦେଶର ଜାତୀୟ ଶିଳ୍ପ ଯେ ଅବୋ‌ନ୍ନତି କରୁ ନାହିଁ, କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୫) ଜାତୀୟ ଶିଳ୍ପ ପ୍ରତି ରାଜା ଓ ପ୍ରଜାଙ୍କର ଏହି ଉଦାସୀନ ଭାବଯୋଗୁଁ ଉତ୍କଳର ଶିଳ୍ପିକୁଳ ନିଜର କାର୍ଯ୍ୟ ନିଜେ କରିବାକୁ ଅକ୍ଷମ ହୋଇଛନ୍ତି ଏବଂ ସ୍ୱବୃତ୍ତି ଦ୍ୱାରା ପେଟ ପୋଷିବା ଭଳି ସୁବିଧା ନ ପାଇ ସେମାନେ ଦରିଦ୍ର ହୋଇଛନ୍ତି କିମ୍ବା ବିଦେଶ ଯାଇ କୁଲି-ଙ୍କାମ କରନ୍ତି ।

(୬) ଉତ୍କଳର ଶିଳ୍ପିକୁଳ ନିତାନ୍ତ ଅଶିକ୍ଷିତ, ଅନୁନ୍ନତ ଓ ଦରିଦ୍ର ଅଟନ୍ତି । ଦୁଇ ଓଳ ପେଟପୂରି ଖାଇବାକୁ ମଧ୍ୟ ସେମାନେ ପାନ୍ତି ନାହିଁ । ଯେଉଁମାନେ ସ୍ୱବୃତ୍ତି ଛାଡ଼ି କୃଷିଜୀବୀ ହୋଇଛନ୍ତି, ସେମାନଙ୍କର ଅବସ୍ଥା ମଧ୍ୟ ଅତି ଶୋଚନୀୟ ଦେଖାଯାଏ । ବନ୍ୟା ଓ ମଡ଼କ ଯୋଗୁଁ ଉତ୍କଳରେ ବାରମ୍ବାର କୃଷି ନଷ୍ଟ ହେଉଥିବାରୁ ଯେଉଁ ଶିଳ୍ପୀମାନେ କୃଷିକୁ ପ୍ରଧାନ ଜୀବିକା କରିଥିଲେ, ସେମାନେ ମଧ୍ୟ ଦିନ, ଦିନ ଦରିଦ୍ର ହୁଅନ୍ତି । ଏପରି ଅବସ୍ଥାରେ ସେମାନେ (ଶିଳ୍ପୀମାନେ) ନିଜ ଗୋଡ଼ରେ ଛିଡ଼ା ହୋଇ ନିଜର ଶିଳ୍ପ ବ୍ୟବ-ସାୟକୁ ପୁନର୍ଜୀବିତ କରିବା ସମ୍ଭବପର ନୁହେ ।

(୭) ଭାରତର ଅନ୍ୟାନ୍ୟ ପ୍ରଦେଶରେ ଯେପରି ସରକାରୀ "ଶିଳ୍ପ ସ୍କୁଲ୍" (Industrial School) ମାନ ଦେଖାଯାଏ, ଉତ୍କଳରେ ସେପରି କୌଣସି ଉଲ୍ଲେଖ-ଯୋଗ୍ୟ ଅନୁଷ୍ଠାନ ନାହିଁ, କିମ୍ବା କୌଣସି ଶିଳ୍ପୀଙ୍କୁ ଏ ଦିଗରେ ଉତ୍ସାହିତ କରିବା ଚେଷ୍ଟା ମଧ୍ୟ ଉତ୍କଳରେ ଦେଖାଯାଏ ନାହିଁ ।

(୮) ଯେଉଁ ଅଳ୍ପ କେତେଟି ଶିଳ୍ପୀ ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇ ନିଜର ଜାତୀୟ ଶିଳ୍ପକୁ ବଞ୍ଚାଇ ରଖିବାପାଇଁ ଚେଷ୍ଟା କରନ୍ତି, ସେମାନଙ୍କୁ ଆମ ଦେଶର ରାଜା ମହାରାଜା, ସରକାର କିମ୍ବା କୌଣସି ଉଚ୍ଚଶିକ୍ଷିତ ଦେଶହିତୈଷୀ ବିଶେଷରୂପେ ଉତ୍ସାହିତ କରୁଥିବା ମଧ୍ୟ ଦେଖାଯାଏ ନାହିଁ । ଉତ୍ସାହ ପାଇଲେ ଆମ ଦେଶର ଶିଳ୍ପୀମାନେ ଯେ ଅଧିକ ଉନ୍ନତି କରନ୍ତେ, ସନ୍ଦେହ ନାହିଁ । କେବଳ ଉତ୍ସାହ ଅଭାବରୁ ଅନେକ ଶିଳ୍ପୀ ସ୍ୱବୃତ୍ତି କରିବାପାଇଁ କୁଣ୍ଠିତ ହୁଅନ୍ତି —ଏଥିରେ କୌଣସି ସନ୍ଦେହ ନାହିଁ ।

(୯) ଉତ୍କଳରେ ଜାତୀୟ ଶିଳ୍ପର କ୍ରମୋନ୍ନତି ପାଇଁ ଏପର୍ଯ୍ୟନ୍ତ କୌଣସି ସଦୁଦ୍ୟମ ହୋଇ ନାହିଁ, ସଙ୍ଗେ ସଙ୍ଗେ ଅର୍ଥାଭାବ ଓ ବିଶେଷ ଜ୍ଞାନାଭାବ ଯୋଗୁଁ ଆମ ଦେଶର ଶିଳ୍ପୀମାନେ ନିଜ ତିଆରି ଜିନିଷଗୁଡ଼ିକର ବିଶେଷ ପ୍ରଚାର ମଧ୍ୟ କରିପାରନ୍ତି ନାହିଁ । ବିଶେଷ ବିଜ୍ଞାପନ (Advertisement) ଦ୍ୱାରା ଅନେକଗୁଡ଼ିଏ ଜିନିଷ ସହଜରେ ବିକି ହୁଏ । କିନ୍ତୁ ସେପରି ବିଜ୍ଞାପନ ଦେବାପାଇଁ ମଧ୍ୟ ଉତ୍କଳରେ ବିଶେଷ ସୁବିଧା ନାହିଁ । ଉତ୍କଳର ସ୍ଥାନେ ସ୍ଥାନେ ହାଟ ବସେ । ମାତ୍ର ଏହି ହାଟ କେବଳ ନିତାନ୍ତ ମଫସଲରେ ବସୁଥିବାରୁ ଓ ସେଠାକୁ ଯା ଆସ କରିବା ପାଇଁ ସୁବିଧାଜନକ ସଡ଼କ ବା ରାସ୍ତା ନ ଥିବାରୁ ଆଧୁନିକ ଶିକ୍ଷିତ ବାବୁମାନେ ସେହି ହାଟକୁ ଯାଇ ସେଠାରୁ ଆମ ଦେଶର ଶିଳ୍ପୀମାନଙ୍କ ଦ୍ୱାରା ତିଆରି ହୋଇଥିବା ଶିଳ୍ପ ଜିନିଷଗୁଡ଼ିକୁ କିଣି ଆଣିପାରନ୍ତି ନାହିଁ । ୟୁରୋପର କେବଳ ମଫସଲଗୁଡ଼ିକରେ ଜିନିଷପତ୍ର ତିଆରି ହୁଏ । ସେ ଦେଶରେ ଆମ ଦେଶପରି ସାପ୍ତାହିକ 'ହାଟ' ମଧ୍ୟ ବସେ ନାହିଁ । ତଥାପି ସେ ଦେଶବାସୀ ସେଠା ଶିଳ୍ପ ଜିନିଷଗୁଡ଼ିକର ବହୁଳ ପ୍ରଚାର ନିମନ୍ତେ ବର୍ଷକୁ ୨।୪ଟି ପ୍ରକାଣ୍ଡ 'ଶିଳ୍ପ ହାଟ' ବା 'ଶିଳ୍ପ ପ୍ରଦର୍ଶନୀ' (Industrial Fair or Exhibition) ଖୋଲନ୍ତି । ଏହି ପ୍ରଦର୍ଶନୀ ଖୋଲିବାପାଇଁ ସେଠାର ସମ୍ରାଟ୍ ଓ ସମ୍ରାଜ୍ଞୀମାନେ ଆଗଭୁରା ତତ୍ପର ହୁଅନ୍ତି ।

ଉତ୍କଳରେ କୌଣସି ବାର୍ଷିକ ପ୍ରଦର୍ଶନୀ ହେବା ତେଣେ ଥାଉ, ଏପର୍ଯ୍ୟନ୍ତ ଉତ୍କଳର ବିଭିନ୍ନ ପ୍ରଦେଶ ବା ସ୍ଥାନରେ କି କି ରକମ ଶିଳ୍ପ ସାମଗ୍ରୀ ପ୍ରସ୍ତୁତ ହୁଏ, ତହିଁର ବିଶେଷ ସମ୍ବାଦ ମଧ୍ୟ କେହି ରଖନ୍ତି ନାହିଁ । ଜାତୀୟ ଶିଳ୍ପର ବହୁଳ ପ୍ରସାର ନିମନ୍ତେ ଏପରି ଗୋଟିଏ ପ୍ରଦର୍ଶନୀ କିମ୍ବା ସାମୟିକ ବିଶେଷ ବିଜ୍ଞାପନ ( Special Advertisement ) ର ପ୍ରଚାର ନ କରିବା ପର୍ଯ୍ୟନ୍ତ ଏ ଦେଶର କୌଣସି ଶିଳ୍ପ ଦ୍ରବ୍ୟ ଯେ ଆଦୌ ଉନ୍ନତି ଲାଭ କରି ନ ପାରେ, ଏ କଥା ଶିକ୍ଷିତ ବ୍ୟକ୍ତିମାନେ ଉପଲବ୍ଧି କରିପାରୁଥିବେ ।

(୧୦) ଯେ କୌଣସି କାର୍ଯ୍ୟ ହେଉ, ବ୍ୟକ୍ତିଗତ ଚେଷ୍ଟା ଅପେକ୍ଷା ସମବେତ ଚେଷ୍ଟାଦ୍ୱାରା ତାହା ଯେ ବିଶେଷ ଉନ୍ନତି ଲାଭ କରିପାରେ, ସନ୍ଦେହ ନାହିଁ । ମାତ୍ର ଏପର୍ଯ୍ୟନ୍ତ ଉତ୍କଳରେ କେବଳ ଜାତୀୟ ଶିଳ୍ପର ବିଶେଷ ଉନ୍ନତି ପାଇଁ କୌଣସି ବ୍ୟକ୍ତିଗତ କିମ୍ବା ସମବେତ ଚେଷ୍ଟା (United efforts) ହୋଇ ନାହିଁ, ଏହା ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ।

ଉପର୍ଯ୍ୟୁକ୍ତ କେତୋଟି ପ୍ରଧାନ ପ୍ରତିବନ୍ଧକ ଯୋଗୁ ଉତ୍କଳରେ ଏପର୍ଯ୍ୟନ୍ତ କୌଣସି ଉଲ୍ଲେଖଯୋଗ୍ୟ ଜାତୀୟ ଶିଳ୍ପାନୁଷ୍ଠାନ ଗଠିତ ହୋଇ ପାରି ନାହିଁ—କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ପ୍ରତିକାର

ବର୍ତ୍ତମାନ ଏ ଦଗରେ କଣ କରବାକୁ ହେବ ? କି କି ଉପାୟ ଦ୍ୱାରା ଉତ୍କଳର ବଭିନ୍ନ ସ୍ଥାନରେ, ଜାତୀୟ ଶିଳ୍ପର ଉନ୍ନତି ନମନ୍ତେ ବଭିନ୍ନ ପ୍ରକାର କୁଟୀର ଶିଳ୍ପାନୁଷ୍ଠାନମାନ ସ୍ଥାପନ କରାଯାଇପାରେ ଏବଂ କପରି ଚେଷ୍ଟା କଲେ ଏ ଦେଶର ଜାତୀୟ ସମ୍ପଦ ବଢ଼ିବ ଓ ସଙ୍ଗେ ସଙ୍ଗେ ଅସଂଖ୍ୟ ଅକର୍ମା ଏବଂ କୁଳ ସୁବଧାରେ କାର୍ଯ୍ୟ ଖଣ୍ଡିଏ ଖଣ୍ଡିଏ ପାଇ ପେଟ ପୋଷି ହୁଅନ୍ତେ ? ଉତ୍କଳର ଲକ୍ଷାଧିକ ପାଠକ ଜାତର ଲୋକମାନେ ସ୍ୱ ସ୍ୱ ବୃତ୍ତି କରପାରନ୍ତେ ? ଦେଶରେ କୌଣସି ନୂତନ ଶିଳ୍ପାନୁଷ୍ଠାନ ସ୍ଥାପନ କରବା ପୂର୍ବରୁ ଏଇ କେତୋଟି ପ୍ରଶ୍ନର ଉତ୍ତର ପ୍ରଥମେ ଯୋଗାଇବାକୁ ହେବ । ଗତ ୮ । ୧୦ ବର୍ଷ ମଧ୍ୟରେ ଉତ୍କଳର ସ୍ଥାନେ ସ୍ଥାନେ ଅଳ୍ପ କେତୋଟି ଶିଳ୍ପାନୁଷ୍ଠାନ ସ୍ଥାପିତ ହୋଇଥିଲ ସତ୍ୟ, କନ୍ତୁ ଏଗୁଡ଼କୁ ପ୍ରତିଷ୍ଠା କରବା ପୂର୍ବରୁ ଉପର୍ଯ୍ୟୁକ୍ତ ପ୍ରଶ୍ନରେ ସୂଚିତ କେତେକ ଅଭାବ, ଅସୁବଧା ଓ କାର୍ଯ୍ୟକମର ସୁପରଚାଳନା ସମ୍ବନ୍ଧରେ ବଶେଷ ସତର୍କତା ଅବଲମ୍ବନ କରାଯାଇ ନ ଥିବାରୁ ସେଇ ଅନୁଷ୍ଠାନଗୁଡ଼କ ଅତି ଅଳ୍ପ ସମୟରେ ଭାଙ୍ଗି ଯାଇଅଛି । କନ୍ତୁ ବର୍ତ୍ତମାନ ଭାରତ ତଥା ପୃଥିବୀର ସବୁ ଦେଶରେ ଓ ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ କଳକାରଖାନା ଦ୍ୱାରା ତିଆର ହେବା ଜନଷ ଅପେକ୍ଷା କେବଳ ଜାତୀୟ କୁଟୀର ଶିଳ୍ପ ଦ୍ୱାରା ତିଆର ହେଉଥିବା ଜନଷର ଆଦର ବଢ଼ୁଥିବା ସମୟରେ ଉତ୍କଳର ଶିଳ୍ପୀ ଓ ଦେଶହୃତୈଷୀମାନେ ଯେ ନୀରବ ହୋଇ ରହିବେ, ସମ୍ଭବପର ନୁହେ ।

ବର୍ତ୍ତମାନ ଉତ୍କଳର ଜାତୀୟ ଶିଳ୍ପୋନ୍ନତି ଦଗରେ କଣ କରବାକୁ ହେବ, ସେ କଥା ଏଠାରେ ବର୍ଣ୍ଣିତ ହେବ—

୧ । **ସଂଘ ଗଠନ**—ଯେ କୌଣସି ଶିଳ୍ପ ବା ବ୍ୟବସାୟ ହେଉ, ବ୍ୟକ୍ତିଗତ ଚେଷ୍ଟା ଅପେକ୍ଷା ସମବେତ ଚେଷ୍ଟା ଦ୍ୱାରା ବଶେଷ ଉନ୍ନତି ହେବାର ସମ୍ଭବ ଦେଖାଯାଏ । ଅତଏବ ଉତ୍କଳରେ କୌଣସି ପ୍ରକାର ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରବା ପୂର୍ବରୁ ସ୍ଥାନେ ସ୍ଥାନେ ଅସଂଖ୍ୟ "ଶିଳ୍ପସଂଘ" (Industrial Association) ଗଢ଼ିବାକୁ ହେବ । ଆଜକାଲ ଭାରତର ପ୍ରତ୍ୟେକ ପ୍ରଦେଶରେ "ସ୍ୱଦେଶୀ କଣ ସଂଘ" (Buy India Leagues) ମାନ ଗଠିତ ହେଉଛି । ଦେଶର ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ 'ସ୍ୱ-ଦେଶୀ' ଜନଷର ବହୁଳ ପ୍ରଚାର ନମନ୍ତେ ଏଇ ସଂଘଗୁଡ଼କ ବଶେଷ ଚେଷ୍ଟା କରନ୍ତି । ଆମ ଉତ୍କଳରେ ମଧ୍ୟ ଏପରି କେତୋଟି ସଂଘ ଗଠିତ ହେଲେ ଉତ୍କଳର ଶିଳ୍ପାନୁଷ୍ଠାନମାନଙ୍କର ଭାର ସେଇ ସଂଘ ହାତେ ରହିବ

ଓ ଉତ୍ପାଦ ଶିଳ୍ପୀ, ବ୍ୟବସାୟୀ ଏବଂ ଦେଶବାସୀ ଦେଶୀୟ ଶିଳ୍ପ ଜନପଣ୍ୟଙ୍କୁ ସୁବିଧାରେ ପାଇବେ ।'

୨ । **ପାଣ୍ଠି ସଂଗ୍ରହ**—ଯେ କୌଣସି ଅନୁଷ୍ଠାନ ଗଢ଼ିବା ପୂର୍ବରୁ ପ୍ରଥମେ ଯଥେଷ୍ଟ ପାଣ୍ଠି (Funds) ସଂଗ୍ରହ କରିବାକୁ ହେବ । ଯଥେଷ୍ଟ ଧନ ଅଭାବରେ କୌଣସି ଅନୁଷ୍ଠାନ ବହୁତ ଦିନଯାଏ ନିର୍ବିଘ୍ନରେ ଚଳିପାରେ ନାହିଁ । ଅତଏବ ପ୍ରୋକ୍ତ ସଂଘର ପ୍ରଧାନ କର୍ତ୍ତବ୍ୟ ହେଉଛି ଯଥେଷ୍ଟ ପାଣ୍ଠି ସଂଗ୍ରହ ।

"ଉତ୍କଳ ଗୋଟିଏ ଦରିଦ୍ର ଦେଶ ଓ ଏଠାରେ ପାଣ୍ଠି ସଂଗ୍ରହ କରିବାର ଜେତେ ସୁବିଧା ନାହିଁ" ବୋଲି କେଇ କେଇ କହି ପାରନ୍ତି । କିନ୍ତୁ ପ୍ରତିଦିନ ଆମ ଦେଶବାସୀ କେବଳ ବିଳାସ ଓ ଅନେକ ପ୍ରକାର ଆମୋଦ ପ୍ରମୋଦ ନେଇ ଯେପରି ହଜାର ହଜାର ବା ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି, ସେ ତୁଳନାରେ ଉତ୍କଳକୁ "ଦରିଦ୍ର ଦେଶ" ବୋଲି କିଏ କହିବ ? ବିଳାସ ଓ ଆମୋଦ ପ୍ରମୋଦରେ ଯେଉଁ ଟଙ୍କା ଖର୍ଚ୍ଚ ହୁଏ, ତାହାର କ୍ଷୁଦ୍ରତମାଂଶରେ ନାନା ପ୍ରକାର ଶିଳ୍ପାନୁଷ୍ଠାନମାନ ସ୍ଥାପନ କରିଯାଇ ପାରେ । ପୁଣି ଆମ ଦେଶର ରାଜା ମହାରାଜା ଓ ଧନକୁବେରମାନେ ଯେଉଁ ଟଙ୍କା ଗଚ୍ଛିତ ରଖନ୍ତି କିମ୍ବା ବୈଦେଶିକ ବଣିକ ବା ବ୍ୟବସାୟୀମାନଙ୍କୁ ଧାର ଦେଇ ନିଶ୍ଚିନ୍ତ ରହନ୍ତି, ସେମାନେ ଉତ୍କଳର ଏଇ ଶିଳ୍ପୋନ୍ନତି ଦିଗରେ ବିଶେଷ ସାହାଯ୍ୟ କଲେ ସେମାନଙ୍କ ଗଚ୍ଛିତ ଟଙ୍କାର ଯେ ଅଧିକ ସଦ୍‌ବ୍ୟବହାର ହେବ, ସନ୍ଦେହ ନାହିଁ । ଏ ସମ୍ବନ୍ଧରେ କଲିକତା "କାଚ ଶିଳ୍ପାଗାର"ର ପ୍ରଧାନ କର୍ମକର୍ତ୍ତା ମି. ଡି. ଏନ୍. ସେନ କହନ୍ତି:—

"We are raising funds for various purposes but have we ever thought of spending one dirty copper for helping our country's industries ? We will not help them with finance and we will not even purchase their articles. We do not even know what things are being manufactured in our country." *

ଯେଉଁମାନଙ୍କର ଧନ ଦୌଲତ ଅଛି, ଅଥଚ କିଛି କରି ନ ପାରନ୍ତି, ସେପରି ଧନକୁବେରମାନେ ଅକୁଣ୍ଠିତ ଚିତ୍ତରେ ନିଜର ସାହାଯ୍ୟ ପ୍ରଦାନ କଲେ ଉତ୍କଳର ପ୍ରତ୍ୟେକ ସ୍ଥାନରେ କୁଟୀରଶିଳ୍ପାଗାରମାନ ଅକ୍ଳେଶରେ ସ୍ଥାପିତ ହେବ ।

---

* Vide. "A few plain words—Swadeshi first, Swadeshi second and Swadeshi always." by Mr. D. N. Sen, Director, Bengal Glass Works Ltd. A. B. P 5/6/32

**୩ । ସହଯୋଗିତା**—ସଙ୍ଗଠନ ଓ ପାଣ୍ଠିସଂଗ୍ରହ ପରେ ଦେଶର କେଉଁ ସ୍ଥାନରେ କି କି ପ୍ରକାର ଶିଳ୍ପ କରାଯାଇ ପାରେ, ତହିଁର ବିଶେଷ ସମ୍ବାଦ ସଂଗ୍ରହ କରି ସେହି ଅନୁସାରେ କେତୋଟି ଆଦର୍ଶ ଶିଳ୍ପାଗାର ସ୍ଥାପନ କରିବାକୁ ହେବ । ଏହି ଅନୁଷ୍ଠାନଗୁଡ଼ିକର ଉନ୍ନତି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସ୍ଥାନରେ ତହିଁର ଶାଖା ଅନୁଷ୍ଠାନମାନ ସ୍ଥାପନ କରିବାକୁ ହେବ । ଏହି ସବୁ ଅନୁଷ୍ଠାନଗୁଡ଼ିକରେ ତିଆରି ହେବା ଶିଳ୍ପଜିନିଷଗୁଡ଼ିକର ବିଶେଷ ସଦ୍‌ବ୍ୟବହାର କରିବା ନିମନ୍ତେ ସ୍ଥାନୀୟ ଜିଲ୍ଲାବୋର୍ଡ୍‌ ଓ ମ୍ୟୁନିସିପାଲିଟିଗୁଡ଼ିକର ସହଯୋଗିତା ( Co-operation ) ଓ ସହାନୁଭୂତି ଲୋଡ଼ିବାକୁ ହେବ । ଆଜିକାଲି ଆମ ଦେଶର ମ୍ୟୁନିସିପାଲିଟି, ଲୋକାଲ ବୋର୍ଡ଼ ଓ ଜିଲ୍ଲା ବୋର୍ଡ଼ମାନ ସ୍ୱାୟତ୍ତ ଶାସନର ( Local Self Government ) ଗୋଟିଏ ଗୋଟିଏ ପ୍ରଧାନ ଅଙ୍ଗ ହୋଇ କାର୍ଯ୍ୟ କରେ । ଦେଶର ସର୍ବାଙ୍ଗୀଣ କଲ୍ୟାଣ କରିବା ଏ ବୋର୍ଡ୍‌ ସଭ୍ୟମାନଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ ଅଟେ । ପ୍ରତ୍ୟେକ ବୋର୍ଡ୍‌ ଅଧୀନରେ ଶତାଧିକ ସ୍କୁଲ, ଡାକ୍ତରଖାନା ଓ ଅନ୍ୟାନ୍ୟ ଅନୁଷ୍ଠାନମାନ ରଖା ଯାଇଛି । ଏହି ସବୁ ଅନୁଷ୍ଠାନରେ କେବଳ ଦେଶୀ ଶିଳ୍ପର ଜିନିଷଗୁଡ଼ିକୁ ବ୍ୟବହାର କରାଇବା ଭାର ଆମ ଦେଶ ମ୍ୟୁନିସିପାଲିଟି ଓ ବୋର୍ଡ୍‌ ସଭ୍ୟମାନଙ୍କ ହାତରେ ଅଛି । ଅତଏବ, ଏହି ଅନୁଷ୍ଠାନଗୁଡ଼ିକଦ୍ୱାରା ନିଜର ଶିଳ୍ପ ଜିନିଷଗୁଡ଼ିକୁ ବ୍ୟବହାର କରାଇବା ନିମନ୍ତେ ପ୍ରୋକ୍ତ ସଙ୍ଘ ଦେଶବାସୀଙ୍କ ସଙ୍ଗେ ସହଯୋଗୀ ହୋଇ କାର୍ଯ୍ୟ କରିବାକୁ ହେବ ।

**୪ । ଦେଶୀ ଶିଳ୍ପପ୍ରତି ଅନୁରାଗ**—ଏପର୍ଯ୍ୟନ୍ତ ଆମ ଦେଶବାସୀ ଦେଶୀ ଶିଳ୍ପର ସଦ୍‌ବ୍ୟବହାର କରି ଜାଣନ୍ତି ନାହିଁ । ଏଥିର ପ୍ରଧାନ କାରଣ ମଧ୍ୟରୁ (କ) ଜାତୀୟ ଶିଳ୍ପ ପ୍ରତି ସେମାନଙ୍କର ଉଦାସୀନ ଭାବ ଏବଂ (ଖ) ସେମାନଙ୍କର ଅଜ୍ଞାନତା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । * ବର୍ତ୍ତମାନ ଭାରତର ଅନ୍ୟାନ୍ୟ ପ୍ରଦେଶରେ ଯେପରି "ସ୍ୱଦେଶୀ" ପ୍ରଚାର ଚାଲିଛି ଏବଂ ପ୍ରତ୍ୟେକ ଶିକ୍ଷିତ ଲୋକ ଜାତୀୟ ଶିଳ୍ପ ଜିନିଷର ସଦ୍-

* ମି. ସେନ୍ ଲେଖିଛନ୍ତି:—

"A Londoner in France would always buy from a British firm and would take pride in guying goods manufactured in his own country. **An Indian would not care what things he purchases and would not particularly insist on his supplier for country made goods.** Is it ignorance or is it lethergy ? × × "

ବ୍ୟବହାର କରିବା ପାଇଁ ଇଚ୍ଛୁକ ଦେଖାଯାନ୍ତି, ଏପରି ଅବସ୍ଥାରେ ଆମ ଉତ୍କଳବାସୀ ଯେପରି ଏହି ଜାତୀୟ ଶିଳ୍ପ ପ୍ରତି ବିଶେଷ ଅନୁରକ୍ତ ହୁଅନ୍ତି, ତହିଁର ବିଶେଷ ଯୋଗାଡ଼ କରିବାକୁ ହେବ । ଯଦି ଥରେ କୌଣସି ଦେଶୀୟ ଜିନିଷ ପ୍ରତି ଲୋକମାନଙ୍କର ଅନୁରାଗ ବୃଦ୍ଧି ହୁଏ, ତେବେ ସେଇ ଶିଳ୍ପର କମୋନ୍ନତି ଯେ ଅଚିରେ ଘଟିବ, ସନ୍ଦେହ ନାହିଁ ।

୬ । ପ୍ରଚାର - ଦେଶରେ କୁଟୀର ଶିଳ୍ପାନୁଷ୍ଠାନମାନ ଯେତେସଂଖ୍ୟକ ସ୍ଥାପିତ ହୁଏ, ସେଠାରେ ତିଆରି ହେବା ଜିନିଷଗୁଡ଼ିକ ବିକ୍ରି କରିବାପାଇଁ ତେତେ ପ୍ରଚାର ( **Propaganda** ) କରିବାକୁ ହେବ । ବିନା ପ୍ରଚାରରେ କୌଣସି ଜିନିଷ ବିକ୍ରି ହେବ ନାହିଁ କି କୌଣସି ଶିଳ୍ପାନୁଷ୍ଠାନ ବେଶି ଦିନ ଯାଏ ବଞ୍ଚି ରହିବ ନାହିଁ । ଜାତୀୟ ଶିଳ୍ପ ଜିନିଷର ପ୍ରଚାର ନିମ୍ନ କେତେକ ସ୍ଥାନରେ କରିବାକୁ ହେବ :—

( କ ) ବଜାର, ଦୋକାନ ଓ ହାଟରେ—ଆମ ଦେଶର ବଜାର, ଦୋକାନ ଓ ହାଟଗୁଡ଼ିକ ଏପର୍ଯ୍ୟନ୍ତ କୌଣସି ଶୃଙ୍ଖଳାବଦ୍ଧ ନିୟମ ଦ୍ୱାରା ଚାଳିତ ହେଉଥିବାର ଜଣାଯାଏ ନାହିଁ । ଏକାଧିକ ହାଟ ନିତାନ୍ତ ମଫସଲରେ ବସୁଥିଲେହେଁ ସେଠାରେ କୌଣସି ପ୍ରକାର ଦେଶୀ ଶିଳ୍ପ ଜିନିଷ ମିଳେ ନାହିଁ—ବରଂ ସେଠାରେ ୟୁରୋପ, ଆମେରିକା ଓ ଜାପାନ ପ୍ରଭୃତି ଦେଶର ବିଭିନ୍ନ ପ୍ରକାର ମନୋହର ଓ ସୌଖିନ୍ ଜିନିଷମାନ ବିକ୍ରି ହୁଏ । ଦେଶୀ ଜିନିଷର ସଦ୍‌ବ୍ୟବହାର କଥା ଏପର୍ଯ୍ୟନ୍ତ ଆମ ଦେଶବାସୀ ଜାଣି ନ ଥିବାରୁ, ବିଶେଷତଃ ଦେଶୀ ଅପେକ୍ଷା ବିଦେଶୀ ଜିନିଷଗୁଡ଼ିକ ଦେଖିବାକୁ ଚକ୍ ଚକ୍ ଦେଖାଯିବାରୁ ସେଗୁଡ଼ିକୁହିଁ ଆମ ଦେଶର ପଲ୍ଲୀବାସୀ ବିଶେଷ ଆଦରରେ କିଣନ୍ତି । ତଦ୍ଦ୍ୱାରା ଆମ ଜାତୀୟ ଶିଳ୍ପର ଅବନତି ହେବା ସଙ୍ଗେ ସଙ୍ଗେ ଏ ଦେଶର ପ୍ରତ୍ୟେକ ପଲ୍ଲୀରେ ବିଦେଶୀ ଜିନିଷର ପ୍ରଚାର ଦିନୁଦିନ ବଢୁଛି । ଅତଏବ ଦେଶର ଏହି ହାଟ, ଦୋକାନ ଓ ବଜାର ପ୍ରଭୃତି ସ୍ଥାନରେ ଯେପରି ପ୍ରଚୁର ପରିମାଣ ଦେଶୀ ଶିଳ୍ପ ଜିନିଷ ବିକ୍ରି ହୁଏ, ସେ ଦିଗରେ ବିଶେଷ ଚେଷ୍ଟା କରିବାକୁ ହେବ ।

( ଖ ) ଏ ଦେଶରେ ହଜାର ହଜାର ସ୍କୁଲ୍ ଅଛି । ସେଠାରେ ଲକ୍ଷ ଲକ୍ଷ ଛାତ୍ର ପାଠ ପଢ଼ନ୍ତି । ଅଧିକାଂଶ ଛାତ୍ର କେବଳ ନିତାନ୍ତ ମଫସଲରୁ ଆସି ଏହି ସ୍କୁଲଗୁଡ଼ିକରେ ପଢ଼ନ୍ତି । ଏହି ଛାତ୍ରମାନଙ୍କ ମଧ୍ୟରେ ଜାତୀୟ ଶିଳ୍ପର ପ୍ରଚାର ଓ ଜାତୀୟ ଶିଳ୍ପ ଜିନିଷଗୁଡ଼ିକ ବ୍ୟବହାର କଲେ ଦେଶରେ ଜାତୀୟ ସମ୍ପଦ କିପରି ବୃଦ୍ଧି ଲାଭ କରିବ ଓ ତଦ୍ଦ୍ୱାରା ଦେଶର ଅକର୍ମୀ ଓ କୁଲିଙ୍କ ସଂଖ୍ୟା କିପରି ଊଣା ହେବ—ଇତ୍ୟାଦି ବିଷୟ ନେଇ ପ୍ରଚାର କରିବାକୁ ହେବ । ଜାତୀୟ ଶିଳ୍ପର ମହତ୍ତ୍ୱ ଥରେ ବୁଝିଗଲେ ଆମ ଦେଶର ଛାତ୍ରମାନେ ଯେ ଏ ଦିଗରେ ବିଶେଷ ଚେଷ୍ଟା କରିପାରନ୍ତି, ସନ୍ଦେହ ନାହିଁ ।

ଛାତ୍ରମାନଙ୍କ ମଧ୍ୟରେ ଜାତୀୟ ଶିଳ୍ପର କେବଳ ପ୍ରଚାର କରି ତୁନି ହେଲେ ଯଥେଷ୍ଟ ନୁହେ । ସେହି ଛାତ୍ରମାନେ ଯେପରି କେତୋଟି ଶିଳ୍ପର ପ୍ରଧାନ ଉପାସକ ହୁଅନ୍ତି, ସେ ଦିଗରେ ମଧ୍ୟ ଚେଷ୍ଟା କରିବାକୁ ହେବ । ଆଜିକାଲି ସରକାରୀ କିମ୍ବା ଅନ୍ୟ କୌଣସି ଚାକିରି କରିବା ଯେପରି ଅସମ୍ଭବ ହୋଇପଡ଼ିଛି, ଏପରି ସ୍ଥଳେ ସ୍କୁଲ ଶିକ୍ଷା ଶେଷ କରିବା ପୂର୍ବରୁ ପ୍ରତ୍ୟେକ ଛାତ୍ର ଯେପରି କୌଣସି ଗୋଟିଏ ହସ୍ତ ଶିଳ୍ପ ଶିକ୍ଷା କରିପାରିଥାଏ, ସେ ଦିଗରେ ମଧ୍ୟ ଚେଷ୍ଟା କରିବାକୁ ହେବ ।

( ଗ ) ସ୍କୁଲ ଓ ହାଟ ବଜାର ବ୍ୟତୀତ ସାଧାରଣ ଲୋକମାନଙ୍କ ମଧ୍ୟରେ କୁଟୀର ଶିଳ୍ପର ବିଶେଷତ୍ୱ ସମ୍ବନ୍ଧରେ ବିଶେଷ ପ୍ରଚାର ମଧ୍ୟ କରିବାକୁ ହେବ । ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ଘରେ ସୁବିଧାରେ କରିବାକୁ ହୁଏ ଏବଂ କେବଳ ଜାତୀୟ ଶିଳ୍ପ ଜିନିଷ-ଗୁଡ଼ିକୁ ବ୍ୟବହାର କଲେ ଆମ ଦେଶର ଅକର୍ମୀ ସମସ୍ୟା ଓ ଆର୍ଥିକ ଦୁରବସ୍ଥା କିପରି ଦୂର ହେବ, ସେ କଥା ଗ୍ରାମବାସୀଙ୍କୁ ବାରମ୍ବାର ବୁଝାଇ କହିବାକୁ ହେବ ।

( ଘ ) ବ୍ୟକ୍ତିଗତ ପ୍ରଚାର ସଙ୍ଗେ ସଙ୍ଗେ ସମ୍ବାଦପତ୍ର, ହସ୍ତପତ୍ର (Hand bills) ଓ ଚିତ୍ରବହୁଳ ଲେଖା ସେଗୁଡ଼ିକୁ ଲୋକମାନଙ୍କ ମଧ୍ୟରେ ବିନା ମୂଲ୍ୟରେ ବିତରଣ କରିବାକୁ ହେବ । ତଦ୍ୱାରା ଶିକ୍ଷିତ ଲୋକମାନେ କୁଟୀର ଶିଳ୍ପର ବିଶେଷତ୍ୱ ସହଜରେ ବୁଝିପାରନ୍ତି ।

( ଙ ) ସୁବିଧା କରି ଆଜିକାଲି ଆମେରିକା ଓ ୟୁରୋପ ପରି ବେତାର ଯନ୍ତ୍ର (Broad casting) ଦ୍ୱାରା କିମ୍ବା ଛବି ଆଲୋକ (Magic Lantern) ବା ଚଳଚ୍ଚିତ୍ର ସାହାଯ୍ୟରେ ଏହି ପ୍ରଚାର କରିବାକୁ ହେବ ।

**୬ । ପାଟକକୁଳର ଉତ୍ଥାନ**—ଯେ କୌଣସି ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରିବା ପୂର୍ବରୁ ପ୍ରଥମେ ଦେଶର ପ୍ରାଚୀନ ଶିଳ୍ପୀ ଓ କାରିଗରମାନଙ୍କୁ ସଚେତ କରିବାକୁ ହେବ । ଆମ୍ଭେମାନେ ସ୍କୁଲ କଲେଜରେ ଯେତେ ଉଚ୍ଚଶିକ୍ଷା ପାଇ ଯେତେ ଉଚ୍ଚଡିଗ୍ରୀ ପାଇଲେ ସୁଦ୍ଧା ଶିଳ୍ପକଳାଦିର ବିଶେଷ ଜ୍ଞାନ ଲାଭ କରିବା ପାଇଁ ସେହି ପ୍ରାଚୀନ ଶିଳ୍ପୀମାନଙ୍କର ସାହାଯ୍ୟ ଲୋଡ଼ିବାକୁ ହେବ । ତା ନ ହେଲେ ଅମ୍ଭମାନଙ୍କର କର୍ତ୍ତବ୍ୟ ସଂପୂର୍ଣ୍ଣ ହେବ ନାହିଁ । ଆମ ଦେଶର ପାଟକକୁଳ ନିତାନ୍ତ ଅଶିକ୍ଷିତ ଅଟନ୍ତି ସତ୍ୟ; ତଥାପି ସେମାନଙ୍କ ଠାରେ ଶିଳ୍ପ-କଳାଦିର ବିଶେଷ ଜ୍ଞାନ ( Expert Knowledge ) ଲୁକ୍କାୟିତ ଭାବରେ ରହିଛି । ସେହି

ଜ୍ଞାନ ସେମାନଙ୍କର ବଂଶ ବା ଜାତିଗତ ଜ୍ଞାନ ଥିବାରୁ ତାହାର ପୁନରୁଦ୍ଧାର କରିବାକୁ ହେବ । ନିଜର କର୍ତ୍ତବ୍ୟ ଜ୍ଞାନ ବୁଝିପାରିଲେ ଆମ ଦେଶର କାରିଗରମାନେ ଯେ ଅଚିରେ ଅତି ସୁନ୍ଦର ଓ ଉନ୍ନତ ଶିଳ୍ପକାର୍ଯ୍ୟମାନ କରିପାରନ୍ତି, ସନ୍ଦେହ ନାହିଁ ।

ଶିଳ୍ପ କଳାର ବିଶେଷ ଶିକ୍ଷା ଦେବା ପାଇଁ ଆଜିକାଲ୍ ଭାରତ ତଥା ପୃଥିବୀର ବିଭିନ୍ନ ସ୍ଥାନରେ ଅସଂଖ୍ୟ ସ୍କୁଲ୍ କଲେଜ ସ୍ଥାପିତ ହୋଇଛି । ଯେ କୌଣସି ଯୁବକ ଯୁବତୀ ଏହି ସ୍କୁଲ୍ କଲେଜରେ ଶିକ୍ଷା ଲାଭ କଲେ ଏହି ବିଦ୍ୟାଗୁଡ଼ିକ ଶିକ୍ଷା କରି ହେବ । କିନ୍ତୁ ଏହି ସ୍କୁଲ୍ କଲେଜର ନିର୍ଘଣ୍ଟ ( Routine ) ଅନୁସାରେ ଯେଉଁମାନେ ଶିକ୍ଷା ପାଆନ୍ତି, ସେମାନଙ୍କର ସମୟନାଶ ହେବା ସଙ୍ଗେ ସଙ୍ଗେ ପ୍ରଚୁର ଧନ ମଧ୍ୟ ନଷ୍ଟ ହୁଏ । ଯେଉଁ ସମୟରେ ସେମାନେ ଶିଳ୍ପ ଶିକ୍ଷା କରିବା ସଙ୍ଗେ ଅର୍ଥଲାଭର ଉପାୟମାନ ଜାଣି ପାରନ୍ତେ, ଠିକ୍ ସେହି ସମୟରେ ପ୍ରଚୁର ଅର୍ଥ ଶ୍ରାଦ୍ଧ ଓ ସମୟ ନଷ୍ଟ କରି ସ୍କୁଲ୍ କଲେଜରେ ପଢ଼ନ୍ତି । ଏପରି ଅଯଥା କ୍ଷତିଗ୍ରସ୍ତ ହେବା ଅପେକ୍ଷା ଆବାଲ୍ୟ ଯେଉଁମାନେ ଶିଳ୍ପକାର୍ଯ୍ୟମାନ କରନ୍ତି, ସେମାନେ ଅଚିରେ ଜଣେ ଜଣେ ବିଶେଷଜ୍ଞ (Expert) ଶିଳ୍ପୀ ବା କାରିଗର ହୁଅନ୍ତି । ଏ ସମ୍ବନ୍ଧରେ ୟୁରୋପର ଜଣେ ପ୍ରସିଦ୍ଧ ଅନୁଭବୀ କହନ୍ତି:—

"I see no need for the public school and university education for the youngster who is going into industry. They equip him with learning that is of little practical value, and they take up valuable years-time that should be spent in earning instead of spending.

"Why should a young man stay at school until twenty-one or two ? By that time, he might have worked his way up into a position where he can command respect and a salary. As it is, the average university product is valueless in business, and has to begin like some glorified office boy." *

ଏପରି ଅବସ୍ଥାରେ ଆମ ଦେଶର ବିଭିନ୍ନ ପାଠକକୁଳର ପୁଅ ଝିଅଙ୍କୁ ଆବାଲ୍ୟ ଶିଳ୍ପ ଜ୍ଞାନ ଦେବା ପାଇଁ ସେହି ଜାତିର ପ୍ରାଚୀନ ଶିଳ୍ପୀମାନଙ୍କୁ ସଚେତ କରିବାକୁ ହେବ । ତଦ୍ଦ୍ୱାରା ସେମାନଙ୍କ ମଧ୍ୟରେ ଅକର୍ମୀ ଓ କୁଲିଙ୍କ ସଂଖ୍ୟା ଦିନୁଦିନ କମ୍ ହେବ ।

* "Sir Thomas Lipton in an Interview" A. B. P. 31

**୭ । ବିଶେଷ ଶିକ୍ଷା ପାଇଁ ବ୍ୟବସ୍ଥା**—ପାଠକଗଣଙ୍କର ପୁଅ ଝିଅଙ୍କ ବ୍ୟତୀତ ଉତ୍କଳର ଧନୀ ଓ ମଧ୍ୟବିତ୍ତ ଲୋକମାନଙ୍କର ପୁଅ ଝିଅମାନେ ଯେପରି ଉଚ୍ଚ ଶିକ୍ଷା ଲାଭ କରି ଦେଶବିଦେଶକୁ ଯାଇ ସେଠାରେ ଶିଳ୍ପ ଶାସ୍ତ୍ରର ବିଶେଷ ଜ୍ଞାନ (Expert Knowledge) ଲାଭ କରନ୍ତି, ତହିଁର ବ୍ୟବସ୍ଥା କରିବାକୁ ହେବ । ଉତ୍କଳ ଓ ଓଡ଼ିଶା ଗଡ଼ଜାତରେ ମିଳୁଥିବା କଞ୍ଚାମାଲଗୁଡ଼ିକୁ କେବଳ "କୁଟୀର ଶିଳ୍ପ" ପାଇଁ କିପରି ବ୍ୟବହାର କରାଯାଇପାରେ, ଏହି ଶିକ୍ଷା ସେମାନେ ୟୁରୋପ, ଆମେରିକା ଓ ଜାପାନ ପ୍ରଭୃତି ଦେଶରେ ଶିକ୍ଷା କରିପାରନ୍ତେ । ତଦ୍ଦ୍ୱାରା ଏ ଦେଶର ପ୍ରାୟ ସବୁ ପ୍ରକାର କଞ୍ଚା ମାଲ ଏଠାରେହିଁ ରପ୍ତାନି କାର୍ଯ୍ୟ କରାଯାଇପାରେ ।

**୮ । ଶିଳ୍ପ ସ୍କୁଲର ବ୍ୟବସ୍ଥା**—ଏ ଦେଶର ଶିଳ୍ପୀମାନେ ନିଜ ନିଜର ବ୍ୟବସାୟକୁ ପୁନର୍ଜୀବିତ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଅକର୍ମା ଓ ଧନୀ ଯୁବକମାନଙ୍କୁ ଆଦର୍ଶ ଶିଳ୍ପ ଶିକ୍ଷା ଦେବା ପାଇଁ କେତୋଟି 'ଶିଳ୍ପ ସ୍କୁଲ' ( Industrial School ) ସ୍ଥାପନ କରିବାକୁ ହେବ । ନିକଟ ଭବିଷ୍ୟତରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବା ସଙ୍ଗେ ସଙ୍ଗେ ଏପରି ଗୋଟିଏ ସ୍କୁଲ ଉତ୍କଳର କେନ୍ଦ୍ର ସ୍ଥାନରେ ସ୍ଥାପିତ ହେଲେ ଅନେକ ଯୁବକ ସେଠାରେ "ଆଦର୍ଶ ଶିଳ୍ପ ଜ୍ଞାନ" ଲାଭ କରନ୍ତେ ଓ ସେଠାରୁ ଯାଇ ନିଜ ନିଜ ଗ୍ରାମରେ ସେହି ଶିକ୍ଷାର ସଦ୍‌ବ୍ୟବହାର କରନ୍ତେ ।

**୯ । ଅନୁସନ୍ଧାନ**—ଦେଶର ବିଭିନ୍ନ ସ୍ଥାନରେ ଶିଳ୍ପାନୁଷ୍ଠାନମାନ ସ୍ଥାପିତ ହେବା ସଙ୍ଗେ ସଙ୍ଗେ ଏଠାରେ ମିଳୁଥିବା କଞ୍ଚା ମାଲଗୁଡ଼ିକ ସମ୍ବନ୍ଧରେ ବିଶେଷ ଅନୁସନ୍ଧାନ ( Research ) କରିବା ପାଇଁ ଯୋଗାଡ଼ କରିବାକୁ ହେବ । ଏହି ଅନୁସନ୍ଧାନ ଦ୍ୱାରା ଅନେକଗୁଡ଼ିଏ କାର୍ଯ୍ୟ ଆହୁରି ସୁନ୍ଦର ଓ ସୁବିଧାରେ କରାଯାଇ ପାରେ ।

**୧୦ ।** ପରିଶେଷରେ, ଦେଶର ଆବାଲବୃଦ୍ଧବନିତା ଯେପରି ଆମ ଦେଶର ଜାତୀୟ ଶିଳ୍ପ ଜିନିଷର ସଦ୍‌ବ୍ୟବହାର କରନ୍ତି, ତହିଁର ବିଶେଷ ଯୋଗାଡ଼ କରିବାକୁ ହେବ । ଏପର୍ଯ୍ୟନ୍ତ ଉତ୍କଳରେ ଏପରି କୌଣସି ସମ୍ବାଦପତ୍ର ନାହିଁ, ଯାହା ପାଠ କରି ଦେଶବାସୀ ବିଭିନ୍ନ ପ୍ରକାର ଶିଳ୍ପ ସମ୍ବନ୍ଧରେ ବିଶେଷ ଜ୍ଞାନ ଲାଭ କରନ୍ତେ । ଆଜି ପୃଥିବୀର ଯେ କୌଣସି ଦେଶକୁ ଦେଖନ୍ତୁ, କେବଳ ବହୁଳ ପ୍ରଚାର ଦ୍ୱାରା ସେହି ସେହି ଦେଶର ଶିଳ୍ପ, କଳା, ସାହିତ୍ୟ ଓ ଅନ୍ୟାନ୍ୟ ବିଷୟଗୁଡ଼ିକ ସେଠା ଅଧିବାସୀଙ୍କ ମଧ୍ୟରେ ବିଶେଷ ଆଦର ପାଇଛି ଓ ପାଉଛି । କିନ୍ତୁ ଆମ ଦେଶରେ ସେପରି କୌଣସି ସୁବିଧା ଏପର୍ଯ୍ୟନ୍ତ ହୋଇ

ନାହିଁ । ବିଭିନ୍ନ ଶିଳ୍ପ ବିଷୟ ନେଇ ପୁସ୍ତକ ପ୍ରଣୟନ, ଦେଶୀୟ ଶିଳ୍ପଜାତ ଦ୍ରବ୍ୟର ବହୁଳ ପ୍ରଚାର ଦ୍ୱାରା ଅକର୍ମୀଙ୍କ ସଂଖ୍ୟା କପରି କମିଯିବ, ଦେଶର ଜାତୀୟ ସମ୍ପଦ କପରି ବୃଦ୍ଧି ଲାଭ କରିବ ଏବଂ ଦେଶର ଶିଳ୍ପୀମାନେ କପରି ସୁଖରେ ଜୀବନ କଟାଇପାରିବେ, ଇତ୍ୟାଦି ବିଷୟ ନେଇ ବାରଂବାର ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶ କରି ଲୋକମାନଙ୍କୁ ଶିକ୍ଷିତ କରାଇବାକୁ ହେବ । ତଦ୍ଦ୍ୱାରା ଯେ କୌଣସି ଶିଳ୍ପାନୁଷ୍ଠାନର ବିଶେଷ ଉନ୍ନତି ହେବ ଏବଂ ଦେଶବାସୀ କେବଳ ଜାତୀୟ ଶିଳ୍ପ ଜିନିଷଗୁଡ଼ିକୁ ବ୍ୟବହାର କରିବାର ସୁବିଧା ପାଇବେ । ଏ ଦିଗରେ ଦେଶର ଶିକ୍ଷିତ ଯୁବକ ଯୁବତୀମାନେ ବିଶେଷ ଚେଷ୍ଟା କରିବେ ବୋଲି ଆଶା କରୁଁ ।



ସ—ମା—ପ୍ତ

Printed by B. K. Kar, B. A., The Saraswata Press, Cuttack.

